# ଅଭିମନ୍ୟୁର ପରିଧି

ରାମଚନ୍ଦ୍ର ବେହେରା



ବିଦ୍ୟାପୁରୀ

# ଅଭିନୟର ପରିଧି

ରାମଚନ୍ଦ୍ର ବେହେରା

ବିଦ୍ୟାପୁରୀ

ABHINAYAR PARIDHI
by Ramachandra Behera
Kendrapara College
Publishers : Vidyapuri, Cuttack 753002
1991

ପ୍ରଥମ ପ୍ରକାଶ–ଅପ୍ରେଲ ୧୪, ୧୯୯୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍
ଆଳାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ–ଟ ୪୮·୦୦

ସେ ବର୍ଷ ଯେଉଁଭଳି ଦ୍ରୁତ ଗତିରେ ଅଭୂତପୂର୍ବ ଘଟଣାଗୁଡ଼ିଏ ଆମ ଗାଁ ମହାଦେବପୁରରେ ଘଟି ଯାଇଥିଲା, ସେଥିରେ ଅନ୍ତତଃ ମୋର ସନ୍ଦେହ ନ ଥିଲା ଯେ, ଗାଁ ଗୋଟାଏ ନାହିଁ ନ ଥିବା ପ୍ରସୂତି ବେଦନା ଦେଇ ଗତି କରୁଛି । ଏ କଥା ସତ ଯେ, ଘଟଣାଗୁଡ଼ିକର ଦାଗ ବା ତାତ୍ପର୍ଯ୍ୟ କ'ଣ ତାହା ନିର୍ଣ୍ଣୟ କରିବା କିମ୍ବା ବୁଝିବା ଭଳି ମଗଜ ମୋର କିମ୍ବା ମୋର ସାଙ୍ଗମାନଙ୍କର କାହାରି ନ ଥିଲା । ଅଥଚ ଆମେ ସମସ୍ତେ ଅଭିଭୂତ ହୋଇ ପଡ଼ୁଥିଲୁ ।

ଆମ ଗାଁରେ ପ୍ରତି ବର୍ଷ ମଙ୍ଗଳା ଠାକୁରାଣୀଙ୍କ ପୂଜା ହେଉଥିଲା । ଗାଁର ଚୁରପାଞ୍ଚ ଜଣ ଲୋକ ନିର୍ଧୂମ୍ ବାଜା ଧ୍ୱନି ସହିତ କାଳସୀ ଆସୁଥିଲେ । ତାଙ୍କ ଉପରେ ଠାକୁରାଣୀ ପୂଜା କରୁଥିବା ଦେହୁରୀ ଛିଞ୍ଚି ଦେଉଥିଲେ ମନ୍ତୁରା ପାଣି ଏବଂ ସେମାନଙ୍କ ଦେହ କଦଳୀପତ୍ର ଭଳି କମ୍ପୁଥିଲା ଅସ୍ତବ୍ୟସ୍ତ ହୋଇ । ସେମାନଙ୍କର ଚିତ୍କାର, ସରଗରମ ବାଜା, ଘଣ୍ଟି, ଶଙ୍ଖ-ହୁଳହୁଳିର ଶବ୍ଦ ସହିତ ଫେଣ୍ଟି ହୋଇ ଯାଉଥିଲା । ଦଶ-ବାର ଫୁଟ ଲମ୍ବାର ଅଙ୍ଗାରର ଗାତ ଉପରେ ଢାଳି ଦିଆଯାଉଥିଲା ଲାଲ ଟକଟକ ରଡ଼ ନିଆଁ । କାଳସୀମାନେ ସେଇ ଗାତ ଉପରେ ଚାଲୁଥିଲେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ମଙ୍ଗଳା ଠାକୁରାଣୀଙ୍କର ଅଲୌକିକ ମହିମାର ନିଃସନ୍ଦେହ ପ୍ରତୀକ ଭଳି । ଦେହୁରୀ ନିଜେ ରଚନା କରିଥିବା ଗୀତ ଜରିଆରେ ପ୍ରକାଶ କରୁଥିଲେ ସେବର୍ଷ ପାଇଁ ଗାଁର ଜାତକ । ଫସଲହାନି, ମରୁଡ଼ି, ଘରପୋଡ଼ି, ହଇଜା-ବସନ୍ତ, ଗୋରୁମାନଙ୍କର ରୋଗ ଇତ୍ୟାଦି ଅନିବାର୍ଯ୍ୟ ଦୁର୍ବିପାକମାନଙ୍କର ତାଲିକା ପ୍ରକାଶିତ ହୋଇ ଯାଉଥିଲା ତାଙ୍କ ଗୀତ ମାଧ୍ୟମରେ ।

ଆପାତତଃ ଶୁଖିଲା ଦିଶୁଥିବା ଗାଁ ନିଧାର୍ଯ୍ୟ ଋତୁରେ ମାଖି ହୋଇପଡ଼େ ସବୁଜ ରଙ୍ଗର ପ୍ରତିଶ୍ରୁତିମୟ ରଙ୍ଗ । ପବନର ଦେହ ଉପରେ ବୋଝ ହୋଇପଡ଼େ ଆମ୍ବର ଆଶ୍ୱାସନାପୂର୍ଣ୍ଣ ଧାନ କ୍ଷେତର ବାସ୍ନା । ଆମେ ମୁଗ୍ଧ ବିସ୍ମୟରେ ଦେଖୁ କେଉଁ ହିଡ଼ର କାହୁରୁ, ଏପରିକି ରାସ୍ତା ଉପରୁ ଝରି ଆସୁଥିବା ସ୍ୱଚ୍ଛ ପାଣିର ଅପୂର୍ବ ଧାର । ଜଣାପଡ଼େ ଯେପରିକି ସମଗ୍ର ଧରଣୀର ସ୍ତନରୁ ଆପଣାଛାଏଁ ଅଯାଚିତ ଓ ଉଦାର ଭାବରେ ଝରି ଆସୁଚି କ୍ଷୀରର ମମତାମୟ ସ୍ରୋତ ।

ତାଳ ଏବଂ ଆମ୍ବ ଟାକୁଆର ଦେହରୁ କପରି କେଜାଣି, କେଉଁ ଐଶ୍ୱରିକ ମନ୍ତ୍ରର ଆହ୍ୱାନରେ, ବାହାରି ଆସେ ମାଟି ଭିତରକୁ ପ୍ରବେଶ କରିବା ପାଇଁ ଚେରର ସ୍ପର୍ଦ୍ଧିତ ଅନ୍ୱେଷଣ । ଗୃହୁଁ ହୁହୁଁ ନାଲି ରଙ୍ଗର ଦୁଇଟି ପତ୍ର ଗୋଟାଏ ଚିରନ୍ତନ ଆଶା ଉଦ୍ଦୀପକ ପତାକା ଭଳି ଆମ୍ବ ଟାକୁଆ ଉପରକୁ ଟେକି ଧରିଥିବା ବୃନ୍ତରୁ ଉନ୍ମୋଚିତ ହୁଏ । ବାଲି ଓ ନଡ଼ାର ପଲସ୍ତରା ଅତିକ୍ରମ କରି ଉପରକୁ ଉଠି ଆସନ୍ତି ଛତୁମାନଙ୍କର ଶୋଭାଯାତ୍ରା ।

ବେଳେବେଳେ ବିଦ୍ୟୁତ୍‌ବଳୟ ଓ ପାହାଡ଼ ପ୍ରକମ୍ପିତ କରି ଏଇଭଳି ଶବ୍ଦ ମଧ୍ୟ ଶୁଭେ—"ନରିଆରେ, କୋଡାଳଟା ଚଞ୍ଚଳ ଏଠାକୁ ଆଣ୍ ।" କିମ୍ବା—"ମୋ ଆଖିର ପିତୁଳା କୁଆଡ଼େ ଗଲୁରେ !" କିମ୍ବା—"ସଞ୍ଜ ହେବା ଆଗରୁ ଘରେ ଯେମିତି ପହଞ୍ଚି ଯିବୁ, ପୁଞ୍ଜା ପୁଞ୍ଜା ଭାଲୁ , ପୁଣି ଦି'ଟା ବାଘ ଛ' ସାତଟା ଗାଈ ମାରି ସାରିଲେଣି ।"

ଦିନ ବାରଟାବେଳେ ପୁଣି ସଞ୍ଜ ଛ'ଟାବେଳେ ପାହାଡ଼ ଉପରେ ଅବସ୍ଥାପିତ ଓ ଗାଁର ପରିପାଟି ଅହରହ ପର୍ଯ୍ୟବେକ୍ଷଣରତ ମହାଦେବଙ୍କ ମନ୍ଦିରରେ ଘଣ୍ଟାଧ୍ୱନି । ମିଶ୍ରୁ ଦାଦାଙ୍କ ବାଡିରେ ଥିବା ଡେଙ୍ଗା ତାଳଗଛରୁ ଝୁଲୁଥିବା ଅସଂଖ୍ୟ ବାୟା ଚଢ଼େଇଙ୍କ ବସା । ମହାଦେବଙ୍କ ପ୍ରକାଣ୍ଡ ବଗିଚାରେ ଥିବା ବରଗଛ ସନ୍ଧିରେ ମହୁଫେଣା । ତାଙ୍କ ଅମାର ଗୁହାଳରୁ ଝୁଲି ରହିଥିବା ଭୟଙ୍କର ବିରୁଡ଼ି ବସା । ଅଳ୍ପଦିନ ଆଗେ ଆମ ଗୁହାଳ ଭିତରୁ ପାଞ୍ଚ-ଛ' ଫୁଟ ଲମ୍ବାର ହଳଦୀ ବର୍ଣ୍ଣର ଗୋଖର ସାପ ମରି-ଯାଇଥିଲା । ତେବେ କପରି କାଠଉଯୋଡ଼ ନଈ କୂଳର ଅନ୍ୟମନସ୍କ

ଶୋଇପଡ଼ିଥିବା କିଆଁ ଘନିଷ୍ଟ ଓ ଷୁଧାତୁର ହୋଇପଡ଼େ । ମାଲ ଭାଇମାନେ ଗାଁକୁ ଫେରିବାବେଳକୁ ତଥାପି ଶୁଭୁଥାଏ କରୁଣ କାନ୍ଦଣା । ଜଣାପଡ଼େ, ଏଇ ଯେଉଁ ଲୋକଟି ଚାଲିଗଲା, ତା'ର ଅନୁପସ୍ଥିତିରେ ଏ ଗାଁ ଆଉ ମୁହୂର୍ତ୍ତେ ମଧ୍ୟ ତିଷ୍ଠି ରହି ପାରିବ ନାହିଁ । ଆଉ ଲାଭ କ'ଣ ସୂର୍ଯ୍ୟୋଦୟର, ଗାଈ କ୍ଷୀର ଦେବାର ଓ ବାଛୁରିକୁ ଛୁଟିବାର । ତା' ଅଗଣାରେ ଥିବା ଚମ୍ପାଫୁଲ ଫୁଟିବ କାହିଁକି ? ମଲ୍ଲିଫୁଲ ଗଛର ଚକଡ଼ା ଭୂଇଁ ଉପରେ ଗୋଟାଏ ସବୁଜ ଆକାଶ ହୋଇ ଧଳା ଫୁଲର ତାରକା ଧାରଣ କରିବ କେଉଁ ସମ୍ଭାବନାରେ ?

ମାର୍ଚ୍ଚ ମାସ ପିଉସାଙ୍କର ପୁଅର ବାହାଘର ଅନୁଷ୍ଠିତ ହୁଏ । ବାର କିଲୋମିଟରର ଦୂରରୁ ବୈକୁଣ୍ଠ ଗୁଡ଼ିଆ ଆସେ ପିଠା ଓ ମିଠେଇ ତିଆରି କରିବା ପାଇଁ ଏବଂ ଦୁଇଟି ପେଟ୍ରୋମାକ୍ସ ଜାଳି ଆମ ଗାଁକୁ ଉଜ୍ଜ୍ୱଳ କରିଦେବା ପାଇଁ ।

ଆମ ଗାଁରେ ଏଇଥିପାଇଁ ବିସ୍ମୟର ଶେଷ ନ ଥାଏ । ଆମ ଗାଁ ତଳେ, ମାଟି ଭିତରେ କେଉଁଠି ଯେପରି ଲୁଚି ରହିଥାଏ ଏଇସବୁ ବିସ୍ମୟର ମୂଳମନ୍ତ୍ର । ସମୟ ଆସିବା ମାତ୍ରେ ଆମେ ସାଧାରଣ ଭାବେ ଦେଖୁଥିବା ମଣିଷମାନେ କାଳସୀ ହୋଇ ଯାଆନ୍ତି ଓ ଅଲୌକିକ କାମ କରନ୍ତି । ମାଟି ଭିତରୁ ହିଁ ଆପଣା ଛାଏଁ ଉଭୁରି ଆସେ ଅତୁଳନୀୟ ଘଟଣାର ପରିପାଟୀ । ମାଟି ତଳେ ହିଁ ଥାଏ ଅଭୂତପୂର୍ବ ମନ୍ତ୍ର । ତାହାର ଉଚ୍ଚାରଣମାତ୍ରେ ଗାଁର ପରିପାଟୀ ପରିବର୍ତ୍ତିତ ହେଉଥାଏ । ତାହାର ନିର୍ଦ୍ଦେଶରେ ଆକାଶରେ ଲମ୍ବିଯାଏ ଇନ୍ଦ୍ରଧନୁ । ଶୋଇ ରହିଥିବା ଗୋଟାଏ ସିଂହକୁ ଅଯଥା ବିରକ୍ତ କଲାଭଳି ପ୍ରତିବାଦପୂର୍ଣ୍ଣ ଓ ଭୀତିପ୍ରଦ ଶବ୍ଦ ଶୁଭେ ଆକାଶରେ ଘଡ଼ଘଡ଼ିର । ତା'ର ଚକ୍‌ଚକ୍ ଜିଭ ସତେ ଅବା ତମାମ୍ ଆକାଶକୁ ଦରିଣ୍ଡି ପକାଏ ।

ଆମ ଗାଁକୁ ବିଶାଳ ତାଙ୍କୁଣିଟିଏ ଭଳି ଘୋଡ଼େଇ ରଖିଥିବା ଆକାଶ ଥିଲା ଆମ ଗାଁର ଆକାଶ । ତାହାର ଗ୍ରୀବା ଉପରେ ଆତଯାତ ହେଉଥିବା ସୂର୍ଯ୍ୟ ଥିଲା ଆମ ଗାଁର ସୂର୍ଯ୍ୟ, ଏକାନ୍ତ ଭାବରେ । ତାହାର

ଜନ୍ମ ଥିଲା ଆମମାନଙ୍କର ଜହ୍ନମାମୁଁ । ସେଠାରେ ଭାସମାନ ମେଘଖଣ୍ଡର ଆବିର୍ଭାବ ହେଉଥିଲା ଆମ ଗାଁର ଆବଶ୍ୟକତା ଯୋଗୁଁ । ଗୋଟାଏ ସବୁଜ ବାଡ଼ ଭଳି ଗାଁ ଚାରିପଟେ ବଳୟ ସୃଷ୍ଟି କରିଥିବା ଶାଳ-ପିଆଶାଳର ନିବିଡ଼ ଜଙ୍ଗଲ ଥିଲା ଆମ ଗାଁର ଜଙ୍ଗଲ । ତା' ଭିତରେ ସୃଷ୍ଟି ହେଉଥିବା ବାଘର ହେଣ୍ଟାଳ, ଭାଲୁର ନସ୍ତ ଭାଷା ଚହଲି ଆସୁଥିଲା ଆମ ଗାଁ ଭିତରକୁ ; ଯେମିତିକି ଆକାଶର ଘଡ଼ଘଡ଼ି କମ୍ପନ ସୃଷ୍ଟି କରୁଥିଲା ଆମ ଗାଁର ପଞ୍ଜରିହାଡ଼କୁ, ତାହାର ଟୋପା ଟୋପା ବର୍ଷା ଗାଁର ହୃତ୍‌ପିଣ୍ଡ ଉପରେ ସ୍ନେହର ପାପୁଲି ଭଳି ପହଁରି ଆସୁଥିଲା । ଗାଁ, ଜଙ୍ଗଲ ଓ ଆକାଶ ଗୋଟିଏ ସତ୍ତାର ତିନୋଟି ପୃଥକ୍ ପରିପ୍ରକାଶ ଭଳି ଭିନ୍ନ ଥିଲେ; ଅଥଚ ତିନିଜଣ ଥିଲେ ଏକ ଓ ଅଭିନ୍ନ । ବାହାଘର ବାଜା ବାଜବାମାନେ, ସଂକୀର୍ତ୍ତନର ମୃଦଙ୍ଗ ଓ ଝାଞ୍ଜ ବାଜିବାମାନେ ଜଙ୍ଗଲ ଓ ଆକାଶ ଘୁଞ୍ଚି ଆସୁଥିଲେ ଗାଁ ପାଖକୁ ଏକ ଅପୂର୍ବ ଅନ୍ତରଙ୍ଗତାରେ । କଠଉଯୋଡ଼ି ନଈ କୂଳରେ ଚିତା ଜଳିବା ମାନେ, ଗାଁର ଝିଅ ଶାଶୁ ଘରକୁ ଗଲାବେଳେ ସମସ୍ତେ କାନ୍ଦିବା ମାନେ, ଜଙ୍ଗଲ ଓ ଆକାଶ ଗାଁ ପାଖକୁ ଚାଲି ଆସୁଥିଲେ ସହାନୁଭୂତି ଓ ଦୁଃଖରେ ବିଗଳିତ ହୋଇ ।

ପାଞ୍ଚଶହ ଲୋକ ସଂଖ୍ୟା ବିଶିଷ୍ଟ ଆମ ଗାଁ ଥିଲା ସବୁଜ ଜଙ୍ଗଲର ନିବିଡ଼ ସମୁଦ୍ର ଭିତରେ ଗୋଟିଏ ଦ୍ୱୀପ ଭଳି । କେବେ କେବେ ଆକାଶର ଅସହଯୋଗ ହେତୁ ମରୁଡ଼ି ପରିସ୍ଥିତି ସତ୍ତ୍ୱେ, ଦାନ୍ତକାଠି ଓ ଶାଳପତ୍ର ସଂଗ୍ରହ କରୁଥିବାବେଳେ କାଙ୍ଗାଳ ମା'କୁ ଭାଲୁ ନିର୍ଘାତ ଆକ୍ରମଣ କରିବା ସତ୍ତ୍ୱେ, ଆମ ଗାଁର ଆମେ ସମସ୍ତେ ଆଶ୍ୱସ୍ତ ଥିଲୁ ଯେ, ଚାରି ପାଖରେ ଓ ଉପରେ ଜଙ୍ଗଲ ଓ ଆକାଶ ଅଛି । ଆମେ ସମସ୍ତେ ନିରାପଦ ଓ ଆପାତତଃ ବିପଦମୁକ୍ତ । ଏଥିପାଇଁ ସେ ବର୍ଷ ଦ୍ରୁତଗତିରେ ଗୁଡ଼ାଏ ଅଭୂତପୂର୍ବ ଘଟଣା ଘଟିଯିବା ଯୋଗୁଁ ସମସ୍ତେ ଭାବିଲେ ଯେ, ମାଟି ଭିତରୁ ଝରଣା ଓ ଗଛ ସୃଷ୍ଟି ହେବା ଭଳି ଏ ସବୁ ଘଟଣା ଘଟୁଛି ଧରିତ୍ରୀର ନିର୍ଦ୍ଦେଶନାରେ । ଏ ଘଟଣାର ତରଙ୍ଗ ବିଛେଇ ହୋଇଗଲା ଜଙ୍ଗଲ ଓ ଆକାଶରେ । ଘଟଣାଗୁଡ଼ିକର ଦିଗ ଓ ତାତ୍ପର୍ଯ୍ୟ ସମ୍ପର୍କରେ କେହି ଦୂରଦ୍ରଷ୍ଟା ନ ଥିଲେ ।

ଘନଶ୍ୟାମ ଦାଦା ଥିଲେ ଗାଁର ବିଶିଷ୍ଟ ଧନୀ ଓ ଭଦ୍ରଲୋକ । ମହାଦେବଙ୍କ ନୀତି ପରିଚାଳନା କରୁଥିବାରୁ ସେ ଅଞ୍ଚଳର ସମସ୍ତେ ତାଙ୍କୁ ବିଶୋଇ ବୋଲି ଡାକୁଥିଲେ । ଦୁଇ ବର୍ଷ ତଳେ ସେ ଗୋଟିଏ ବନ୍ଧୁକ କିଣିଥାନ୍ତି । ତାଙ୍କ ବନ୍ଧୁକର ଗର୍ଜନ ସେତେଦିନଯାଏଁ ନୀରବତା ଏବଂ ନିଜସ୍ୱ କୋଳାହଳକୁ ନେଇ ଗଢ଼ି ଉଠିଥିବା ଘଞ୍ଚ ଜଙ୍ଗଲକୁ ସ୍ତବ୍ଧ କରୁଥିଲା ଏବଂ ଏଇ ଅଭୂତପୂର୍ବ ଗର୍ଜନ ଯାବତୀୟ ପଶୁ-ପକ୍ଷୀମାନଙ୍କୁ ସ୍ତବ୍ଧ ଓ ମୂଢ଼ କରୁଥିଲା । ତାଙ୍କ ଆଖୁ କ୍ଷେତରେ ଦଳେ ଭାଲୁ ଅନୁପ୍ରବେଶ କରିବା ପରେ, ଗାଁ ଲୋକଙ୍କ ପ୍ରରୋଚନାରେ ସେ କିଣିଥାଆନ୍ତି ଏଇ ଅସ୍ତ୍ରଟିକୁ । କେବଳ ଭାଲୁ କମ୍ବା ଚଢ଼େଇ ନୁହଁନ୍ତି, ଗୋଟାଏ ଦୁଇଟା ବାଘ, ତିନିଟା ପାଗଳ କୁକୁର ଇତ୍ୟାଦି ଶିକାର ହୋଇ ସାରିଥିଲେ ତାଙ୍କ ଅସ୍ତ୍ରର ବିସ୍ଫୋରଣରେ । ସରଳ ଓ ମାମୁଲି ଦେଖା ଯାଉଥିବା ଏଇ ଅସ୍ତ୍ରଟି ଏଭଳି ଭୟାବହ କାଣ୍ଡ ସୃଷ୍ଟି କରିପାରେ ବୋଲି ଦେଖି ନ ଥିବା ଲୋକ ଜଣେ ବିଶ୍ୱାସ କରିପାରିବ ନାହିଁ ।

ଘନଶ୍ୟାମ ଦାଦା ସେ ଦିନ ସକାଳ ଦଶଟା ବେଳେ ଫେରି ଆସିଥାନ୍ତି ଜିଲ୍ଲା ସଦର ମହକୁମାରୁ । ବସ୍ ଷ୍ଟପ୍‌ରେ ଓହ୍ଲାଇବାର କିଲୋମିଟର ବାଟ ଅତିକ୍ରମ କରିବା ପରେ ଆମ ଗାଁ । ରଜାଙ୍କ ଅମଳରେ ତିଆରି ହୋଇଥିବା ଏଇ ସଡ଼କ ନିଜର ଅସ୍ତିତ୍ୱ ହରାଇ ଦୁଇ ପଟରେ ଥିବା ବୁଦୁବୁଦୁକିଆ ଶାଳ ଓ କେନ୍ଦୁବଣ ଭିତରେ ଅନେକଦିନୁ ଛରଳିବା ଆରମ୍ଭ କରିଥିଲା । ଏତକ ବାଟ ତାଙ୍କୁ ପାଦରେ ଅତିକ୍ରମ କରିବାକୁ ହୋଇଥିଲା । ଆମେ ଶୁଣିଥିଲୁ ଯେ, ସାଇକେଲ ଚଢ଼ା ଶିଖିବା ସକାଶେ ସେ ସଦର ମହକୁମାରେ ଚେଷ୍ଟା କରିଥିଲେ । ଥରେ ପଡ଼ିଯାଇ ଦୁଇ ଆଣ୍ଠୁ ରକ୍ତାକ୍ତ କଲେ । ଦ୍ୱିତୀୟ ଥର ଦୁଇଟି ଦାନ୍ତ ହରାଇବା ପରେ ସେ ଅନୁଭବ କଲେ ଯେ, ସାଇକେଲଟା ତାଙ୍କ ପାଇଁ ଗୋଟାଏ ବିଶାଳ ଓ ଜଟିଳ ଯନ୍ତ୍ର ।

ସେଦିନ ଅପରାହ୍ଣରେ ଦେବ ଆଚାର୍ଯ୍ୟଙ୍କ ଦୋକାନ ସାମନା ପ୍ରଶସ୍ତ ବାରନ୍ଦାରେ ସେ ଦୁଇଟି ଚାଞ୍ଚଲ୍ୟକର ତଥ୍ୟ ପରିବେଷଣ କଲେ । ଆମ ଗାଁରେ ଗୋଟିଏ ପ୍ରାଇମେରୀ ସ୍କୁଲ ଖୋଲିବ । ଅଳ୍ପ ଦିନ ଭିତରେ ଜଣେ ଶିକ୍ଷକ ପହଞ୍ଚିଯିବେ ଗାଁରେ । ଦ୍ୱିତୀୟ ତଥ୍ୟଟି ହେଉଛି,

ମହାଦେବଙ୍କ ଭଣ୍ଡାର ପାଇଁ ଦୁଇଟି ପେଟ୍ରୋମାକ୍ସ କଣା ଯାଇଚି । ଜଣେ ଲୋକ ତାହା ନେଇ ଗାଁରେ ପହଞ୍ଚିବ ଓ ଘନଶ୍ୟାମ ଦାଦାଙ୍କର ଦିନେ ଦୁଇ ଦିନ ପାଇଁ ଅତିଥି ହୋଇ ରହିବା ସମୟରେ ତାହାଙ୍କୁ ଶିଖାଇଦେବ ବଳିତ ଲଣ୍ଠନ ଦୁଇଟାକୁ ଜାଳିବାକୁ ହୁଏ କପରି ।

ସବୁଦିନ ଭଳି ଦେବ ଆଚାର୍ଯ୍ୟଙ୍କ ବାରନ୍ଦାରେ ଗଡ଼ିଗଙ୍କ ସମେତ ଅନ୍ୟ କେତେଜଣ ବସି ସାରିଥିଲେ । କଷ୍ଟ ନ ହେଲେ ବି ଘଣ୍ଟାଏ ଦୁଇଘଣ୍ଟା ପାଇଁ ତାସ୍ ଖେଳା ଯାଇପାରେ । ବାରନ୍ଦାର କୋଉଠିଏ କୋଣରେ ଚୁପ୍‌ଚାପ୍ ବସି ରହିଚି ଅନନ୍ତ । ଦେବ ଆଚାର୍ଯ୍ୟଙ୍କର ସହକାରୀ । ନିର୍ଦ୍ଦେଶ ଦେବା ମାତ୍ରେ ଶତରଞ୍ଜି ପଡ଼ିବ ଏବଂ ଚିଲମ ପ୍ରସ୍ତୁତ ହେବ ।

ହଳେ କଠୋଉ ପିନ୍ଧି ଆସୁଥିବା ଲୋକ ଜଣକ ହେଉଚନ୍ତି ସଙ୍କର୍ଷଣ ମାଷ୍ଟ୍ରେ । ଜ୍ୟୋତିଷ ବିଦ୍ୟା ସହିତ ପୌରାଣିକ କାହାଣୀ କହିପାରନ୍ତି । ବିଦ୍ୟା ଶିକ୍ଷା ପାଇଁ ଆଗ୍ରହୀ ଯେକୌଣସି ପିଲା ତାଙ୍କ ଚାଟଶାଳୀକୁ ଯିବା ଦରକାର ପଡ଼େ । ପଣକିଆ ଓ ଯୁକ୍ତାକ୍ଷର ଶିକ୍ଷା ଦିଆଯାଏ, ଉଭୟଙ୍କର ବେତ ସାହାଯ୍ୟରେ । ଘନଶ୍ୟାମ ଦାଦା ଓ ଦେବ ଆଚାର୍ଯ୍ୟ ମଧ୍ୟ ତାଙ୍କ ପିଲାଦିନେ ସଙ୍କର୍ଷଣ ମାଷ୍ଟ୍ରଙ୍କ ଚାଟଶାଳୀରେ ଅକ୍ଷର ସହିତ ପରିଚିତ ହୋଇଥିଲେ । ଏଥିପାଇଁ ତାଙ୍କୁ ଖାତିର କରୁଥିଲେ ସମସ୍ତେ । ଜାତକ ଓ ପାଞ୍ଜି ଦେଖିବା ଏବଂ ଅଳ୍ପ ଚାଷଜମିର ଯତ୍ନ ନେବାରେ ତାଙ୍କର ସମୟ ବିତିଯାଏ । ସେ ଅଭାବଗ୍ରସ୍ତ ନ ଥିଲେ ।

ସଙ୍କର୍ଷଣ ମାଷ୍ଟ୍ରଙ୍କୁ ଦେଖିବା ମାତ୍ରେ ଘନଶ୍ୟାମ ଦାଦାଙ୍କର ମନେ ପଡ଼ିଲା ଯେ, ପୋଲିସ ତାଙ୍କ ବଡ଼ ପୁଅ ଗୋବିନ୍ଦ ନାଁରେ ମୋକଦ୍ଦମା କରିଥିଲା । ମାଇନର ପାଶ୍ କରିବା ପରେ ଗୋବିନ୍ଦ ନିଯୁକ୍ତ ହୋଇଥିଲା ଅନେକ ଦୂର ଗୋଟାଏ ପ୍ରାଇମେରୀ ସ୍କୁଲରେ ଶିକ୍ଷକ ଭାବରେ । ଏଡ଼େ ପାଷାଣ୍ଡ ଆଉ କୁଳାଙ୍ଗାର ଥିଲା ସେ ବଦମାସ୍ ଟୋକା ଯେ, ଗୋଟାଏ ଅପ୍ରାପ୍ତବୟସ୍କା ସ୍କୁଲ ଝିଅକୁ ଧର୍ଷଣ କରିପକାଇଥିଲା । ଶିକ୍ଷକ ହେବାର କମା ଆଠ-ଦଶ ମାସ ପରେ ଏଇ ବଦନାମ ।

ସଙ୍କର୍ଷଣ ମାଷ୍ଟ୍ରେ ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦାରେ ବସି ମୁଣ୍ଡ ଦୋଡ଼େଇଥିବା ଗାମୁଛାରେ ମୁହଁ ଆଉ ବେକର ଝାଳ ପୋଛି

ହେବା ପରେ ପଚାରିଲେ—"ତୁ କେଉଁଝର ଗଡ଼କୁ ଯାଇଥିଲୁ ପରା ଘନଶ୍ୟାମ ? ଫେରିଲୁ କେତେବେଳେ ?" —"ସକାଳ ଦଶଟାରେ ।" ଜବାବ ଦେଲେ ଘନଶ୍ୟାମ ଦାଦା ଓ ଗୋବିନ୍ଦ କଥା ପଚାରିବାକୁ ଗଲାବେଳେ ସଙ୍କୁଚିତ ହୋଇପଡ଼ିଲେ । —"ଭାଗ୍ୟ; ସବୁ ଭାଗ୍ୟ ।" ଦୀର୍ଘଶ୍ୱାସ ତ୍ୟାଗ କରି ଜୀବନକୁ ଶ୍ଲୋକ ଓ ଗ୍ରହମାନଙ୍କର ଅବସ୍ଥିତି ଜରିଆରେ ବ୍ୟାଖ୍ୟା କରୁଥିବା ସଙ୍କର୍ଷଣ ମାଷ୍ଟ୍ରେ କହିଲେ । "ପିଲାଟା ଭାସିଗଲା; ମୋତେ ବି ଭସେଇ ଦେଲା ।" କହିଲେ ସେ । "ବୁଝିଲୁ, ଘନଶ୍ୟାମ, ସେଠାରେ ଏତେ ଲୋକଙ୍କ ସହିତ ଚୋର ଭାବଦୋଷୀ । ତୁ ଠିକଏ ଚେଷ୍ଟା କରିଥିଲେ ଗୋବିନ୍ଦକୁ କ'ଣ ତିନି ବର୍ଷ ପାଇଁ ଜେଲ ହୋଇ ଯାଇଥାନ୍ତା ?"

ଘନଶ୍ୟାମ ଦାଦା କିଛି କହିଲେ ନାହିଁ । ଗୋବିନ୍ଦକୁ ପୋଲିସ କେଶ୍‌ରୁ ରକ୍ଷା କରିବା ପାଇଁ ସେ ଚେଷ୍ଟା କରି ନ ଥିଲେ, ତା' ନୁହେଁ । କିନ୍ତୁ ବ୍ୟାପାରଟା ଆଗେଇ ଯାଇଥିଲା ଅନେକ । ଏସବୁ ପରିସ୍ଥିତିରେ ତାଙ୍କ ସାହାଯ୍ୟ ଭିକ୍ଷା କରିବା ଦରକାର ହୁଏ ନାହିଁ । ତାଙ୍କ ଦ୍ୱାରା କିଛି ହେବା ସମ୍ଭବ ଥିଲେ, ସେ ସ୍ୱେଚ୍ଛାରେ ଆଗେଇ ଆସନ୍ତି । ପର୍ଯ୍ୟାପ୍ତ ଚାଷ ଜମି, ପ୍ରାୟ ଶହେ ଗାଈ-ମଇଁଷିଙ୍କ ମାଲିକ ଘନଶ୍ୟାମ ଦାଦା ଥିଲେ ଉଦାର ଏବଂ ବିଚକ୍ଷଣ । ସାଇକେଲ ଚଢ଼ିବା ଶିଖି ନ ପାରିବା ଭଳି, ସେ ତାଙ୍କ ଅମଳରେ ମାଇନର ପାଶ୍ କରି ପାରି ନ ଥିଲେ । ତାଙ୍କ ବାପାଙ୍କର ସେ ଥିଲେ ଏକମାତ୍ର ପୁଅ । ମହାଦେବଙ୍କ ମୁଣ୍ଡରେ ଅନେକ ବାର ଲକ୍ଷେ ବେଲପତ୍ର ଚଢ଼େଇବା ପରେ ପରିଣତ ବୟସରେ ସେ ତାଙ୍କ କୋଳକୁ ଆସିଥିଲେ । ମାଇନର ଏବଂ ଏଣ୍ଟ୍ରାନସ୍ ସ୍କୁଲ ଥିବା କେଉଁଝର ଗଡ଼ ଗାଁରୁ ପ୍ରାୟ ପଇଁତିରିଶ ମାଇଲ ଦୂରରେ ଥିଲା । ବସ୍ ଚଳାଚଳ କରୁ ନ ଥିବାରୁ ଦାଦାଙ୍କର ବାପା ଚାରି-ପାଞ୍ଚ ଜଣ ମୂଲିଆଙ୍କ ସହିତ ଦାଦାଙ୍କୁ ପଠେଇ ଦେଉଥିଲେ ଗଡ଼କୁ । ଦାଦା ସ୍କୁଲରୁ ଲୁଚି ଏକୁଟିଆ ପଳେଇ ଆସୁଥିଲେ ଏବଂ ବାପା କାଳେ ତାଙ୍କୁ ବାଡ଼େଇବେ, ଏଇ ଭୟରେ ଗଛ ଉପରେ ରାତି କଟେଉଥିଲେ । ଏଭଳି ଥରେ-ଦୁଇଥର ହେବା ପରେ, ଦାଦାଙ୍କୁ ଆଉ ସ୍କୁଲ ଯିବା ଦରକାର ପଡ଼ିଲା ନାହିଁ । ମହାଦେବଙ୍କ ଭଣ୍ଡାର ପର୍ଯ୍ୟବେକ୍ଷଣରେ ଆସୁଥିବା ଜଣେ କରଣ

ଦାଦାଙ୍କୁ ଦରଖାସ୍ତ ଲେଖିବା ଠାରୁ ଆରମ୍ଭ କରି ସାମାନ୍ୟ ଇଂରାଜୀ ମଧ୍ୟ ପଢ଼ାଇଥିଲେ । ଦାଦା ନିଜ ଚେଷ୍ଟାରେ ନିଜକୁ ଉନ୍ନତ କରିଥିଲେ । ତାଙ୍କ ବାପାଙ୍କ ଦେହାନ୍ତ ପରେ ସମସ୍ତ ଦାୟିତ୍ୱ ତୁଲାଇଥିଲେ ଆହୁରି ଦକ୍ଷତାର ସହିତ । ଗାଁ ମୁଣ୍ଡରେ ଥିବା ତାଙ୍କର ଗୋଟିଏ ପଡ଼ିଆକୁ ଘରଭିଟା କରି ତାଙ୍କ ପିଉସୀଙ୍କର ଘରପୁଅଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ ଏବଂ ସେଠାରେ ସେମାନେ ଘର ଛିଆରି କରିବା ବାବଦରେ ସାହାଯ୍ୟ କରିଥିଲେ । ବଳୁଥିବା ପ୍ରଚୁର ଧାନ କରଜରେ ଲଗା ଯାଉଥିଲା । ଅନେକ ପରିଶୋଧ କରୁ ନ ଥିଲେ । ଦାଦାଙ୍କ ଗୋଡ଼ ଧରୁଥିଲେ କମ୍ବା କାନ୍ଦୁଥିଲେ ଏବଂ ଋଣମୁକ୍ତ ହୋଇ ଯାଉଥିଲେ ।

ସଙ୍କର୍ଷଣ ମାଷ୍ଟ୍ରଙ୍କ ଅଭିଯୋଗ ଶୁଣି ଦାଦା ଉତ୍ତର ଦେଇଥିଲେ —"ଏ ବ୍ୟାପାରରେ କାହାର କଷ୍ଟ କରିବାର ନାହିଁ, ମାଷ୍ଟ୍ରେ । ସେ ଟୋକା ତା' କର୍ମଫଳ ଭୋଗିବ । ତୁମେ ବି ହନ୍ତସନ୍ତ ହେବ ।"

ଆକାଶ ଆଡ଼କୁ ଦୃଷ୍ଟି ଫେରାଇ ସେ ବଟୁଆ ଖୋଲି ପାନ ଭାଙ୍ଗିଲେ । ପାନଗୁଆ ପକାଇବା ପରେ ଦେବ ଆଗ୍ରହୀୟ ପ୍ରସ୍ତାବ ବାଢ଼ିଲେ —"ତା'ହେଲେ, ମାଷ୍ଟ୍ରେ, ସତରଞ୍ଜି ପକାଇବା ? ଆଠ-ଦଶ ବାଜି ତାସ୍ ଖେଳିଲେ ମନଟା ଟିକିଏ ହାଲୁକା ହୋଇଯାନ୍ତା !"

ସେ ବୋଧହୁଏ ପ୍ରଲୁବ୍ଧ ହୋଇ ପଡ଼ିଥିଲେ ପ୍ରସ୍ତାବ ଶୁଣି; କିନ୍ତୁ ଅନିଚ୍ଛା ସତ୍ତ୍ୱେ କହିଲେ—"ନାଇଁ, ମୁଁ ଟିକିଏ ଯାଉଚି ଆର ଗାଁକୁ । ଗୌରାଙ୍ଗ ହୋତାର ପୁଅ ଏକୋଇଶା । ଜାତକ ପଢ଼ାଯିବ । କେତେ-ବେଳେ ଫେରିବି କେଜାଣି ? ହାରାମଜାଦା ଭାଲୁଗୁଡ଼ାକ ପୁଞ୍ଜା ପୁଞ୍ଜା ପିମ୍ପୁଡ଼ି ଭଳି ବାହାରି ଆସୁଚନ୍ତି ରାସ୍ତା ଉପରକୁ ।" କହିଲେ ଏବଂ ଆଉ ସମୟ ନଷ୍ଟ ନ କରି ଉଠିଲେ ।

ଗାଁରେ ସ୍କୁଲ ସ୍ଥାପିତ ହେବା କଥା ବୋଧହୁଏ କ୍ଷଣକ ମଧ୍ୟରେ ପ୍ରଚାରିତ ହୋଇସାରିଥିଲା । ଖୁବ୍ ଉତ୍ତେଜିତ ହୋଇ ଦୋକାନ ପାଖରେ ପହଞ୍ଚିଗଲା କୁମର ଏବଂ ବିନା ଉପକ୍ରମଣିକାରେ ଅଭିଯୋଗ କଲା— "ଦାଦା, ତୁମେ ସ୍କୁଲ ଫୁଲ ଗୋଟିଏ ଗାଁରେ ବସେଇବା ପାଇଁ ଚେଷ୍ଟା କରୁଚ କାହିଁକି ?"

ଘନଶ୍ୟାମ ଦାଦା ପ୍ରଥମେ ଅବାକ୍ ହୋଇ ଯାଇଥିଲେ ମଧ୍ୟ ନିଜର ସ୍ୱଭାବସୁଲଭ ଶାନ୍ତ ସ୍ୱରରେ କୈଫିୟତ ଦେଲେ—"ମୁଁ ବସେଇବି କାହିଁକି ? ସରକାର ବସଉଚନ୍ତି ।"

—"ସରକାର ଗୋଟେ କିଏ ? ଆମ ରଜା ହେଉଚନ୍ତି ସବେ-ସର୍ବା । ମୁଁ କିନ୍ତୁ ଆଗରୁ କହି ଦେଉଚି, କୌଣସି ମାଷ୍ଟ୍ର ଯଦି ଏଠାକୁ ଆସେ, ଦେବି ଶଳାର ଗୋଟେ ଗୋଡ଼ ଭ୍ରୁଞ୍ଚା କରି । ତାହା ବୋଲି କ'ଣ ଗାଁ ଯାତ୍ରା ପାର୍ଟିଟା ଭାଙ୍ଗିଯିବ ନା, କ'ଣ ?"

—"ସ୍କୁଲ ହେଲେ ଗାଁ ପାର୍ଟି ଭାଙ୍ଗିଯିବ କାହିଁକି ?" ଦାଦା ବୁଝିପାରିଲେ ନାହିଁ କଥାଟା ।

—"ଭାଙ୍ଗିବ ନାହିଁ ତ ଆଉ କ'ଣ ହେବ ? ଯାତ୍ରା ପିଲା ତ ସବୁ ଯିବେ ସ୍କୁଲକୁ, ଆଉ ଏତେ ଟଙ୍କା ଖର୍ଚ୍ଚ ହୋଇ ହାର୍ମୋନିୟମ, ତବଲା, ବାଇଲ କିଣା ହେଲା କାହିଁକି ? ଆମେ ଏତେ ପରିଶ୍ରମ କରି ଯାତ୍ରା ପାର୍ଟି ପାଇଁ ଘରଟେ ତିଆରି କଲୁ କାହିଁକି ? ନାହିଁ, ନାହିଁ, ସେ ଅଲଣା ସ୍କୁଲରୁ ଆମକୁ ମିଳିବ କ'ଣ ?" ଯା ପରେ କ'ଣ କରାଯାଇ ପାରେ ତାହା ନିର୍ଦ୍ଧାରଣ କରି ନ ପାରି ବିସ୍ତତାର ସହିତ କୁମର ଗାଁ ଭିତରକୁ ଚାଲିଗଲା ।

ଦାଦା ମନେ ମନେ ହସିଲେ ଟିକିଏ । ଦେଶ ସ୍ୱାଧୀନ ହେବାର ଅନେକ ବର୍ଷ ପରେ ବି ରଜା ହେଉଚି ସବେସର୍ବା ! ସ୍କୁଲଟିଏ ନିହାତି ଦରକାର ଏ ଗାଁରେ ' ଏ ଗାଁରୁ ଚାରି ମାଇଲ ଦୂର ଗାଁରେ ଭୋଟ ଦେବା ପରେ ବି ସରକାର ଟୋଟେ କ'ଣ, ତାହା ଏମାନେ ବୁଝି ନାହାନ୍ତି ।

ସେଦିନ ତାସ୍ କମ୍ବା ପଶା ଖେଳର ଆସର ଜମିଲା ନାହିଁ । ଗରାଖମାନେ ଆସୁଥାନ୍ତି ଏବଂ ଦରକାରି ଜିନିଷ କିଣି ଫେରୁଥାନ୍ତି । ଦେବି ଆଗ୍ରହୀ ଫୁରୁସତ ପାଇଲେ ବାରନ୍ଦାରେ ବସିଥିବା ଚାରି-ପାଞ୍ଚ ଜଣ ଲୋକଙ୍କ ଆଲୋଚନାରେ କ୍ଷଣକ ପାଇଁ ଯୋଗଦେଇ ପୁଣି ପଶୁଥାନ୍ତି ଦୋକାନରେ । ଘନଶ୍ୟାମ ଦାଦା ପଳେଇ ଗଲେଣି ବନ୍ଧୁକ ସଫା କରିବା ପାଇଁ । ଗାଁ ମୁଣ୍ଡ ବରଗଛ ମୂଳେ ଯେଉଁଠି ରଜ ବେଳେ ଦୋଳି ଛିଞ୍ଚାଯାଏ, ସେଇଠାରେ ଗାଡ଼ିରେ ଭଲୁ ଦେଖିଚନ୍ତି ବୋଲି କେତେଜଣ

କହୁଚନ୍ତି, ଜଗିବାକୁ ହେବ । ଅନେକ ଦିନ ପରେ ଭଲୁ ମାରିବାର ସ୍ପର୍ଦ୍ଧିତ ଉତ୍ତେଜନା ଦରକାର ।

ସୂର୍ଯ୍ୟ ବୁଡ଼ିଗଲାଣି ମହାଦେବ ପାହାଡ଼ ପଛରେ । ଅନେକ ଦୂରରୁ ଗାଈମାନଙ୍କର ଘର ଫେରନ୍ତା ହମ୍ବା ରଡ଼ି ଶୁଭୁଚି । ଆଉ କିଛି ସମୟ ପରେ ଠାକୁରଙ୍କର ସନ୍ଧ୍ୟା ଧୂପ ବଢ଼ିଯିବ । କାର୍ତ୍ତିକ ମଉସାଙ୍କ ଘର ପିଣ୍ଡାରେ ବୋଲା ହେବ ଅଧ୍ୟାୟେ ଭାଗବତ । ତା'ପରେ ସମୁଦାୟ ଗାଁ ହାଇ ମାରିବ ଯେପରି । ଦୋକାନରେ ଜୁଳୁ ଜୁଳୁ ହୋଇ ଜଳୁଥିବ ଲଣ୍ଠନ । ଅନନ୍ତ ଓ ଦେବ ଆଚାର୍ଯ୍ୟ ବସି ରହିଥିବେ କାଳେ ସେ'ଦିନର ଆଉ କିଛି କାର୍ଯ୍ୟକ୍ରମ ବାକି ରହିଗଲା ବୋଲି ।

ରଜ ଆହୁରି ମାସେ ଦୂରରେ ଥାଏ । ଦିନ ଏଗାରଟା ବାରଟା ହେବ ସେତେବେଳେ । ଦେବ ଆଚାର୍ଯ୍ୟ ଜଣେ ଗରାଖ ପାଇଁ ନିକିତି ଟେକି ଧରିଥାନ୍ତି ଓଜନ ଠିକ୍ ହେଲା କି'ନାହିଁ ନିଶ୍ଚିତ ହେବା ସକାଶେ । ଏତିକିବେଳେ ଶୁଭିଲା—"କ'ଣ ଦେବ, ସବୁ ଭଲ ନା ?"

ଆଚାର୍ଯ୍ୟଙ୍କର ଏକାଗ୍ରତା ବ୍ୟାହତ ହେଲା । ନିକିତି ଆଡ଼ୁ ମୁହଁ ଫେରାଇ ସେ ଚାହିଁଲେ ବାରନ୍ଦାରେ ଠିଆ ହୋଇଥିବା ତିନିଜଣ ଲୋକଙ୍କ ଆଡ଼େ । ତାଙ୍କର ସମଗ୍ର ଦେହ ତରଙ୍ଗାୟିତ ହୋଇଗଲା ଏକ ଅଜବ ପ୍ରସନ୍ନତାରେ । ଆପାତତଃ ନିକିତିକୁ ଆଡ଼େଇ ଦେଇ ସେ ବାହାରି ଆସିଲେ ଦୋକାନରୁ ଏବଂ ଉଦ୍‌ଭ୍ରାନ୍ତ ଆନନ୍ଦକୁ ଆୟତ୍ତ କରିବା ପାଇଁ ଚେଷ୍ଟା ନ କରି ନମସ୍କାର ହେବା ପରେ ପଚାରିଲେ—"ଏଇ, ବର୍ତ୍ତମାନ ଆସିଲେ ? ମାସେଯାଏଁ ରହିବେ ତ ?" —"ହଁ ।" ଅଧାଅଧି ଦାଢ଼ୀ ପାଚି ଯାଇଥିବା ଜଣେ କହିଲେ । "ତୁମର ଏଣେ ଯାହା ହେଉ ବର୍ଷା ହୋଇଯାଇଚି । ଆମ ଆଡ଼େ ଗୁଳୁଗୁଳି ଯେ କାହିଁରେ କ'ଣ ।"

ଆଚାର୍ଯ୍ୟ କିଛି କହିବା ପାଇଁ ଯିବା ପୂର୍ବରୁ ଅନ୍ୟ ଜଣେ ପଚାରିଲେ—"ଘନଶ୍ୟାମ ବାବୁଙ୍କ ଖବର କ'ଣ ? ଭଲ ଅଛନ୍ତି ?"

ଏ ଗାଁକୁ ଆସୁଥିବା ଯେ କୌଣସି ଲୋକ ପ୍ରଥମେ ଘନଶ୍ୟାମ ଦାଦାଙ୍କ କଥା ପଚାରିବା ସତେ ଯେପରି ଗୋଟାଏ ଅଲଙ୍ଘନୀୟ ନିୟମ

ଥିଲା । ତାଙ୍କର ଆତିଥ୍ୟ ଓ ବ୍ୟବହାର ସେ ଅଞ୍ଚଳରେ ଗୋଟାଏ କିମ୍ବଦନ୍ତୀରେ ପରିଣତ ହୋଇ ଯାଇଥିଲା ।

—"ଘନଶ୍ୟାମ ଭଲ ଅଛି ।" ଦାଦାଙ୍କ ଠାରୁ ଦେବ ଆଚାର୍ଯ୍ୟ ବୟସରେ ଚାରି-ପାଞ୍ଚ ବର୍ଷ ସାନ ହୋଇଥିଲେ ମଧ୍ୟ ଲେଖା ଯୋଖାରେ ତାଙ୍କର ଦାଦା ହେଉଥିବାରୁ ସେ ଘନଶ୍ୟାମ ବୋଲି ଡାକନ୍ତି । ଆମେ ଶୁଣିଥିଲୁ ଯେ, ଘନଶ୍ୟାମ ଦାଦା ଜନ୍ମ ହେବା ପରେ, କାହିଁକି କେଜାଣି ତାଙ୍କ ମା'ଙ୍କ ସ୍ତନରେ ଯଥେଷ୍ଟ ପରିମାଣର କ୍ଷୀର ହେଉ ନ ଥିଲା । ଆଚାର୍ଯ୍ୟଙ୍କ ବଡ଼ ଭାଇ ଅଚ୍ୟୁତାନନ୍ଦଙ୍କ ସହିତ ଘନଶ୍ୟାମ ଦାଦା ତାଙ୍କ ମା'ଙ୍କର ଦୁଇ ସ୍ତନ ସତେ ଯେପରି ଭାଗ କରି ନେଇଥିଲେ । ଦାଦାଙ୍କୁ କ୍ଷୀର ଖୁଆଇବାବେଳେ ଆଚାର୍ଯ୍ୟଙ୍କ ମା' ମୁଣ୍ଡ ପିଠିରେ ହାତ ବୁଲାଇ ଆଣୁଥିଲେ ଅପୂର୍ବ ମମତାର ସହିତ । ବେଳେବେଳେ ଆବେଗ ଓ ପରିପୂର୍ଣ୍ଣ ଭାବରେ ସେ ଗଦ୍‌ଗଦ ହୋଇ ପଡ଼ୁଥିଲେ ବୋଲି ଆମେ ଶୁଣିଛୁ । ସେଇ ସମୟରେ ସେ କହନ୍ତି—"ତୁ ଯଦି ଟିକଏ ବଡ଼ ହୋଇ-ଥାଆନ୍ତୁରେ, ଘନ, ତୋତେ ଏଇ ଗରିବ ବ୍ରାହ୍ମଣୀ କିଛି ବି ଦେଇ ପାରନ୍ତା ନାହିଁ । ଅନ୍ୟ ଜାତିର ହେଲେ ବି ତୁ ଅମୃତ, ତୁ ଦେବତା । ଆଖି ବୁଜି କେତେ ସନ୍ତୋଷରେ ତୁ କ୍ଷୀର ପିଇ ଚାଲିଚୁ । ଏଇ ଏତିକି କଥା ମରିବାଯାକେ ମୋର ମନେ ରହିଥିବ । ତୁ ବଡ଼ଲୋକ ହେବୁ । ତୁ ମୋତେ ନ ପଚାରୁ, କିଛି ଯାଏ ଆସେ ନାହିଁ । ତୋତେ ଦେଖିବା କ୍ଷଣି ମୋର ମନେ ପଡ଼ିଯିବ, ଛୁଆ ଦିନେ ତୋ ଭୋକକୁ ମୁଁ ସମ୍ଭାଳି ଥିଲି ।" ବେଳେ ବେଳେ ଏଇଭଳି କଥା କହି କହି ତାଙ୍କ ଭଳି କାନ୍ଦୁଣୀ ମଣିଷ ସତରେ କାନ୍ଦିପକାଏ । ଲୁହରେ ଅନ୍ଧ ହୋଇ ଘନଶ୍ୟାମ ଦାଦାଙ୍କୁ ସେ ଉଠାଇଆଣି ଛାତିରେ ଭିଡ଼ି ଧରେ ଏବଂ ତାଙ୍କର ସହୋଦର କାନ୍ଦିବାକୁ ବେଖାତିର କରି ଅଜସ୍ର ଚୁମ୍ବନ ଅଜାଡ଼ି ଦିଏ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ । ଘନଶ୍ୟାମ ଦାଦା ତାଙ୍କ କୋଳରେ ଥାଇ କେତେଥର ହଗି ମୂତି ଲୁଗା ଖରାପ କରିଚନ୍ତି, ତା'ର କୌଣସି ହିସାବ ନାହିଁ ।

ଦେବ ଆଚାର୍ଯ୍ୟ କହିଲେ—"ରହନ୍ତୁ, ମୁଁ ଦୋକାନ ବନ୍ଦ କରେ । ଆପଣମାନଙ୍କର ବ୍ୟବସ୍ଥା କରିଦେବି । ଆଜି ସଞ୍ଜବେଳେ ଟା' ହେଲେ ପଶା ଖେଳ ହେବ ।"

ଆଗନ୍ତୁକଙ୍କ ମଧ୍ୟରୁ ଜଣେ କହିଲେ—"ନଚେତ୍, ନଚେତ୍ ! ହେଲେ ତୁମେ ଦୋକାନ ଛାଡ଼ି ଆସିବ କାହିଁକି ? ଘନଶ୍ୟାମବାବୁ ଆମକୁ ଦେଖିବା ମାତ୍ରେ ସବୁ ସୁବିଧା କରିଦେବେ । ତୁମେ ଥାଅ ।"

ଦେବ ଆଗ୍ରର୍ଯ୍ୟଙ୍କ ଦୋକାନରୁ ପ୍ରାୟ ଷାଠିଏ ସତୁରି ମିଟର ଦୂରରେ ଝଙ୍କାଳିଆ, କେଉଁ ମାନ୍ଧାତା ଅମଳର ବଉଳ ଗଛ । ଗଛ ଚାରିପଟେ ଚକ୍‌କଣ ପଥର, ବଡ଼ ବଡ଼ କଂକ୍ରିଟ୍ ସ୍ଲାବ୍ ଭଳି । ଗଛର ଡାହାଣ ପାଖରେ ମହାଦେବଙ୍କର ବଡ଼ କୋଠାଘର । ଏହାକୁ ଭଣ୍ଡାର ଘର ବୋଲି କୁହାଯାଏ । ବଡ଼ ହଲ୍ ଭଳି କୋଠରୀଟିଏ ଠାକୁରଙ୍କ କାମରେ ଆସୁଥିବା କର୍ମଚାରୀ, ଏପରିକି ଗାଁର କାହାରି କୁଣିଆ-ମଇତ୍ରଙ୍କ ଆଶ୍ରୟସ୍ଥଳୀ ଭାବରେ ବ୍ୟବହୃତ ହୁଏ । କୋଠା ଘରକୁ ପ୍ରାୟ ଲାଗିକରି ଠାକୁରଙ୍କର ପ୍ରକାଣ୍ଡ ଅମାର । ଚାଳଘର । ପାଖ ଆଖ ଅଞ୍ଚଳର ଲୋକ-ମାନେ ଧାନ କରଜ କରନ୍ତି; ଅମଳ ପରେ ପରିଶୋଧ କରିବାକୁ ଚେଷ୍ଟା କରନ୍ତି । ଧାନ କରଜ ଦେବା ଓ ଆଦାୟ କରିବା ପାଇଁ ଯେଉଁ କର୍ମଚାରୀ ଜଣକ ଗଡ଼ରୁ ଆସନ୍ତି, ତାଙ୍କୁ କରଣ ବୋଲି କୁହାଯାଏ । ଅମାର କାମରେ ମାସେ-ଦୁଇମାସ ତାଙ୍କୁ କଟାଇବାକୁ ପଡ଼େ ଆମ ଗାଁରେ । ତାଙ୍କ ସୁବିଧା ପାଇଁ ଅମାର ପଛକୁ ଛୋଟ ଚାଳଘରଟିଏ ଥାଏ । ସେଠାରେ କରଣଙ୍କର ରୋଷେଇବାସ, ଖିଆପିଆ ହୁଏ । ଶୁଅନ୍ତି କୋଠାଘରେ ।

ଗାଁକୁ ଆସିଥିବା ଆଗନ୍ତୁକ ତିନିଜଣ ପ୍ରଥମେ ବସିଲେ ବଉଳଗଛ ମୂଳ ଶୀତଳ ଛାଇରେ । ଗାମୁଛାରେ ଦେହର ଝାଳପୋଛି ହେଉ ହେଉ ସନ୍ତୋଷ ଓ କୃତଜ୍ଞତା ପ୍ରକାଶ କଲେ—"ହରେ ରାମ, ହରେ ରାମ, ଓଁ ନମଃ ଶିବାୟ !" ଇତ୍ୟାଦି ।

ଠାକୁରଙ୍କର ଭଣ୍ଡାର ଘର ଅମାର ସାମନାରେ ଗାଁର ମୁଖ୍ୟ ରାସ୍ତା । ରାସ୍ତାର ଏପାଖରେ, କୋଠାଘର ସାମନାରେ ଘନଶ୍ୟାମ ଦାଦାଙ୍କର ବିଶାଳ ଗୁହାଳ । ତା ପଛକୁ ତାଙ୍କର ବଡ଼ ଖଞ୍ଜା ଘର । ଖୁବ୍ ଉଚ୍ଚ ପିଣ୍ଡା । ପରିଷ୍କାର ଓ ଖାନଦାନି ସମ୍ପନ୍ନ । ଘନଶ୍ୟାମ ଦାଦା ଗୁହାଳକୁ ଅନ୍ୟ ଆଡ଼େ ଉଠେଇ ନେବେ ଓ ମାଟିଘର ଭାଙ୍ଗି ଘର-ଡାଞ୍ଚ

ବର୍ଷରେ ସିମେଣ୍ଟ ଟାଇଲ ଛାତ ପକ୍କା ଘର କରିବେ ବୋଲି ଆମେ ଶୁଣି ଆସିଚୁ ।

ଆଚନ୍ତୁକ ତିନିଜଣ ସୁଯୋଗ ଖୋଜୁଥିଲେ, ତାଙ୍କ ଆସିବା ଖବର ଦାଦାଙ୍କ ପାଖରେ ପହଞ୍ଚାଇବା ପାଇଁ । ଅନ୍ୟମନସ୍କ ଭାବରେ ଚାରିଆଡ଼କୁ ଚାହିଁ ନିଶ୍ଚିତ ହେଉଥିଲେ ଯେ, ଗ୍ରାମଟି ଗାଁର ଚରାଚରିତ ଓ ସଂକ୍ଷିପ୍ତ ଭୂଗୋଳର କୌଣସି ପରିବର୍ତ୍ତନ ହୋଇ ନାହିଁ । ବଉଳଗଛ ମୂଳେ ଠିଆ ହୋଇ ପୂର୍ବ ଦିଗକୁ ଚାହିଁଲେ, ପ୍ରାୟ ତିନିଶହ ମିଟର ଦୂରରେ ବିଶାଳ ଓସ୍ତ ଗଛ । ରାସ୍ତାର ବାମକୁ, ସେ ପର୍ଯ୍ୟନ୍ତ ଠାକୁରଙ୍କର ବଗିଚା ଲମ୍ବି ଯାଇଚି । ଡାହାଣ ପାଖକୁ ଖୁନ୍ଦାଖୁନ୍ଦି ହୋଇ ଚାଳଘର ଗୁଡ଼ିଏ । ଘନଶ୍ୟାମ ଦାଦାଙ୍କ ଗୁହାଳ ଏବଂ ଆଗକୁ ଦୁଇ ମିଟର ଗୋଲେଇ ଓ ବାର-ଚଉଦ ମିଟର ଗଭୀରର ଠାକୁରଙ୍କର କୂଅ । ଚାରିପଟେ ସିମେଣ୍ଟ ଚଉତରା । ପୁଣି ଘର ଏବଂ ଦେବ ଆଚାର୍ଯ୍ୟଙ୍କ ଦୋକାନ ଓ ଘର । ପୁଣି ଲଗାଲଗି ହୋଇ ଘର ଗୁଡ଼ିଏ । ଓସ୍ତ ଗଛ । ବାମକୁ କିଛି ବାଟ ଗଲା ପରେ ପନ୍ଦର ଷୋଳଟି ପରିବାର । ସଙ୍କର୍ଷଣ ମାଷ୍ଟ୍ର ଓ ଅନନ୍ତ ସମେତ ମୁଖ୍ୟତଃ ମୂଲିଆ ଶ୍ରେଣୀର ଲୋକେ ରହନ୍ତି । ଧୋବା ଘର ମଧ୍ୟ ସେଇଠି ଅବସ୍ଥିତ ।

ବଉଳଗଛର ପଶ୍ଚିମକୁ, ଆମାରଘର ସାମନାରେ କାର୍ତ୍ତିକ ମଉସାଙ୍କ ପରିବାର । ଆଗକୁ ଗାଁର ପ୍ରଧାନଙ୍କର ସବୁଠାରୁ ବଡ଼ କୁଟୁମ୍ବ । ତା'ପରେ ବିଶାଳ ପଡ଼ିଆ । ମକରଯାତ୍ରା ସେଇଠି ଅନୁଷ୍ଠିତ ହୁଏ ଆଠ-ଦଶ ଦିନ ପାଇଁ ମାଘ ମାସରେ । ପଡ଼ିଆର ପଶ୍ଚିମରେ ବଣୁଆ ଗଛ-ଲଟା ପରିପୂର୍ଣ୍ଣ ପାହାଡ଼ ଓ ଶିଖରେ ମହାଦେବଙ୍କ ମନ୍ଦିର ।

ଗାଁର ଉତ୍ତର ଦିଗକୁ, ଠାକୁରଙ୍କ ଭଣ୍ଡାର ଘର ପଛରେ ପାଣ ସାହି । ଅଛୁଆଁ ହୋଇଥିବାରୁ ସେମାନେ ସଙ୍କୁଚିତ ଓ ଆପାତତଃ ନିର୍ବାସିତ ଜୀବନ ବିତାନ୍ତି । ଗାଁର ଦକ୍ଷିଣକୁ କୋହ୍ଲ ବସ୍ତି । ବେଳେ-ବେଳେ ହାଣ୍ଡିଆ ଖାଇ ମାତାଲ ହୁଅନ୍ତି । ମାଦଳ ବଜାଇ ଜହ୍ନ ରାତିରେ ନାଚନ୍ତି ଗୀତ ଗାଇ । ଏତିକ ହେଉଚି ଗାଁ । ଗାଁ ଚାରିପାଖରେ ଧାନ କ୍ଷେତ ଏବଂ ତାହା ଚାରିପାଖରେ ଗୋଟାଏ ସବୁଜ ନିଘଞ୍ଚ ବାଡ଼ ଭଳି

ଘଞ୍ଚ ଜଙ୍ଗଲ । ସହଜରେ ଜାଣି ହୁଏ ନାହିଁ, ଧାନ-କ୍ଷେତ ସଂପ୍ରସାରିତ ହୋଇ ଘଞ୍ଚ ଜଙ୍ଗଲକୁ ଦୂରକୁ ଠେଲି ନେଉଛି,—ନା ଘଞ୍ଚ ଜଙ୍ଗଲ ଗାଁ ଆଡ଼କୁ ଆଗେଇ ଆସିବାପାଇଁ ତତ୍ପର ହୋଇ ଧାନକ୍ଷେତକୁ ସଙ୍କୁଚିତ କରି ପକାଉଛି ।

ଘନଶ୍ୟାମ ଦାଦା ଆଗନ୍ତୁକମାନଙ୍କୁ ନମସ୍କାର କଲେ । ତାଙ୍କ ମୁହଁରେ ପ୍ରତିଫଳିତ ହୋଇଥିବା ନିଷ୍କପଟ ଆନନ୍ଦ ସୂଚେଇ ଦେଉଥିଲା ଯେ, ସେ ଆନ୍ତରିକ ଭାବରେ ଏମାନଙ୍କୁ ସ୍ୱାଗତ କରୁଚନ୍ତି ।

—"ଗ୍ଲେଷ୍ଟରାପ୍ସ ସାହେବ ଭଲ ଅଛନ୍ତି ? ମାସେ ରହିବେ, ନା ବେଶୀ ?" ଘନଶ୍ୟାମ ଦାଦା ପଚାରିଲେ ।

—"ସାହେବ ଭଲ ଅଛନ୍ତି । ଆଉ ମାସକୁ ତାଙ୍କ ଝିଅର ବାହାଘର ହେବ, ପଞ୍ଜାବଆଡ଼େ କେଉଁଠି ଗୋଟେ ଜାଗାରେ । ଛ'ସାତ ଦିନ ପରେ ପୁଅ ଯିବ ଆମେରିକା, বୁଲିବା ପାଇଁ ।" ସେମାନଙ୍କ ଭିତରୁ ଜଣେ କହିଲେ ।

ରାଜାଙ୍କ ସାନଭାଇ ଗ୍ଲେଷ୍ଟରାପ୍ସ ସାହେବ ପ୍ରତିବର୍ଷ ତିନିଜଣ ବ୍ରାହ୍ମଣ ପଠାନ୍ତି ଆମ ଗାଁକୁ । ସେମାନଙ୍କର ମାସେ ରହଣି ଭିତରେ ସେମାନେ ଦୁଇଓଳି ମନ୍ଦିରକୁ ଯାଆନ୍ତି ଗ୍ଲେଷ୍ଟରାପ୍ସ ପରିବାରର ମଙ୍ଗଳ ସକାଶେ ପୂଜା ଆରାଧନା କରିବା ପାଇଁ । ହୋମ ହୁଏ, ଯଜ୍ଞ ମଧ୍ୟ ହୁଏ । ଦିନରେ ତିନିଚାରିଘଣ୍ଟା ମନ୍ଦିରରେ କଟାଇବା ପରେ ଅବଶିଷ୍ଟ ସମୟତକ ସେମାନେ ଖର୍ଚ୍ଚ କରନ୍ତି ମନଇଚ୍ଛା । ପଶାଖେଳରେ ସେମାନେ ଧୁରନ୍ଧର ହୋଇଥିବାରୁ, ସେମାନଙ୍କର ଗାଁକୁ ଆସିବା ପରେ ପରେ ଦେବ ଆଗ୍ରୱାଲଙ୍କ ଦୋକାନ ବାରନ୍ଦା ସରଗରମ ହୋଇପଡ଼େ ଅପରାହ୍ଣ ତିନିଟା ସମୟରୁ । ଦିନେ ଦିନେ ପଶାଖେଳ ଚାଲେ ରାତି ପାହିବା ପର୍ଯ୍ୟନ୍ତ । ଦେବ ଆଗ୍ରୱାଲଙ୍କର ଅଭ୍ୟାସଗତ ଦୈନନ୍ଦିନ କାର୍ଯ୍ୟକ୍ରମ ବିଧ୍ୱସ୍ତ ହୋଇପଡ଼େ । ଗୋଟାଏ ଚରମ ଉନ୍ମାଦନାପୂର୍ଣ୍ଣ ନିଶା କାବୁ କରେ ତାଙ୍କୁ । ତାଙ୍କର ସହକାରୀ ଅନନ୍ତ ଚିଲମ ସଜାଡ଼ିବାରେ, ଭାଙ୍ଗ ପ୍ରସ୍ତୁତ କରିବାରେ ଏବଂ ଅନ୍ୟାନ୍ୟ ଟହଲିଆ କାମ କରିବାରେ ବେଳେବେଳେ ନୟାନ୍ତ ହୋଇପଡ଼େ । ଆମ ଗାଁର ଉତ୍ସବ-ମୁଖର ମଧୁର ଉତ୍ତେଜନାର

ମହାନ ନାଟକ ଅଭିନୀତ ହୁଏ ଦେବ ଆଗୃର୍ଯ୍ୟଙ୍କ ଦୋକାନ ବାରନ୍ଦାର ରଙ୍ଗମଞ୍ଚ ଉପରେ ।

ପରଦିନ ଅପରାହ୍ନ ତିନଟା ପୂର୍ବରୁ ଶତରଞ୍ଜି ବିଛା ସରିଥିଲା ବାରନ୍ଦା ଉପରେ । ଦିନ ପ୍ରାୟ ଗୋଟାଏ ବେଳୁ ଦେବ ଆଗୃର୍ଯ୍ୟ ସବୁ କାମ ଶେଷ କରି ଉତ୍କଣ୍ଠାର ସହିତ ଅସ୍ଥିର ଭାବରେ ଅପେକ୍ଷା କରୁଥିଲେ ତିନିଜଣ ପଣ୍ଡିତଙ୍କୁ । ଆମ ଗାଁ ଓ ପାଖ ଗାଁର ଦଶ-ବାର ଜଣ ଲୋକ ବାରନ୍ଦାରେ ବସିଥାନ୍ତି, ପଶା ଖେଳ ଦେଖିବା ପାଇଁ । ଦେବ ଆଗୃର୍ଯ୍ୟ ଦୁଇଥର ଅନନ୍ତକୁ ପଠେଇ ସାରିଥିଲେ କରଣ ବସାକୁ, ପଣ୍ଡିତମାନେ କେତେବେଳେ ଆସିବେ ଜାଣିବା ପାଇଁ ।

ବଉଳଗଛ ମୂଳେ ପଣ୍ଡିତମାନଙ୍କୁ ଦୋକାନ ଆଡ଼େ ଆସୁଥିବାର ଦେଖି, ଦେବ ଆଗୃର୍ଯ୍ୟ ରୂପାନ୍ତରିତ ହୋଇଗଲେ ଅନ୍ୟ ଏକ ଉଲ୍ଲସିତ ସତ୍ତାରେ । ଦୁଇ ହାତ ପ୍ରସାରିତ କରି ଅପୂର୍ବ ନାଟକୀୟ ଭଙ୍ଗୀରେ ଠିଆ ହୋଇ ସେ ଯାତ୍ରା ଡାଇଲଗ୍ ଉଚ୍ଚାରଣ କଲେ—

ହଜାରେ ଆକାଶର ଫର୍ଦ୍ଦ ଦରକାର ତୋ ପ୍ରତି ମୋ ପ୍ରେମର ହସ୍ତାକ୍ଷର ଲେଖିବା ସକାଶେ । ସମୁଦ୍ରର ସବୁ କାଳି ସରିଯିବ ଲେଖୁ ଲେଖୁ ତୋର ଆଖିର ଗୌରବ । ଆ, ଗୃଲିଆ, ଦିଗ୍‌ବଳୟଠାରୁ ଆହୁରି ପ୍ରସାରିତ ଏଇ ମୋର ହାତ ଭିତରକୁ । ମୋ ଗ୍ରୁତି ଭିତରେ ସାଇତି ରଖିଛି ମୁଁ ସମସ୍ତ ବୈକୁଣ୍ଠ । ତୋତେ ଭାବିବା ମାନେ, ରାତି କ'ଣ ଦିନ କ'ଣ—ସବୁ ହୁଏ ଅସମାପ୍ତ, ଅସ୍ଥିର ମୁହୂର୍ତ୍ତର ଉତ୍ତପ୍ତ ମରୁଭୂମି । ଆ, ଆ ତୃଷିତ ମୋର ଏଇ ଆବେଗର ଶେଷହୀନ ଭାଷା ଭିତରକୁ; ମୋ ସ୍ନେହର ସୀମାହୀନ ବାସ୍ନାର ପରିଧିକୁ ।

ଯାତ୍ରା ଡାଇଲଗ୍ ଉଚ୍ଚାରଣ କରିବା ମାନେ ଉପସ୍ଥିତ ଥିବା ସମସ୍ତ ମଣିଷ ବିମୂଢ଼, ବିମୁଗ୍ଧ, ବିସ୍ମୟାଚ୍ଛନ୍ନ ହୋଇପଡ଼ନ୍ତି । ଏକ ଅଲୌକିକ ସ୍ତବ୍ଧତା ଅଚଞ୍ଚଳ କରିଦିଏ ସମଗ୍ର ପରିବେଶକୁ । ବଉଳ ଗଛର ପତ୍ର ହଲେ ନାହିଁ, ଠାକୁରଙ୍କ ବଗିଚା ଭିତରେ ଥିବା ନଡ଼ିଆ ଗଛର ବାହୁଙ୍ଗା ଓଲଟ ପାଲଟ ହୁଏ ନାହିଁ, ମନ୍ଦିର ଉପରେ ଫର ଫର ହୋଇ ଉଡ଼ୁଥିବା ନାଲି ରଙ୍ଗର ତିନିକୋଣିଆ ପତାକା ଆଉଜି ରହେ ଖୁଣ୍ଟ

ପାଖରେ, କୂଅ ଭିତରୁ ଉପରକୁ ଉଠୁଥିବା ପାଣି ବାଲଟି ଅନ୍ୟମନସ୍କ ହୋଇପଡ଼େ, ଗାଈର ହମ୍ବାରଡ଼ି ଏବଂ ଢେଙ୍କି ଧ୍ୱନି ବାତିଲ ହୋଇଯାଏ ସେଇ ମୁହୂର୍ତ୍ତର ଅନୁଶାସନରେ । ଦେବ ଆଚାର୍ଯ୍ୟ ଏକ ଅଭୂତପୂର୍ବ ଅଞ୍ଚଳକୁ ସ୍ଥାନାନ୍ତରିତ ହୋଇଯାଆନ୍ତି ସତେ ଯେପରି ଏବଂ ସେଇ ଅଞ୍ଚଳର କାଳ୍ପନିକ ବାସ୍ତବତା ନିୟନ୍ତ୍ରଣ କରେ ତାଙ୍କ ଚେତନାକୁ । ଡାଇଲଗ୍ ସରିଯିବାର ଅଳ୍ପକ୍ଷଣ ମଧ୍ୟରେ ତାଙ୍କ ସତ୍ତାର ମଞ୍ଚ ସ୍ଥାନରୁ ଉତ୍ତୁରି ଆସି ବିଚ୍ଛୁରିତ ହୋଇଥିବା ଆବେଗ ପୁଣି ଅସ୍ତମିତ ହୁଏ ତାଙ୍କ ଭିତରେ । ଅପେରା ଭଙ୍ଗୀ ଅପସରି ଯାଏ । ସେ ସଳଖି ଠିଆ ହୁଅନ୍ତି ଏବଂ ପୁଣି ଦେବ ଆଚାର୍ଯ୍ୟ ହୋଇଯାଆନ୍ତି । ଏଇଥିପାଇଁ ସମସ୍ତଙ୍କ ଦୃଷ୍ଟିରେ ସେ ଥିଲେ ଜଣେ ରହସ୍ୟମୟ ଚରିତ୍ର; ଯାହାଙ୍କୁ ଆପଣାର କରାଯାଇ ପାରେ ଶ୍ରଦ୍ଧାର ସହିତ; ଯେ କି ପୁଣି ଅନନ୍ୟ ମୁହୂର୍ତ୍ତରେ ବିଶାଳ ଓ ଅବୋଧ ହୋଇ ପାରୁଥିଲେ ସଭିଙ୍କ ଦୃଷ୍ଟିରେ ।

ଦେବ ଆଚାର୍ଯ୍ୟ କେତେ ଉତ୍କୃଷ୍ଟ ଅଭିନେତା ଥିଲେ, ସେ ସମ୍ବନ୍ଧରେ କେବେ ଆଗଭର ହୋଇ କହି ନାହାନ୍ତି; କହିବା ଦରକାର ନ ଥିଲା । ଦୋକାନ କବାଟ ଖୋଲିଦେବା ମାତ୍ରେ ତାଙ୍କ ଅଭିନୟର କୁହୁକ ସମ୍ପର୍କରେ ନିର୍ଭୁଲ ପ୍ରମାଣ ଦେଖିବାକୁ ମିଳେ । ଝରକାବିହୀନ ଗ୍ଲେଟ ଘର ଭିତରେ ଥିଲା ପାଞ୍ଚଟି ଥାକ । ଗ୍ଲେଟ-ବଡ଼ ରଙ୍ଗଛଡ଼ା ଟିଣ, ଗ୍ଲେଟ-ବଡ଼ କାଚ ଜାର୍, ଗ୍ଲେଟ-ବଡ଼ ଡବା ଥାକଗୁଡ଼ିକରେ ସଜାଡ଼ି ହୋଇ ରହିଥିଲେ । ଗୋଟିଏ ପାଖରେ ଦେବ ଆଚାର୍ଯ୍ୟଙ୍କ ବସିବା ସ୍ଥାନ । ସାମନାକୁ ଲୁଣବସ୍ତା, କିରୋସିନ ଓ ସୋରିଷ ତେଲ ଟିଣ । ସବା ଉପର ଥାକ ପଟାରୁ ଧାଡ଼ି ହୋଇ ବିଭିନ୍ନ ଆକାରର ସୁନା-ରୂପା ରଙ୍ଗର ପ୍ରାୟ ପଚିଶଟା ମେଡ଼ାଲ ଝୁଲି ରହେ । ତାଙ୍କ ଅଭିନୟରେ ମୁଗ୍ଧ ହୋଇ ପ୍ରଶଂସକ ଶ୍ରୋତାମାନଙ୍କର ସେଗୁଡ଼ିକ ଥିଲା ତାଙ୍କ ପାଇଁ ସସ୍ନେହ ଉପହାର ।

ଘମାଘୋଟ ପଶା ଖେଳ ଆରମ୍ଭ ହୋଇ ଯାଇଥିଲା । ରାସ୍ତା-କଡ଼ରେ, ଦୋକାନ ଆଡ଼କୁ ମୁହଁ କରି ପନ୍ଦର କୋଡ଼ିଏ ଜଣ ଗରାଖ ଅପେକ୍ଷା କରୁଥିଲେ ସଉଦା ପାଇଁ । ସେମାନେ ଭଲ କରି ଜାଣନ୍ତି ଯେ,

ଗୋଟିଏ ବାଜି ନ ସରିବା ଯାଏଁ ଦେବ ଆଚାର୍ଯ୍ୟ ଖେଳ ଛାଡ଼ି ଉଠିବେ ନାହିଁ ।

ଦେବ ଆଚାର୍ଯ୍ୟ ଅନନ୍ତ ଆଡ଼େ ଅନେଇ ନିର୍ଦ୍ଦେଶ ଦେଲେ— "ଆଉ ବସିଲୁ କାହିଁକି ? ଚିଲମ ଠିକ୍ କର । ଖେଳ ଆହୁରି ଜମିବ ।"

କ୍ଲବରେ ପର୍ଯ୍ୟାପ୍ତ ପରିମାଣର ନଡ଼ିଆ କତା ଗୁଞ୍ଜା ହୋଇଥାଏ ଏଇ ଉଦ୍ଦେଶ୍ୟରେ । ଅନନ୍ତ ଦୋକାନ ଭିତରକୁ ଯାଇ ସିଜର୍ସ ବୋଲି ସିଗାରେଟ୍ ପ୍ୟାକେଟ୍‌ରୁ ସିଗାରେଟ୍ ଆଣିଲା । ଗଞ୍ଜେଇ କଳି ସହିତ ସିଗାରେଟ୍ ତୋଳି ମିଶେଇ ହାତ ଚକଟରେ ଦଳିବା ଆରମ୍ଭ କଲା । ନଡ଼ିଆ କତା ଗଣ୍ଡିରେ ନିଆଁ ଲଗାଇଲା । ଚିଲମରେ ଗଞ୍ଜେଇ ଗୁଣ୍ଡ ଭର୍ତ୍ତି କରି, ତା ଉପରେ ଥୋଇଦେଲା ଜଳନ୍ତା ନଡ଼ିଆକତା ଗଣ୍ଡିକୁ ।

ପ୍ରଥମେ ଆରମ୍ଭ ହେଲା ଧୂଳିଝଡ଼, ସୁ ସୁ ବତାସ ଓ ପ୍ରଚଣ୍ଡ ଘଡ଼ଘଡ଼ି । ଦୁଇଟାଯାକ ଲଣ୍ଠନ ବିନା ପ୍ରତିରୋଧରେ ଆତ୍ମସମର୍ପଣ କରିଦେଲେ ପବନର ଜବରଦସ୍ତ ହାତ ପାଖରେ । ତା ପରଠୁ ବର୍ଷା ଲାଗିରହିଛି ଏଯାଏଁ । ରାତି ଏଗାରଟା ପାଖାପାଖି । ରାତି ଭୋଜନ ପରେ ଦୋକାନକୁ ଲାଗିଥିବା ବଡ଼ ରୁମ୍‌ରେ ଦେବ ଆଚାର୍ଯ୍ୟ ଶୋଇବାକୁ ଚେଷ୍ଟା କରୁଥିଲେ । ଚଟାଣ ଉପରେ କଳା କାଚ ଘୋଡ଼େଇ ହୋଇ କୁଣ୍ଠିତ ଭାବରେ ଜଳୁଥିଲା ଲଣ୍ଠନ ।

ଅନନ୍ତ ଦେବ ଆଚାର୍ଯ୍ୟଙ୍କର ପ୍ରାୟ ଛ'ଫୁଟ ବଳିଷ୍ଠ ବଳିଷ୍ଠ ଗୋରା ତକ୍ ତକ୍ ଦେହ ମୋଡ଼ି ଦେଉଥିଲା, ତାଙ୍କର ବାରଣ ସତ୍ତ୍ୱେ । ଆଚାର୍ଯ୍ୟ ପରିବାର ବୁଝି ସାରିଥିଲେ ଯେ, ଅନନ୍ତ ତା'ର ଏକମାତ୍ର ପୁଅ ରାଧାକାନ୍ତ ସକାଶେ ଭାତ ନେଇ ଦେଇ ଆସିଛି, ପଶାଖେଳ ଚାଲିଥିବା ବେଳେ । ଘରେ ରାତି ପଡ଼ିବା ଦରକାର ନାହିଁ । ରାଧାକାନ୍ତ ପିଣ୍ଡା ଉପରେ ଶୋଇ ପଡ଼ିବା କଥା । ପବନ ବର୍ଷା ଯୋଗୁଁ ଘର ଭିତରକୁ ପଳେଇ ଯାଇଥିବ । ତା ପାଇଁ ଚିନ୍ତିତ ହେବାର ପ୍ରୟୋଜନ ନ ଥିଲା ।

ଗାଁରେ ଭଦ୍ରଙ୍କର ମରୁଡ଼ି ଅବସ୍ଥା ଯୋଗୁଁ ଦେବ ଆଚାର୍ଯ୍ୟ ପଳେଇ ଯାଇଥିଲେ ବିଦେଶକୁ । ଚାରି ବର୍ଷ ପରେ, ଏଇ ଦୁଇ ବର୍ଷ

ହେବ ଗାଁକୁ ଫେରି ଦୋକାନ ଖୋଲିଚନ୍ତି ଏବଂ ଗୃହ ଜମିର ଯତ୍ନ ନେବାକୁ ଚେଷ୍ଟା କରୁଚନ୍ତି । ପଚିଶ-ଛବିଶ ବର୍ଷର ଦେବ ଆଚାର୍ଯ୍ୟ କାହିଁକି ସଂସାର କରୁ ନାହାନ୍ତି, ସେ ପ୍ରଶ୍ନ ଏପର୍ଯ୍ୟନ୍ତ ଅସମାହିତ ହୋଇ ରହିଚି । ଏ ସମ୍ବନ୍ଧରେ କିଛି ପଚରିଲେ ସେ ତାହାକୁ ଏଡ଼ାଇ ଦିଅନ୍ତି । ଜୀବନକୁ ଉପଭୋଗ କରିବା ଓ ଦାୟିତ୍ୱମୁକ୍ତ ହୋଇ ରହିବା ସତେ ଯେପରି ତାଙ୍କର ଲକ୍ଷ୍ୟ ଥିଲି ।

ଦେବ ଆଚାର୍ଯ୍ୟ ଗାଁରେ ପହଞ୍ଚିବା ବେଳକୁ ଅନନ୍ତ ବିପତ୍ନୀକ ହୋଇ ସାରିଥିଲି । ପାଞ୍ଚ-ଛ' ବର୍ଷର ରାଧାକାନ୍ତକୁ ସମ୍ଭାଳି ବଞ୍ଚି ରହିବା ପାଇଁ ତାକୁ ଅଶେଷଃଶ୍ୱାସୀ ହୋଇ ସଂଗ୍ରାମ କରିବାକୁ ପଡ଼ୁଥିଲି । ସାମୟିକ ଭାବରେ ଅନ୍ୟର ମୂଲିଆ କାମ କରିବା ଓ ସମ୍ୟକ ବଢ଼େଇ କାମକୁ ସମ୍ବଳ କରି ଦିନ ବିତେଇବା ସହଜ ହେଉ ନ ଥିଲି ଆଦୌ । ଦେବ ଆଚାର୍ଯ୍ୟ ପହଞ୍ଚିବା ପରେ ସେ ତାଙ୍କର ପୂଝାରୀ, ସାଙ୍ଗ ଓ ମୂଲିଆ ଭାବରେ ନିଜକୁ ଆବିଷ୍କାର କଲି । ଆଚାର୍ଯ୍ୟଙ୍କର ଯେତିକି ଗୃହ ଜମି ଥିଲି, ଫସଲ ଭଲ ହେଲେ ବର୍ଷକର ଖାଇବା ମିଳି ଯାଉଥିଲି ସେଥିରୁ । ବେଶ୍ କିଛି ଧାନ ଓ ଡାଲି ଜାତୀୟ ଶସ୍ୟ ବଳୁଥିଲି ମଧ୍ୟ । ଅନନ୍ତ ରୋଷେଇ କରି ନିଜେ ଖାଏ ଏବଂ ରାଧାକାନ୍ତ ପାଇଁ ମଧ୍ୟ ନଏ । ଦେବ ଆଚାର୍ଯ୍ୟ ବେଧଡ଼କ ଜୀବନ ଯାପନ କରୁଥିଲେ ଅନନ୍ତ ଉପରେ ଭରସା ରଖି । ଅନନ୍ତ ପାଇଁ ଆଚାର୍ଯ୍ୟ ଥିଲେ ଏକମାତ୍ର ଅବଲମ୍ବନ ।

ଆମ ଗାଁରେ ରାଧାକାନ୍ତ ଭଳି ପିଲି ପାଇଁ ତାଙ୍କ ମୁରବୀମାନେ କୌଣସି ଯୋଜନା କରୁ ନ ଥିଲେ । ପିଲିମାନେ ଜନ୍ମ ହେଉଥିଲେ ଇତସ୍ତତଃ ଦାୟିତ୍ୱହୀନ ଭାବରେ ବଞ୍ଚି ହୋଇ ପଡ଼ୁଥିବା ମଞ୍ଜିରୁ ଗଛ ହେବା ଭଳି । ମା' ଛେଉଣ୍ଡ ବୋଲି ଅନନ୍ତ ବେଶ୍ ଶ୍ରଦ୍ଧା କରୁଥିଲି ରାଧାକାନ୍ତକୁ; ଅଥଚ ସଙ୍କର୍ଷଣ ମାଷ୍ଟ୍ରଙ୍କ ଭାଷାରେ ରାଧାକାନ୍ତ ଥିଲି ବାଳୁଙ୍ଗା ନମ୍ବର ଓ୍ୱାନ୍ । ପଣକିଆ କମ୍ବା ଅକ୍ଷର ଶିଖିବା ଅପେକ୍ଷା ଗଛ ଚଢ଼ିବା, ନଈ ପୋଖରୀରେ ପହଁରିବା, କାହା ବାଡ଼ିରୁ କାକୁଡ଼ି-କନ୍ଦମୂଳ ଚୋରି କରି ସାଙ୍ଗମାନଙ୍କ ସହିତ ଉପଭୋଗ କରିବା ତା'ର ଲକ୍ଷ୍ୟ ଥିଲି ।

ସଙ୍କର୍ଷଣ ମାଷ୍ଟ୍ରେ ନୃତ୍ୟଶାଳୀରେ ନସ୍ୟାନ୍ତ ହୋଇପଡ଼ିଲେ ରାଧାକାନ୍ତଙ୍କୁ ନେଇ । ତାଙ୍କ ପରାମର୍ଶରେ ଅନନ୍ତ ପ୍ରତ୍ୟାହାର କରି ଆଣିଲା ପୁଅକୁ ନୃତ୍ୟଶାଳୀରୁ ।

ବିସ୍ତୀର୍ଣ୍ଣ ମକରଯାତ୍ରାର ଉତ୍ତର ଦିଗକୁ ପାହାଡ଼ ତଳେ ଆମ ଗାଁ ଅପେରା ପାର୍ଟିର ଘର ଥିଲା । ଗୋଟାଏ ବଡ଼ ରୁମ୍ । ପାର୍ଟିର ଅନେକ ପିଲା ସମସ୍ତ କଟାନ୍ତି ସେଇଠି । ସନ୍ଧ୍ୟାରେ ରିହର୍ସାଲ ପରେ ସେଇ ଘରେ ଶୁଅନ୍ତି । ଅନ୍ୟ ଗୋଟିଏ ରୁମ୍‌ରେ ଦୁଇ ବର୍ଷ ହେଲା ଆସିଥିବା ଓସ୍ତାଦ ନାରାୟଣ ପଣ୍ଡା ରହନ୍ତି । ପାର୍ଟିର ପିଲାମାନେ ତାଙ୍କର ଚରମ ବଶ୍ୟତା ସ୍ୱୀକାର କରି ତାଙ୍କ ପାଇଁ ରୋଷେଇ କରନ୍ତି, ତାଙ୍କ ଲୁଗାପଟା ସଫା କରନ୍ତି ଇତ୍ୟାଦି । ନାରଣ ଓସ୍ତାଦ୍ ଥିଲେ ନିତାନ୍ତ ରାଗୁଆ ଲୋକ । ନିର୍ଘୃମ ମାଡ଼ ଦିଅନ୍ତି କାହାର ଗଲତି ଦେଖିଲେ । ତେବେ ତାଙ୍କ ଚେଷ୍ଟା ଫଳରେ ଆମ ଗାଁ ଯାତ୍ରାଦଳ ଆଖପାଖ ଅଞ୍ଚଳରେ କିଛି ନାଁ କମେଇଥିଲା । ବିଭିନ୍ନ ଗାଁକୁ କଲ୍‌ରେ ଏ ଦଳ ଯାଉଥିଲା ଏବଂ ଲଣ୍ଠନ ତଥା ମଶାଲ ଆଲୁଅରେ ଯାତ୍ରା କରି ବାହାବା ଅର୍ଜନ କରୁଥିଲା ।

ରାଧାକାନ୍ତଙ୍କୁ ନାରଣ ଓସ୍ତାଦ୍‌ଙ୍କ ଜିମା ଛାଡ଼ିଦେଇ ଅନନ୍ତ ଆଶ୍ୱସ୍ତ ହେଲା ଟିକିଏ । ମାଡ଼ ଖାଉ ପଛେ ପିଲାଟା କାଳେ ଟିକିଏ ବାଟେଇ ଯିବ । ଓସ୍ତାଦ୍ ପ୍ରଥମେ ଜମା ମଙ୍ଗୁ ନ ଥିଲେ ରାଧାକାନ୍ତ ଭଳି ଗୋଟାଏ ମୂର୍ଖ ଦାୟିତ୍ୱଜ୍ଞାନ-ବିବର୍ଜିତ ଖେଚଡ଼ ଟୋକାକୁ ଦଳରେ ମିଶାଇବା ସକାଶେ । ତେବେ ସେ ରାଜି ହେଲେ; କାରଣ ନୂଆ ବହିରେ ଶ୍ରୀକୃଷ୍ଣଙ୍କର ଯେଉଁ ଗୋଟିଏ ଭୂମିକା ଥିଲା, ସେଥିପାଇଁ ଦଳରେ ପିଲା ନ ଥିଲେ ।

ରାଧାକାନ୍ତ ଠିଆ ହୋଇଥାଏ ବିକଳ ଓ ଅସହାୟ ହୋଇ । ଚେୟାର ଉପରେ ବସିଥାନ୍ତି ଓସ୍ତାଦ୍ ଗୋଟିଏ ଗୋଡ଼ ଉପରେ ଅନ୍ୟ ଗୋଡ଼ଟି ରଖି । ଡାହାଣ ହାତରେ ଧରିଥାନ୍ତି ଅନିବାର୍ଯ୍ୟ ବେତ । ଗୋଟେ ଡାଇଲଗ୍ ଶିଖଉଥାନ୍ତି । ଢଡ଼ ଢଡ଼ ନାକ ପୋଛିବାକୁ ପଡ଼ୁଥିଲା ବାରମ୍ବାର ପାପୁଲି ପିଠିରେ । ବାରମ୍ବାର ଖସି ପଡ଼ୁଥିବା ପେଣ୍ଟ

ଟେକିବାକୁ ପଡ଼ୁଥିଲା । ପନ୍ଦର ମିନିଟ ପରେ କାରଣ ଓସ୍ତାଦ୍ ସମ୍ପୂର୍ଣ୍ଣ ହତାଶ ହୋଇପଡ଼ିଲେ ।

ସେ ଦିନ ଦ୍ୱିପ୍ରହରେ ସେ ଶୋଇଥାନ୍ତି । ହଠାତ୍ ହାଉଳା ଖାଇଲା ଭଳି କାହାର ଆର୍ତ୍ତନାଦରେ ଧଡ଼ପଡ଼ ହୋଇ ଉଠିପଡ଼ିଲେ । ସବୁଦିନ ଭଳି କାନ୍ଦୁଥିବା ରାଧାକାନ୍ତ ଅଭିଯୋଗ କଲା— 'ଆଜ୍ଞା, ଯଦୁ ଭାଇ ମୋର ଦୁଇଟା ଦାନ୍ତ ଭାଙ୍ଗିଦେଲା ।'' —''ଆଁ, ଭାଙ୍ଗିଦେଲା ? ଦୁଇଟା ଦାନ୍ତ ? କାହିଁ ? ଦେଖେ ?'' ବ୍ୟସ୍ତ ହୋଇପଡ଼ିଲେ ଓସ୍ତାଦ୍ । ରାଧାକାନ୍ତ ତା'ର ଶସ୍ତା ଗାଟାପାର୍ଚା ପାନିଆଁ ଦେଖେଇଲା ଏବଂ ତହିଁରୁ ଝଡ଼ି ଯାଇଥିବା ଦାନ୍ତର ଶୂନ୍ୟସ୍ଥାନ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କଲା ।

ସନ୍ଧ୍ୟାରେ ଡାଇଲଗ୍ ଶିଖାଇବାବେଳେ ଓସ୍ତାଦ୍‌ଙ୍କର ଧୈର୍ଯ୍ୟ-ଚ୍ୟୁତି ଘଟିଲା । ବିରକ୍ତ ଓ କ୍ରୋଧରେ ରାଧାକାନ୍ତର ପିଠି ଉପରେ ସେ ଦେଲେ ଦୁଇ ପାହାର କସି । ''ଆଲୋ ବାପଲୋ, ଶଳା ବେଧୁଆ ମାରି ପକାଇଲା ଲୋ'' ବୋଲି ଚିତ୍କାର କରି ରାଧାକାନ୍ତ ଧାଇଁ ପଳାଇଲା ସେଇ ଅସମ୍ଭବ ସ୍ଥାନରୁ । ଯିବା ଆଗରୁ ସମସ୍ତେ ଦେଖିଥିଲେ ଯେ, ରାଧାକାନ୍ତ ପେଣ୍ଟ ଓଦାକରି ପକାଇଛି ।

ସେ ଘଟଣା ପରଠୁ ଏପର୍ଯ୍ୟନ୍ତ ରାଧାକାନ୍ତ ବୁଲୁଛି ଓଲେଇ ଗାଇଟେ ଗୁହାଳରୁ ନିଜକୁ ମୁକ୍ତ କରି ମନ ଇଚ୍ଛା ବୁଲିବା ଭଳି ।

ପରଦିନ ଅପରାହ୍ଣ ଭିନଟାବେଳେ ଚାଲିଥିବା ପଶା ଖେଳ ସହସା ବ୍ୟାହତ ହେଲା । ପଣ୍ଡିତେ ପଶାକାଠି ତିନିଟା ଗଡ଼େଇ ଅପରିହାର୍ଯ୍ୟ ଦାନଟିଏ ପାଇବା ପାଇଁ ଆଦେଶ ଦେବା ଆଗରୁ ଶୁଭିଲା ଗୋଟାଏ ବଚସା । ପରେ ପରେ ଅଶ୍ଳୀଳ ସ୍ୱରର ନିର୍ଯ୍ୟାତିତ ପ୍ରତିଜ୍ଞା— ''ଶଳାକୁ ଆଜି ମାରିଦେବି ଜୀବନରେ ।'' ଧର ଧର, ହାଁ ହାଁ, ଆରେ ଥାଉ, ପିଲାଟା ମରିଗଲା ଇତ୍ୟାଦି ଉତ୍କଣ୍ଠିତ ଆତଙ୍କିତ ବ୍ୟସ୍ତ ସ୍ୱର ଗୁଡ଼ାଏ ଫେଣ୍ଟି ହୋଇଗଲା ।

କ'ଣ ହେଲା, କ'ଣ ହେଲା ବୋଲି ଦୋକାନ ବାରନ୍ଦାରେ ବସିଥିବା ସମସ୍ତେ ବ୍ୟସ୍ତ ଓ ଗୁନିଆଁ ହୋଇପଡ଼ିଲେ । ପଶାକାଠି ହାତ

ମୂଠାରୁ ଗଡ଼ିଗଲା ନାଇଁ ସତରଞ୍ଜି ଉପରେ । ଅନନ୍ତ ଗଡେଇଗଲା ଦଳାଦଳି ବରଖାସ୍ତ କଲା । କ'ଣ ହୋଇପାରେ ବ୍ୟାପାରଟା ବୋଲି ଗୋଟାଏ ଉଦ୍‌ବେଗପୂର୍ଣ୍ଣ ଅସ୍ଥିରଭାବରେ ସମସ୍ତେ ଉପାୟହୀନ ହୋଇପଡ଼ିବାବେଳେ ଦେଖିଲେ, ଧୂଳି ଧୂସରିତ ହୋଇ କୁମର ଧାଉଁଛି ରାସ୍ତା ଉପରେ । ତା' ପଛେ ପଛେ ଗୋଟାଏ ଟାଙ୍ଗିଆ ଧରି ତା' ମାମୁଘର, ଷୋଳ-ସତର ବର୍ଷର ରଘୁ ଗୋଡ଼ଉଛି ତାକୁ । ରଘୁର ଦୁଇ ଓଠ ସନ୍ଧିରୁ ରକ୍ତ ଝରି ଆସି ତା'ର ଗ୍ରୀବା ଓ ପିନ୍ଧିଥିବା ଲୁଗାକୁ ଓଦା କରି ସାରିଥିଲା । ଭୟଙ୍କର ଦିଶୁଥିଲା ସେ ଏବଂ ଘୋଷଣା କରୁଥିଲା—"ଶଳାକୁ ଆଜି ଦେବି ହାଣି ଏଇ ଟାଙ୍ଗିଆରେ ।" ପ୍ରତିଶୋଧ ନେବାର ଶପଥ ସହିତ ତା' ପ୍ରତି ହୋଇଥିବା ରକ୍ତାକ୍ତ ଅପମାନବୋଧ ତାକୁ ଅବାସ୍ତବ ଓ ଅପ୍ରାକୃତିକ କରି ଦେଇଥିଲା । ତା' ପଛେ ପଛେ ନିଃସହାୟ ବିଧବା ମା', ଉପାୟ ଶୂନ୍ୟ ହୋଇ କାନ୍ଦୁଥିଲା ଏବଂ ଅଭିଶାପ ବର୍ଷଣ କରୁଥିଲା—"ଅଳପାଇଶା ମୋ ପୁଅକୁ ମାରିଦେଲା । ହେ ଠାକୁରେ, ମୁଁ ଏଥର କରିବି କ'ଣ ? ଆରେ, କିଏ ଅଛ ଧରି ସେ ଗାତପଶା କୁମରକୁ । ତାକୁ ଆଜି ରଘୁ ହାଣିସାରିଲେ ଯେଉଁ କଥା । ସେ ଗାତ-ଚୁଲି'ଥେଟର ପାର୍ଟିରୁ ମୋତେ କ'ଣ ମିଳିବନି, ମୋ ମା' ରାଣୀ !"

ବ୍ୟାପାରଟା ବୁଝିନେବା ପାଇଁ ବେଶୀ ସମୟ ଲାଗି ନ ଥିଲା । ରଘୁକୁ ଆୟତ୍ତ କରି ନିରସ୍ତ କରିଦେବା ଆଦୌ ସମୟସାପେକ୍ଷ ନ ଥିଲା । ଏତେ ବଡ଼ ପିଲାଟା କାନ୍ଦୁଥାଏ ଏବଂ ଛଟିପିଟି ହେଉଥାଏ କୁମରକୁ ଗୋଡ଼େଇ ହାଣିବା ପାଇଁ ।

ଘନଶ୍ୟାମ ଦାଦା ଏକ ରକମ ଆଦେଶ ଦେଲେ—"ଧରି ଆଣ ସେ ବଦମାସ୍ କୁମରକୁ । ଆଗୁର୍ଯ୍ୟେ, ଠିଆ ହେଲ କ'ଣ ? ଧରି ଆଣ ତାକୁ । ତୁମ ବ୍ୟତୀତ ଆଉ କେହି ତାକୁ ସାବାଡ଼ କରି ପାରିବେ ନାଇଁ ।"

ହେଡ ଆଗୁର୍ଯ୍ୟ ନିଜର ବିଚକ୍ଷଣ ଶକ୍ତିର ପୁଣି ଥରେ ପ୍ରମାଣ ଦେବା ପାଇଁ ନିମିଷକ ମଧ୍ୟରେ ନିଷ୍କ୍ରାନ୍ତ ହେଲେ ସେ ସ୍ଥାନରୁ । କାନ୍ଧରେ ପକାଇଥିବା ଗାମୁଛାଟି ବଢ଼ାଇ ଦେଇ ଦାଦା ଆଦେଶ ଦେଲେ—"ସନା, ଏ ଗାମୁଛାଟା ଭିଜେଇ ଆଣ ଜଲ୍‌ଦି ।"

ତତ୍‌କ୍ଷଣାତ ସେତକ କାମ ହୋଇଗଲା ପରେ ଦାଦା କହିଲେ କୁମର ମା'କୁ—"ଏଇ ଓଦା ଗାମୁଛାରେ ରଘୁର ମୁହଁ, ଦେହ ଆଗ ପୋଛି ପକାଅ । ଗୁହିଁଚ କ'ଣ ? ତାକୁ ବସେଇ ଦିଅ ବାରନ୍ଦା ଉପରେ ।"

ରଘୁର ଉତ୍ତେଜନା କମି ଯାଇଥିଲେ ମଧ୍ୟ, ସେ ନର୍ଯାତିତ କୋହରେ ଧକେଇ ହେଉଥିଲା । ତା ମା' ଓଦା ଗାମୁଛାରେ ତା ଦେହ ପୋଛିବାବେଳେ ଲୁହ ଝରଉ ଥିଲା ଏବଂ କହୁଥିଲା—"ମୋ ଆଖିର ପିତୁଳାକୁ ସେ ରାକ୍ଷସ କ'ଣ କରିଚ, ଦେଖ । ତୋତେ ବ ଭଲ ହୋଇଚ । ଭଲ ମନ୍ଦ ଜନଷଟେ ତୋ ହାତରେ ଧରେଇ ଦେଲେ କହିବୁ କ'ଣ ନା, ଭାଇ ଆସୁ ଏକାସାଙ୍ଗେ ଖାଇବୁ । ଚବଶ ଘଣ୍ଟା ଭାଇ ଭାଇ ହୋଇ ତା ପଛେ ପଛେ ହେଉଥିବୁ । ତାକୁ ଯଦ ଆଉ ଥରେ ଭାଇବୋଲ ଡାକଚୁ , ତେବେ ତୋ ପିଠି ଚମଡ଼ା ଉତାର ଦେବ । ଆସୁ ସିଏ ଆଜ । ତାକୁ ଘରେ ପୂରେଇ ଦେବ ନାହିଁ । ଗୃହ-ବାସ କରୁ ନାହିଁ । ସଦାବେଳେ ବସିଥିବ ସେ ଥେଟର ଘରେ । ସେ ଗୁକାଣିଖିଆ ଓସ୍ତାଦ୍‌ର ଗୋଡ଼ ମୋଡ଼ ଦେଉଥିବ । ମୁଁ ରଣ୍ଡ ମାଇପଟେ ଇଆଡ଼େ ସିଆଡ଼େ ହୋଇ, ମାଗି ଯାଚ ଘର ଚଳେଇବ । ବଳଦକୁ ଚିବ । କୋଦାଳ ଧରି ହିଡ଼ ବନେଇବ । ନ ହେଲା, ଭାସି ଯାଉ ସବୁ । ଭିକ ମାଗି ବଞ୍ଚିବ ପଛେ, ତା ପାଇଁ ଚୁଲି ଜଳେଇବ ନାହିଁ ।"

କହୁଥାଏ ଏବଂ ତା ସ୍ୱର ଆତୁର ଛେଉଣ୍ଡ, ନଃସ୍ୱ ହୋଇ ଯାଉଥାଏ ତା ଜୀବନର ସମସ୍ତ ପୁଞ୍ଜୀଭୂତ ପରାଜୟ ଓ ରକ୍ତତା ବଢ଼ି ପୁଅ ପ୍ରତି ଥିବା ସମସ୍ତ ଅଭିଯୋଗ ଓ ବରକ୍ତି ପ୍ରକାଶ ପାଇ ଯାଉଥିଲା ତା ସ୍ୱର ଓ ଲୁହର ହସ୍ତାକ୍ଷରରେ । ଅଥଚ ସେ ଏସବୁ କହୁଥିଲା କାହାଁକ କେଜାଣି ? ଆମ ଗାଁର ପ୍ରତ୍ୟେକ ଲୋକ ଅନ୍ୟ ପରିବାରର ସମସ୍ତ ବ୍ୟାପାର ଜାଣିଥିଲେ । ଏସବୁ ବ୍ୟାପାର ଦାଣ୍ଡରେ ଘାଟରେ ବନା ସଙ୍କୋଚରେ ବନା ଅପମାନବୋଧରେ ଆଲୋଚିତ ହେଉଥିଲା । ବ୍ୟକ୍ତିଗତ ବ୍ୟାପାର ବୋଲି ନ ଥିଲା କିଛି । ସଙ୍କର୍ଷଣ ମାଷ୍ଟ୍ରେ ବନା ଦ୍ୱିଧାରେ ସମସ୍ତଙ୍କ ଆଗରେ ପ୍ରକାଶ କରନ୍ତି ଗୋବନ୍ଦର ଅପକର୍ମ

ସମ୍ପର୍କରେ । ଅଇଁଠୁ ନାଏକ ବାହାଚହିବାର ପନ୍ଦର ଦିନ ପରେ ସମସ୍ତଙ୍କୁ କହିଲି ଯେ, ତା ସ୍ତ୍ରୀ ବାପଘରୁ ଅନ୍ତଃସତ୍ତ୍ୱା ହୋଇ ଆସିଛି । ଏମିତି ହାରମଜାଦୀ ବେଦଧିଇ ମାଇକିନାକୁ ସେ ଜମା ରଖିବ ନାହିଁ ଘରେ । ରଖିଲି ନାହିଁ । ପୂର୍ଣ୍ଣି ସେଠୀ ଧକେଇ ହେଲାଣି । ଧରଣୀକୁ ଦୁଇ ହାତ-ମୁଠାରେ ଜାବୁଡ଼ି ଧରୁଚି । ମରିବା ବେଳ ଆସିଗଲାଣି । କାହିଁ କେତେ ବର୍ଷ ଧରି ଗାଁ ଲୋକଙ୍କର ଲୁଗାପଟା ସଫା କରିଥିବା ଏଇ ପ୍ରାଚୀନ ଧୋବାକୁ ଦେଖିବା ପାଇଁ ଗାଁର ସମସ୍ତେ ଠୁଳ ହୋଇ ଯାଇଥିଲେ ତା'ର ସଂକୀର୍ଣ୍ଣ ଘରେ ଓ ଅଗଣାରେ । ବଂଶୀଧରଙ୍କ ବଡ଼ପୁଅର ବିବାହ ପ୍ରସ୍ତାବ ପକ୍‌କା ହୋଇପାରିବ ନାହିଁ, ଯେ ପର୍ଯ୍ୟନ୍ତ ଗାଁ ଲୋକେ ପାତ୍ରୀ ସମ୍ପର୍କରେ ଓ ତା'ର ପରିବାର ସମ୍ପର୍କରେ ଭଲ ଭାବରେ ଜାଣି ସେ ଉପଯୁକ୍ତ ବୋଲି ସୁପାରିଶ୍ ନ କରିଚନ୍ତି । ବାହାଘର ବ୍ରତଘର ଭୋଜିରେ ପରଷିବାକୁ କାହାରିକୁ କୁହାଯାଉ ନ ଥିଲି, କାହାରିକୁ କୁହାଯାଉ ନ ଥିଲି ମଣ୍ଡାସାଙ୍ଗିଆ ହେବାପାଇଁ । ସବୁ ଘଟୁଥିଲି ଆପଣାଛାଏ, କୌଣସି ନିର୍ଦ୍ଦେଶକୁ ଅପେକ୍ଷା ନ କରି । ଘନଶ୍ୟାମ ଦାଦାଙ୍କ ବାରିର ଆମ୍ବ, ତେନ୍ତୁଳି ଓ ବଢ଼ି ବଣ୍ଟାଯାଏ । ଦିବାକର ମାମୁଁ ବାଣ୍ଟେ ତା ବାରିରେ ଫଳିଥିବା ବାଇଗଣ କଆଁରେ ହୋଇଥିବା ଲେଉଟିଆ ଶାଗ । ରନ୍ଧା ଯାଇଥିବା ଡାଲି ତରକାରୀ ଇତ୍ୟାଦି ବିନିମୟ ହେଉଥିଲି ପରିବାର ମଧ୍ୟରେ ।

ଖସିଯିବ୍ ଏ ହାତର ଲୌହ ବଳୟରୁ ? ଏ ହାତର ବନ୍ଧନ ଭିତରେ ଭାଙ୍ଗିଯାଏ ଦୁର୍ଦ୍ଧାନ୍ତ ଶତ୍ରୁର ପଞ୍ଜରାହାଡ଼ ଆଉ ମେରୁଦଣ୍ଡ । ଏ ହାତର ତରବାରୀ ଚାଳନାରେ ଭୂଲୁଣ୍ଠିତ ହୁଏ ଦୁର୍ନିବାର ରାଜା ଆଉ ସେନାପତି । ପୁଣି ଏ ହାତର ସୀମାହୀନ ଫୁଲର କୋମଳତାରେ ଆଉଜି ପଡ଼େ, ଶୋଇଯାଏ ପ୍ରେମିକାର କ୍ଲାନ୍ତ ଆଉ ଆଶ୍ୱସ୍ତ ଶରୀର ।

ଏ ଡାଇଲଗ୍ ଶେଷ ହେବା ବେଳକୁ କୁମରକୁ ଧରି ପଡ଼ିଥିବା ଯାଉଥିଲେ ଦେବ ଆଶ୍ଚର୍ଯ୍ୟ । କୁମର ମୁହଁ ଦେଖା ଯାଉଥିଲି ସାବଲୀଳ ଓ ଅନୁତପ୍ତ । ମା' ଏବଂ ରଘୁଆଡ଼ୁ ଆଖି ଫେରାଇ ସେ ଓଠ ଚୁଟିଲି, ଦୀର୍ଘଶ୍ୱାସ ତ୍ୟାଗ କଲି । ଚୁପ୍ ହୋଇଯାଇଥିବା ରଘୁ ପୁଣି ଚାପା କଣ୍ଠରେ କାନ୍ଦିଲି, ଉତ୍ତର ଆସୁଥିବା କୋହ ପ୍ରକାଶ କଲା ।

ଘନଶ୍ୟାମ ଦାଦା ନଜର ପାଞ୍ଚଫୁଟ ତିନି ଇଞ୍ଚ ବିଶିଷ୍ଟ ସ୍ଥୂଳଦେହ ନେଇ ଠିଆ ହେଲେ କୁମରର ପ୍ରାୟ ଛ'ଫୁଟ ଉଚ୍ଚ ବଳିଷ୍ଠ ଦେହ ସାମନାରେ । ରାଜା ଓ ସେନାପତି ପାର୍ଟ କରୁଥିବା ଏବଂ ଗାଁ ଅପେରା ପାର୍ଟି ପାଇଁ ଆପାତତଃ ପାଗଳ ଥିବା କୁମରର ଦୁଇ ଗାଲ ଉପରେ ଦୁଇ ଗୁରିଟା ଚଟକଣି ଓ ପିଠିରେ ଗୋଟେ ଦୁଇଟା ଶକ୍ତ ବିଧା ଅଜାଡି ଦେବାବେଳେ ପ୍ରତିରୋଧହୀନ କୁମର ପ୍ରାର୍ଥନା କଲା—"ଦାଦା, ମରିଗଲି ।"

ଗାଁର ଅଧିକାଂଶ ସ୍ତ୍ରୀ ଭଳି କୁମର ମା' ଦାଦାଙ୍କୁ ବାବୁ ବୋଲି ସମ୍ବୋଧନ କରି ଉଠିଆସିଲା ବସିଲା ଜାଗାରୁ ଏବଂ କାକୁତି ମିନତି ହୋଇ ଅଳି କଲା—"ତାକୁ ଆଜି ଦିନଟା ଛାଡ଼ିଦିଅ ବାବୁ ।"

ଘନଶ୍ୟାମ ଦାଦାଙ୍କର କ୍ରୁଦ୍ଧ ମୁହଁରୁ ଉଚ୍ଚାରିତ ହେଲା—"ଶୈତାନ୍, ଖୁମ୍ମ, ପିଶାଚ ।"

କୁମର ମା' ହାତରୁ ଓଦା ବାମ୍ବୁଗ୍ଲାଟା ଛଡ଼େଇ ଆଣି ସେ କୁମର ଆଡ଼େ ବଢ଼େଇଲେ ଏବଂ ନିର୍ଦ୍ଦେଶ ଦେଲେ—"ଦେହ ପୋଛିପକା ଏଥିରେ । ମୂର୍ଖ କେଉଁଠିକାର !"

ଦୋକାନ ବାରନ୍ଦା ଅଞ୍ଚଳଟା ପ୍ରାୟ ଭରପୂର ଥିଲା ଦେଖଣାହାରିଙ୍କ ଉପସ୍ଥିତିରେ । ଘନଶ୍ୟାମ ଦାଦା ଏଭଳି ପରିସ୍ଥିତିରେ ନଜର ନୈତିକ ବରିଷ୍ଠବୋଧ ପ୍ରକାଶ କରନ୍ତି ଏବଂ ତାଙ୍କର ନ୍ୟାୟପରାୟଣତା ସହିତ ଉଦାରତା ଗ୍ରହଣ କରି ନଅନ୍ତି ସମସ୍ତେ ।—"ସ୍କୁଲ୍ ହେଲେ ସିଏ ଯାତ୍ରା ପାର୍ଟିରେ ନ ମିଶି ପାଠ ପଢ଼ିବ ବୋଲି କହିବାରୁ, ତୁ ତୋ ସାନଭାଇଟାକୁ ଏମିତି ପିଟିବୁ ? ଗୋଟେ ପେଟରୁ ଦୁହେଁ ଜନ୍ମ ହେଇଚ, ଗୋଟିଏ ମା'ର କ୍ଷୀର ପିଇଚ ! ତାକୁ ଏମିତି ପିଟିବା ପାଇଁ ତୋର ହାତ ଗଲା କମିତି ?

ଆହତ ଆବେଗରେ ଦାଦାଙ୍କର ସ୍ୱର କମ୍ପୁଥିଲା । କୁମର ଦେହ ମୁଣ୍ଡ ପୋଛି ହୋଇ ଠିଆ ହୋଇଥିଲା କୈଫିୟତହୀନ ହୋଇ ।

—"ଯା ରଘୁର ଦୁଇ ହାତ ଧରି କହ, ଆଉ ଏମିତି ତାକୁ ବାଡ଼େଇବୁ ନାହିଁ । ଯା'ପରା କହୁଛି । ଠିଆ ହେଲୁ କ'ଣ ?"

କୁମର ପ୍ରଥମେ ଇତସ୍ତତଃ ହେଲା । ଚାରିଆଡ଼କୁ ଚାହିଁ ରଘୁ-ଆଡ଼କୁ ଗଲାବେଳେ ଆଶଙ୍କା ଓ ଭୟରେ ଆତଙ୍କିତ ହୋଇ ରଘୁ ଠିଆ ହୋଇ ପଡ଼ିଲା । ଉଦ୍‌ବେଗ ଓ ନମ୍ରତାରେ କୁମର ମା'ର ତଣ୍ଟି ଶୁଖିଗଲା । କୁମର ରଘୁର ହାତ ଧରୁ ଧରୁ ଗୋଟାଏ ଅନିୟନ୍ତ୍ରିତ ମମତାରେ ତାକୁ ଆଲିଙ୍ଗନ କରିପକାଇଲା । ରଘୁ ମୁଣ୍ଡରେ ଶକ୍ତ ଚୁମାଟିଏ ଦେବା ପରେ ସେ କାନ୍ଦି ପକେଇଲା ରାହାଧରି ଛୁଆଟିଏ କାନ୍ଦିବା ଭଳି ।

ଏ ନାଟକୀୟ ଦୃଶ୍ୟରେ କ'ଣ ଥିଲା କେଜାଣି, ଦେବ ଆଚାର୍ଯ୍ୟ ଆଖିର ଲୁହ ପୋଛିଲେ । ସହଜେ ତ ସେ ଥିଲେ ଜଣେ ଆବେଗ-ସର୍ବସ୍ୱ ମଣିଷ । ତିନିଜଣ ପଣ୍ଡିତଙ୍କ ଦୁଇ ଓଠ ଓ ନାକପୁଡ଼ା କମ୍ପୁଥିଲା । ଉପସ୍ଥିତ ଥିବା କେତେଜଣ କହି ପକାଇଲେ—"ହଉ ହଉ ହେଲା । ବଡ଼ ଭାଇ ତ ! ରାଗରେ ଅନ୍ଧ ହୋଇ ମାରିଥିଲା । ତା' ଭୁଲ୍ ବୁଝିପାରି ସେ କାନ୍ଦୁଛି ।"

ଘନଶ୍ୟାମ ଦାଦା ବସି ସାରିଥିଲେ ତାଙ୍କ ନିର୍ଦ୍ଧାରିତ ସ୍ଥାନରେ । କହିଲେ—"କୁମର, ଯା ତୋ' ଖୁଡ଼ୀକୁ କହିବୁ ପଖାଳ ଗଣ୍ଡାଏ ଦେବ, ତମ ଦୁହିଁଙ୍କୁ । ଗୋଟିଏ ବେଲାରେ ଏକାଠି ଖାଇବ ।"

ଗାଁର ସମସ୍ୟା ସମାହିତ ହୋଇଯାଏ ଏମିତି ଭାବରେ, ଅନ୍ୟ-ମାନେ ଅଯାଚିତ ହୋଇ ହସ୍ତକ୍ଷେପ କରନ୍ତି ଏଭଳି ପରିସ୍ଥିତିରେ । କିନ୍ତୁ ବ୍ୟାପାରଟା ଯଦି ଗୁରୁତର ହୋଇଥାଏ, ତେବେ ସନ୍ଧ୍ୟାବେଳେ ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦାରେ ନ୍ୟାୟ ନିଶାପ ହୁଏ । କାଠିଆ ବାରିକର ବଡ଼ ପୁଅ ସ୍ତ୍ରୀର ପ୍ରରୋଚନାରେ ଜିଦ୍ କଲା ଭିନେ ହେବାପାଇଁ । ଘରେ ଅଶାନ୍ତି ସୃଷ୍ଟି ହେଉଥିବାରୁ କାଠିଆ ରାଜି ହେଲା ଏବଂ ମୁହେଁ ମୁହେଁ କହିଦେଲା କେଉଁ ଘର ଭିହ, କେଉଁ ଜମି ବଡ଼ ପୁଅ ପାଇବ । ସେ ଟୋକା ସେଥିରେ ରାଜି ହେଲା ନାହିଁ । ତା'ପ୍ରତି ଅବିଚାର କରାଯାଉଛି ବୋଲି ଅଭିଯୋଗ କଲା । ସମସ୍ୟାର ସମାଧାନ ହେଲା ଦେବଆଚାର୍ଯ୍ୟଙ୍କ

ଦୋକାନ ବାରନ୍ଦାରେ ଅନୁଷ୍ଠିତ ମିଟିଙ୍ଗ୍‌ରେ । ପାହାଡ଼ ତଳ ଜମିରୁ ଯେଉଁ ଝରଣା ବାହାରିଚି, ତାହା ଶୁଖିଲା ଜମିକୁ ପାଣି ଯୋଗାଏ, କେଉଁଷଣ ସମୟରେ ଝରଣାଟା ପୋତି ହୋଇ ପଡ଼ୁଚି । ଗାଁ ଲୋକେ ଏକାଠି ମିଶି ସେ କାମ କରନ୍ତି । ଅଷ୍ଟପ୍ରହରୀ ପାଇଁ ଚାନ୍ଦା ଆଦାୟ ହୁଏ ବିନା ଆପତ୍ତି ଅଭିଯୋଗରେ ।

ସ୍କୁଲ ସ୍ଥାପିତ ହେବାଟା ଗାଁ ଅପେରା ପାର୍ଟି ପ୍ରତି ଗୋଟାଏ ଚ୍ୟାଲେଞ୍ଜ ନୁହେଁ, ଖଣ୍ଡମତ ଗୋଟାଏ ବିପଦ ବୋଲି କୁମର ଭଳି କେତେ-ଜଣ ଅପେରା ପାଗଳ ଯୁବକ ମନେ କରଥା'ନ୍ତି । ସେମାନେ ଗୁପ୍ତରେ ଏକରକମ ଷଡ଼ଯନ୍ତ୍ର କରୁଥିଲେ ସ୍କୁଲ ସ୍ଥାପନକୁ ଭଣ୍ଡୁର କରିଦେବା ପାଇଁ । ଏଠାକୁ ଯେଉଁ ଶିକ୍ଷକ ଆସିବେ, ତାଙ୍କୁ ମାଡ଼ ଦେବା, ରାତିରେ ଭୂତ ହୋଇ ଡରାଇବା, ଯାହାରେ ମିଶିଥିବା ପିଲାମାନେ ସ୍କୁଲରେ ନାଁ ଲେଖାଇବାକୁ ଚାହିଁଲେ ସେମାନଙ୍କୁ ବାସନ୍ଦ କରିବା ଏବଂ ଦରକାର ହେଲେ ବାଡ଼େଇବା ଇତ୍ୟାଦି ଥିଲା ସେମାନଙ୍କ ଯୋଜନାର ଅନ୍ତର୍ଭୁକ୍ତ । ଢେଙ୍ଗା ନହକା ଗୋରା ନାରଣ ଓସ୍ତାଦ୍ ଜନ୍ତୁ ବେଧଡ଼କ ହୋଇ କାନାଭିପାଟ କରୁଥିଲେ । "ସ୍କୁଲ ? ଫୁଃ···! ସ୍କୁଲ ଗୋଟେ କ'ଣ କି ? ସେଥିରୁ ତୁମେ ସବୁ ପାଇବ କ'ଣ ? ଯାତ୍ରା ପାର୍ଟିରେ କି ମଜା ଦେଖୁଚ ତ ? ସ୍କୁଲ ଯଦି ହୁଏ, ତେବେ ସେଇଟା ଚାଲିବ ତା' ବାଟରେ; ଆମେ ଚାଲିବା ଆମ ବାଟରେ ।"

କୁମର—ରଘୁ ଘଟଣା ପରେ ପଶା ଖେଳାଳୀମାନେ ମନଯୋଗୀ ହୋଇପାରୁ ନ ଥିଲେ ଖେଳ ଚାଲୁ କରିବା ପାଇଁ । ସେଇ ସୁଯୋଗରେ ଗାଁ' ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ କେତୋଟି କଥା ଆଲୋଚିତ ହେଲା । ଯଥା:— ସ୍କୁଲ ହେଲେ କେଉଁଠି ହେବ ଏବଂ ସେଥିପାଇଁ ଘର ତିଆରି ହେବ କିପରି । କିଏ କେତେ ସାହାଯ୍ୟ କରିପାରିବେ ସେ ବାବଦରେ । ମାଷ୍ଟ୍ର ଆସିଲେ ରହିବେ କେଉଁଠି; ଖିଆପିଆ କରିବେ କିପରି ଇତ୍ୟାଦି । ଗାଁ'ର ପଶ୍ଚିମ ଦିଗରେ ମକରଯାତ୍ରା ପଡ଼ିଆ ଆରପାଖରେ କେନ୍ଦୁ ଓ ଶାଳ ବୁଦା ପରିପୂର୍ଣ୍ଣ ଅଞ୍ଚଳଟା ସଫା ହୋଇ ଘର ତିଆରି ହେବ । ମାତ୍ର ପାଞ୍ଚ ମିନିଟ୍‌ରେ ନିର୍ଦ୍ଧାରିତ ହୋଇଗଲା କିଏ କେତୋଟି ରୁଅ-ବତା

ଦେବ ଇତ୍ୟାଦି । ମାଷ୍ଟ୍ର ରହିବେ ଠାକୁରଙ୍କ ଭଣ୍ଡାର ଘରେ । ସ୍ଥାୟୀ ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ଘନଶ୍ୟାମ ଦାଦାଙ୍କ ଘରେ ଖିଆପିଆ କରିବେ ।

କାହାରି କିଛି ଆପତ୍ତି ନ ଥିଲା । ଅଭିଜ୍ କିଛି ଆଲୋଚିତ ହେବା ଆଗରୁ ସମସ୍ତେ ଶୁଣିଲେ ମୋଟରଗାଡ଼ିର ଘ୍ୟାଁ···ଘ୍ୟାଁ···ଶବ୍ଦ । ଶବ୍ଦ ପାଖେଇ ଆସିଲା ଏବଂ ସମସ୍ତେ ଦେଖିଲେ, ଜିପ୍‌ଟିଏ ବଉଳ ଗଛ ମୂଳେ ଅଟକିବାର । ଜିପ୍ ପଛରେ ଗାଁର ପ୍ରାୟ ସମସ୍ତ ଛୁଆ ଉତ୍ସାହ ଓ ଉତ୍ତେଜନାପୂର୍ଣ୍ଣ କୋଳାହଳ କରି ଦୌଡ଼ିଗଲେ ଯନ୍ତ୍ର ଗୃହପାଖରେ ।

ଗାଁକୁ ଗାଡ଼ି ଆସିବାମାତ୍ରେ ଏୟା ହୁଏ । ଠାକୁର ଦର୍ଶନ ପାଇଁ ଆସୁଥିବା ଗାଡ଼ିଗୁଡ଼ିକ ମନ୍ଦିର ଚାଉଳ ତଳେ ଅଟକି ରହନ୍ତି । ବମ୍ପର ଓ ଚକ ସମେତ ଗାଡ଼ିର ଅଙ୍ଗପ୍ରତ୍ୟଙ୍ଗ ଆଉଁସୁଥିବାବେଳେ ରଙ୍କିଆ ବୋଲି ଟୋକାଟେ ଆବିଷ୍କାର କରିଥିଲା ଯେ, ଗାଡ଼ିର ଚକରୁ ଲୁହାର ସରୁ ନଳଟିଏ ପଦାକୁ ବାହାରିଛି । ନଳ ମଝିରେ ଥିବା ପିନ୍‌କୁ ଦାବି ଦେଲେ ଫୁସ୍ ଫୁସ୍ ହୋଇ ଶବ୍ଦ ବାହାରୁଛି । କୋଉଠି, କାଇଁ, ଦେଖିବା ବୋଲି କହି ଅନୁସନ୍ଧିତ୍ସୁ ପିଲାମାନେ କ୍ରମାଗତ ଭାବରେ ସବୁ ଚକର ପିନ୍ ଦାବିବା ଆରମ୍ଭ କରିଥିଲେ ବିପୁଳ ଉଦ୍ଦୀପନାର ସହିତ ରହସ୍ୟମୟ ଆବିଷ୍କାର କରିଥିବା ଭଳି । ଦୈବାତ୍ ଗାଡ଼ିରେ ଆସିଥିବା ଲୋକ ଜଣେ ହେ, ହେ, କ'ଣ ହେଉଛି ସେଠି ବୋଲି ପାଟିକରି ଢଉଡ଼େଇ ଦେଇଥିଲା ପୁଳାଏ ଗୁଡ଼ି ଗୃହପଟେ ଦେଖିଥିବା ଉତ୍ସାହଧାସ୍ତ ଜନ୍ଦା ଭଳି ସେ ଟୋକାମାନଙ୍କୁ । ମୁଣ୍ଡରେ ହାତ ଦେଇ ସେ ଆବିଷ୍କାର କରିଥିଲା ଯେ, ଗୋଟିଏ ଆଗ ଚକ ଫଟା ବେଲୁନ ଭଳି ଆଣ୍ଠେଇ ପଡ଼ିଛି ଭୂଇଁ ଉପରେ ।

ଜିପ୍‌ରୁ ଖାର ଦର୍ପରେ ଫୁଲ୍‌ପେଣ୍ଟ୍ ଓ ଚଷମା ପିନ୍ଧା ଚକ୍ ଚକ୍ ଗୃହଜଣ ଲୋକ ଓହ୍ଲାଇ ପଡ଼ିଲେ । ପୋଷାକରେ ଲାଗିଥିବା ଧୂଳି ଝାଡ଼ିଲେ । ଧୂଳିଧୂସରିତ ଗାଁ ରାସ୍ତା ଉପରେ ଜୋତା ରଖିବା ଉଚିତ ହୋଇଛି କି ନା, ତାହା ଭାବିବାକୁ ଲାଗିଲେ । ସମ୍ପୂର୍ଣ୍ଣ ଅସନ୍ତୁଷ୍ଟ ଓ ତାଚ୍ଛଲ୍ୟ ଦୃଷ୍ଟିରେ ଗୃହପାଖରେ ରୁଣ୍ଡ ହୋଇଥିବା ଲଙ୍ଗଳା, ଅଧା ଲଙ୍ଗଳା, ଲୁଗା

ପିଲା ଓ ବୟସ୍କ ଲୋକମାନଙ୍କୁ ଦେଖିଲେ । ପର୍ଯ୍ୟବେକ୍ଷଣ କଲେ ଗୁଳଘରମାନଙ୍କୁ ।

ଜଣେ କହିଲେ—"ଏ ବାବୁ ହେଉଚନ୍ତି ବ. ଡ଼. ଓ. । ବ୍ଲକ୍ ଅଫିସ୍‌ର ସର୍ବେସର୍ବା । ଚୌକି ଆଣ, ବସିବା ପାଇଁ ।"

ବ. ଡ଼. ଓ. । କଥାଟା ଏ କାନରୁ ସେ କାନ ବଣ୍ଟିହୋଇ ପଡ଼ିଲା । ସମ୍ଭ୍ରମର ସହିତ ଠାକୁରଙ୍କ କୋଠାଘରୁ ଓ ଘନଶ୍ୟାମ ଦାଦାଙ୍କ ଘରୁ ଖୁବ୍ କ୍ୱଚିତ ବ୍ୟବହୃତ ହେଉଥିବା ଗୁରିଟା ଚୌକି ବୁହାହୋଇ ଆସିଲା ।

—"ତୁମ ଗାଁରେ ଗୁ' ମିଳିବ ?" ଅନ୍ୟ ଜଣେ ପଗୁରିଲେ ରୁମାଲରେ ଚଷମା ପୋଛୁ ପୋଛୁ ।

ନିତାନ୍ତ ଅପରାଧୀ ଓ ଭୀରୁ ମନେ କଲେ ସମସ୍ତେ । କେହି ଜଣେ ସାହସ କରି କହିଲା—"ଆମ ଗାଁରେ କେହି ଗୁ' ପିଅନ୍ତି ନାହିଁ ।"

—"ଗୁ' ପିଅନ୍ତି ନାହିଁ କେହି ?" ଆଉ ଜଣେ ବୋଧହୁଏ ତାଙ୍କ ଜୀବନକାଳ ମଧ୍ୟରେ ସେମିତି ବିସ୍ମିତ ଓ ହତୋତ୍ସାହ ହୋଇ ନ ଥିଲେ । "କ'ଣ ପିଅନ୍ତି, ତେବେ ? ବିଅର୍ ନା ହୁଇସ୍କି ? ରଷ୍ଟିକ୍‌ସ ଗୁଡ଼ାଏ ।" ସେ ମନ୍ତବ୍ୟ ବାଢ଼ିଲେ ।

ଘନଶ୍ୟାମ ଦାଦା ସେଠାରେ ପହଞ୍ଚି ନମ୍ରତାର ସହିତ ପଗୁରିଲେ—"ସର୍ବତ ପିଇବେ ?"

—"ନଟ୍ ଏ ବ୍ୟାଡ଼ ଆଇଡ଼ିଆ ।" ସ୍ୱୟଂ ବ.ଡ଼.ଓ. କହିଲେ, "ହଉ, ଆଣନ୍ତୁ ।"

ଦାଦା ଜଣକୁ କହିଲେ ତାଙ୍କ ଘରୁ ଗୁରି ଗ୍ଲାସ୍ ଦହି ସର୍ବତ୍ ଆଣିବା ପାଇଁ ।

"ଆପଣ କ'ଣ ଏ ଗାଁର ପଧାନ ?" ବ.ଡ଼.ଓ.ଙ୍କ ପ୍ରଶ୍ନ ଦାଦାଙ୍କ ଉଦ୍ଦେଶ୍ୟରେ । ଗାଁର ମୁଖ୍ୟ ଥିଲେ ପଧାନ । ପୁରୁଷାନୁକ୍ରମେ ଏ ପଦବୀ ଗଡ଼ି ଆସୁଥିଲା । ଖଜଣା ଆଦାୟ କରି ରାଜକୋଷ ଏବଂ ପରେ ଟ୍ରେଜେରୀରେ ଦାଖଲ କରିବା ଥିଲା ପଧାନଙ୍କ କାମ ।

ଘନଶ୍ୟାମ ଦାଦା ଆଗ ଭଳି ଧୀର ନମ୍ର ସ୍ୱରରେ ଜବାବ ଦେଲେ—"ମୁଁ ପଧାନ ନୁହେଁ ।"

—"ତେବେ ? ଆପଣଙ୍କ ନାଁ କ'ଣ ? କ'ଣ କରନ୍ତି ?" ଓକିଲ ଜେର୍ କଲାଭଳି ଆପାତତଃ ଆକ୍ରମଣାତ୍ମକ ସ୍ୱରରେ ବ୍ଲକ୍ ଅଫିସ୍ର ସର୍ବେସର୍ବା ପଚାରୁଥିଲେ ।

—"ମୋ ନାଁ ଘନଶ୍ୟାମ । ଚାଷବାସ କରେ ।" ଉତ୍ତର ଦେଲେ ଦାଦା । ବି.ଡ଼ି.ଓ.ଙ୍କର ଏଭଳି ତାଚ୍ଛଲ୍ୟ ବ୍ୟବହାର ସହ୍ୟ କରି ନେଉଥିଲେ ଦାଦା ।

ସବୁତ ପିଇସାରି ବି.ଡ଼ି.ଓ. ଭାଷଣ ଦେବା ଢଙ୍ଗରେ ଘୋଷଣା କଲେ—"ତୁମ ଗାଁରେ ପ୍ରୌଢ଼ଶିକ୍ଷା କେନ୍ଦ୍ର ଖୋଲିବା ପାଇଁ ସରକାର ସ୍ଥିର କରିଚନ୍ତି । ଏଥିପାଇଁ ଦୁଇଟା ଲଣ୍ଠନ— ।" ସହସା ସେ ଚୁପ୍ ହୋଇଗଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ, କଥାଟା ବୋଧହୁଏ ବୁଝିପାରୁ ନାହାନ୍ତି କେହି । ଚ୍ୟାଲେଞ୍ଜ କଲା ଭଙ୍ଗୀରେ ପଚାରିଲେ— "ପ୍ରୌଢ଼ଶିକ୍ଷା କ'ଣ ତାହା ବୁଝିଚ ?" ଉତ୍ତର ଆଶାରେ ସେ ଚାହିଁଲେ ଚାରିଆଡ଼କୁ ।

ଗାଁ ଲୋକେ ଚୁପ୍ । ମୂଢ଼ ବନିଗଲେ ଏଇ ପ୍ରଶ୍ନର ଆହ୍ୱାନରେ । ବି.ଡ଼ି.ଓ. ବୁଝାଇ ଦେଲେ—'ତୁମ ଗାଁରେ ଅକ୍ଷର ବିବର୍ଜିତ ଯେତେ ଲୋକ ଅଛନ୍ତି, ସେମାନେ ସମସ୍ତେ ପାଠ ପଢ଼ିବେ, କି ପୁରୁଷ, କି ସ୍ତ୍ରୀ । ପାଠ ପଢ଼ିବା ଦ୍ୱାରା ସେମାନଙ୍କଠାରେ ବୈଜ୍ଞାନିକ ମନୋଭାବ ଜାଗ୍ରତ ହେବ । ସେମାନେ ନିଜର, ନିଜ ପିଲାମାନଙ୍କର, ଗୋରୁଗାଈଙ୍କର ଯତ୍ନ ନେବେ ଠିକ୍ ଭାବରେ । ଘରଦ୍ୱାର ରାସ୍ତାଘାଟ ସଫା ସୁତୁରା ରହିଲେ କାହୁ-କୁଣ୍ଡିଆ ମଧ୍ୟ ହେବ ନାହିଁ କାହାରିକୁ । ତା' ଛଡ଼ା ଅନ୍ଧବିଶ୍ୱାସ । ଘରେ କାହାରିକୁ ଜ୍ୱର ହେଲା, ତା ମୂରବି ଧାଇଁଲା ଗୁଣିଆଁ ପାଖକୁ । ସେ ଝଡ଼ାଫୁଙ୍କା କରିଦେଲେ ଜ୍ୱର ଛାଡ଼ିଯିବ । ହେଲା ବସନ୍ତ କି ହଇଜା, ଠାକୁରାଣୀ ପାଖରେ କୁକୁଡ଼ା, ବୋଦା ବଳି ଦେଇଦେଲେ ରୋଗ ଛାଡ଼ିଯିବ ଆପଣା ଛାଏଁ । ଏ ଅନ୍ଧବିଶ୍ୱାସ ଦୂର କର । କାହାକୁ ଛୁଇଁ ଦେଲେ

ଜାତି ଗୁଲିଯିବ । ଜାତି ଗୋଟେ କ'ଣ ? ଆଁ ? ସମସ୍ତେ ସମାନ ଏ ସ୍ୱାଧୀନ ଦେଶରେ । ପ୍ରଚୁର ମାଛ-ମାଂସ, ଅଣ୍ଡା ଖାଅ । କ୍ଷୀର ଆଉ ଟନିକ୍ ପିଅ । ସୁସ୍ଥ-ସବଳ ରହିଲେ ତୁମର ଓ ଦେଶର ମଙ୍ଗଳ ହେବ । ଆଉ ଗୋଟେ କଥା । ତୁମେ ସବୁ ଟ୍ରାକ୍ଟର କିଣୁନା କାହିଁକି ?'

ଟିକିଏ ଚୁପ୍ ରହି ପ୍ରାୟ ଧମକେଇବା ସ୍ୱରରେ ନିଜ ପ୍ରଶ୍ନର ପୁନରାବୃତ୍ତି କଲେ—'ଟ୍ରାକ୍ଟର କାହିଁକି କିଣୁନା ? ବଳଦ ଯୋଚି ପୁରୁଣା-କାଳିଆ ମେଥଡ୍‌ରେ ଚାଷ କଲେ କ'ଣଟେ ପାଇବ ସେଥିରୁ ? ଫର୍ଟିଲାଇଜର୍ ବ୍ୟବହାର କର ସମସ୍ତେ । ରାସାୟନିକ ସାର । ସମସ୍ତେ ଏମିତି ଗୁଞ୍ଜାଗୁଞ୍ଜି ହୋଇ ମହୁଫେଣା ଭଳି ଘର କରିଚ କାହିଁକି ? ଭଲ ଘର କର । ପକ୍କା ଘର କଲେ ଆହୁରି ଭଲ । ବ୍ଲକ୍ ଅଫିସକୁ ଉନ୍ନତ ଧରଣର ବିହନ ଆସିଚି । ମକା, ବରି, ଚିନାବାଦାମ ଇତ୍ୟାଦି । ସବ୍‌ସିଡ଼ି ରେଟ୍‌ରେ ସେସବୁ କିଣି ଚାଷ କରିବ । କ'ଣ କହୁଚ ସମସ୍ତେ ?' ବି.ଡ଼ି.ଓ. ପଚାରିଲେ ।

ତାଙ୍କର ଏଇ ଭାଷଣ ସରିବାବେଳକୁ ଗାଁର ସମସ୍ତେ ଅନ୍ୟମନସ୍କ ହୋଇଯାଇଥିଲେ । କେହି କିଛି ବୁଝିପାରି ନ ଥିଲେ ତାଙ୍କ କଥାରୁ । ସେ ଅନୁମାନ କରିପାରିଲେ ବ୍ୟାପାରଟା । ରୁମାଲରେ ମୁହଁ ପୋଛି ଆଶ୍ୱସ୍ତ ହେଲେ ଯେ, ସେ ତାଙ୍କ କର୍ତ୍ତବ୍ୟ କରିଚନ୍ତି । ଲୋକେ ତାଙ୍କ କଥା ନ ମାନିଲେ କିଛି ଯାଏ ଆସେ ନାହିଁ । ସିଗ୍ରେଟ୍ ଲଗେଇ ସେ ଘୋଷଣା କଲେ—"ଆଉ ଟିକିଏ ପରେ ସିନେମା ହେବ । ସମସ୍ତେ ଦେଖିବ ।"

ସେଭଳି ଆନନ୍ଦ ମୁଖରିତ ସନ୍ଧ୍ୟା ଆମ ଗାଁ ଆଗରୁ କେବେ ଅନୁଭବ କରି ନ ଥିଲା । ମାଇକ୍ ବାଜିବା ମାତ୍ରେ ସୃଷ୍ଟି ହେଲା ନାହିଁ ନ ଥିବା ଉଦ୍ଦୀପନା । ଘରେ ରୋଷେଇ କରୁଥିବା ସ୍ତ୍ରୀ ଲୋକମାନଙ୍କର ହାତ ଅଚଞ୍ଚଳ ହୋଇପଡ଼ିଲା । ଗୁହାଳକୁ ଫେରୁଥିବା ଗାଈମାନେ ଛିନ୍ନଛତ୍ର ହୋଇଗଲେ । ଗାଁର ସବୁ କାର୍ଯ୍ୟକ୍ରମ ପୋଛି ହୋଇପଡ଼ିଲା ମାଇକ୍ ସଙ୍ଗୀତରେ ଏବଂ ଭଟ୍ ଭଟ୍ ହେଉଥିବା ଡାଇନାମୋର ଧ୍ୱନିରେ । ଚାରି ପାଞ୍ଚଟା ଇଲେକ୍‌ଟ୍ରିକ୍ ବଲ୍‌ବ ବଉଳଗଛ ମୂଳର ଅନ୍ଧକାର ଲୁହେଁ,

ତମାମ୍ ଗାଁର ଅନ୍ଧକାରକୁ ଉପହାସ କଲି ! ଦେବ ଆଗୁର୍ଣ୍ଣୀଙ୍କ ଦୋକାନରେ ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଲଣ୍ଠନ ଏବଂ ତାଙ୍କ ଯାତ୍ରା ଡାଇଲଗ୍ କଣ୍ଠ ସମସ୍ତ ପାଇଁ ବିସ୍ମୃତ ହୋଇଗଲି ଏଇ ନୂତନତାର ଝଡ଼ରେ ।

ଆଖପାଖ ଗାଁରେ ଏହା ପ୍ରଚାରିତ ହେଲି କେମିତି କେଜାଣି ? ସନ୍ଧ୍ୟା ଛ'ଟା ସୁଦ୍ଧା ପଧାନଙ୍କ ଘର ପିଣ୍ଡା ତଳୁ ବଉଳଗଛ ମୂଳଯାଏଁ ପ୍ରଶସ୍ତ ଗାଁ' ଦାଣ୍ଡ ଲୋକାରଣ୍ୟ ହୋଇ ଯାଇଥାଏ । ସାଢ଼େ ଛ'ଟାବେଳକୁ ସିନେମା ଆରମ୍ଭ ହେଲି । ଉନ୍ନତ ପ୍ରଣାଳୀରେ ଚାଷ, ବ୍ରାହ୍ମଣ ଜଣେ ବଳଦରେ ହଳ କରୁଥିବାର ଦୃଶ୍ୟ, ଅପାଠୋଇ ସ୍ତ୍ରୀ ଜଣେ ସମ୍ମୁଖୀନ ହେଉଥିବା ବିଭିନ୍ନ ସମସ୍ୟା ଇତ୍ୟାଦି ସହାନ୍ତୀପ୍ତ ସିନେମା ହେଲି ଦେଢ଼ ଘଣ୍ଟା ଯାଏ ।

ତା'ପରେ ସବୁ ସ୍ତବ୍‌ଧ ହୋଇଗଲେ । ବି.ଡ଼ି.ଓ.ଙ୍କର ଏଇ ଆଗମନର ସ୍ମୃତି ଖବରେ ବଉଳଗଛ ଠାକୁରଙ୍କ ଭଣ୍ଡାର ଘରର କାନ୍ଥ ଏବଂ ପଧାନଙ୍କ ମାଟି କାନ୍ଥ ଇତ୍ୟାଦି ଉପରେ ଝୁଲି ରହିଲି ପ୍ରଚୁର ସମ୍ବଳିତ କେତୋଟି ପୋଷ୍ଟର । ସେଗୁଡ଼ିକର ସ୍ଲୋଗାନ ଥିଲି—ପ୍ରଚଣ୍ଡ ପଥେ ପରିକଳ୍ପନା, ଜଣେ ମଧ୍ୟ ବୟସ୍କା ସ୍ତ୍ରୀ ସମ୍ଭବତଃ ତା ସ୍ୱାମୀକୁ କହୁଛି ସ୍ଲେଟ୍ ଓ ବହି ହାତରେ ଧରି—ଗୁହିଁଛ କ'ଣ ? ମୁଁ ପ୍ରୌଢ଼ଶିକ୍ଷା କେନ୍ଦ୍ରକୁ ଯାଉଛି ।

ଗୁଷ ଜମି ଓ ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ଆମ ଗାଁ ବାହାରେ ଆଉ ଏକ ଅଜଣା ଅଦେଖା ସୁନ୍ଦର ଭୟଙ୍କର ବିଶାଳ ପୃଥିବୀଟେ ରହିଛି ବୋଲି ଗାଁ ଲୋକେ ଯେ ଜାଣି ନ ଥିଲେ, ତା' ନୁହେଁ । ମାତ୍ର ଏ ପୃଥିବୀର ସଜ୍ଞା ଓ ଆକାର ସମ୍ପର୍କରେ କୌଣସି ସ୍ପଷ୍ଟ ଧାରଣା ନ ଥିଲି କାହାରି । ଗାଁ ଲୋକଙ୍କର ବନ୍ଧୁବାନ୍ଧବମାନେ ଆଖପାଖ ଗାଁରେ ହିଁ ସୀମିତ ଥିଲେ । ସେଠାକୁ ସେମାନେ ଯାଉଥିଲେ ଗୁଲି ଗୁଲି, ଶାଳ-ପିଆଶାଳ ବଣ ଏବଂ ପାହାଡ଼ ଉପର ଦେଇ ଲମ୍ବି ଯାଇଥିବା ପାଦଚଲା ରାସ୍ତାରେ । ହିଂସ୍ର ଜନ୍ତୁଙ୍କ ଭୟ ଥିବାରୁ ସନ୍ଧ୍ୟା ପୂର୍ବରୁ ନିର୍ଦ୍ଦିଷ୍ଟ ଗାଁରେ ପହଞ୍ଚିବାକୁ ପଡ଼ୁଥିଲି ।

ତା'ଛଡ଼ା, ଗାଁର ପୂର୍ବ ଦିଗରେ ବାର କିଲୋମିଟର ଦୂରରେ ଥିବା ଘଟଗାଁ ବସ୍‌ଷ୍ଟପ୍ ଥିଲା ଗାଁ ଲୋକମାନଙ୍କ ପାଇଁ ଟ୍ରେଟକୋଟର ସହର। ଡାକ୍ତରଖାନା, ବ୍ଲକ୍ ଅଫିସ୍, ଥାନା ଓ ମାଇନର ସ୍କୁଲ ଥିଲା ସେଠାରେ। ଅଥଚ ଏ ସବୁର ଆବଶ୍ୟକତା କେହି ଅନୁଭବ କରୁ ନ ଥିଲେ ! ସେମାନେ ସେଠାକୁ ଯାଉଥିଲେ ତାରିଣୀ ଠାକୁରାଣୀଙ୍କ ଦର୍ଶନ ପାଇଁ। ପ୍ରତିବର୍ଷ ବୈଶାଖ ମାସରେ ସାତଦିନ ଧରି ରାତିତମାମ ଯାତ୍ରାପାଲି ହୁଏ ଠାକୁରାଣୀ ଶାଳ ସାମନାରେ ଥିବା ପ୍ରକାଣ୍ଡ ପେଣ୍ଡାଲ୍‌ରେ। ଏକା-ସାଙ୍ଗରେ ଆଠ-ଦଶଟା ଡେ-ଲାଇଟ୍ ଜଳୁଥିବାର ଦେଖାଯାଏ ସେଇଠି। ଗାଁ ଲୋକେ ବହୁସଂଖ୍ୟାରେ ସେଠାକୁ ଯାଆନ୍ତି ପାଲି ପରିବେଷଣକୁ ଏକ ମନୋମୁଗ୍ଧକର ମନୋରଞ୍ଜନ ବୋଲି ମନେ କରି।

ଗାଁର ଉତ୍ତର-ପଶ୍ଚିମ ଦିଗରେ ବାର କିଲୋମିଟର ଦୂର ଡେଙ୍କିକୋଟ୍ ବୋଲି ଅନ୍ୟ ଏକ ବସ୍‌ଷ୍ଟପ୍‌ରେ ଶନିବାର ଦିନ ବଡ଼ ଧରଣର ହାଟ ହୁଏ। ଦକ୍ଷିଣ-ପଶ୍ଚିମ ଦିଗରେ ସେତିକି ଦୂରତାରେ ଥିବା ହରିଚନ୍ଦନପୁର ଗାଁ ସହିତ ଆମ ଲୋକମାନଙ୍କର ସମ୍ପର୍କ ଏତେ ଘନିଷ୍ଠ ନ ଥିଲା। ବସ୍ ରାସ୍ତା ସଂଯୋଗ କରୁ ନ ଥିଲା ଏଇ ଗାଁକୁ। ତେବେ ସେଠାରେ ଥିବା ବେଶ୍ କିଛି ସଂଖ୍ୟକ ଧନୀ ଲୋକଙ୍କର କୋଠା-ବାଡ଼ି ଥିଲା ଏବଂ ବଡ଼ ବଡ଼ ଦୋକାନ ମଧ୍ୟ ଥିଲା। ସେଠାକାର ଡାକ୍ତର-ଖାନାରେ ନିଯୁକ୍ତ ଡାକ୍ତର ଖୁବ୍ ଜଣାଶୁଣା ଥିଲେ ଏବଂ ଆମ ଗାଁର ଘନଶ୍ୟାମ ଦାଦାଙ୍କର ଭାରି ପ୍ରିୟ ଥିଲେ।

ଏଇ ତିନୋଟି ବଡ଼ ବ୍ୟବସାୟ କେନ୍ଦ୍ର ଆମ ଗାଁ ମହାଦେବପୁର ସହିତ ସଂଯୋଜିତ ହୋଇଥିଲା ମିଟ୍ରିପ୍ରମାଣ ଓ ଅବହେଳିତ ସଡ଼କ ରାସ୍ତା

ଯୋଗେ । ଯେଉଁଆଡ଼େ ଗଲେ ମଧ୍ୟ ପାଞ୍ଚ-ଛ'ଟା ପାହାଡ଼, ଝରଣା ଓ ନଈ ଅତିକ୍ରମ କରିବାକୁ ପଡ଼େ । ସେଗୁଡ଼ିକରେ ପୋଲ ନ ଥିବାରୁ ବର୍ଷାଦିନେ ଆମ ଗାଁ ସୀମିତ ରହେ ନିଜସ୍ୱ ସୀମିତ ଭୂଗୋଳ ଭିତରେ ।

କେବଳ ଘନଶ୍ୟାମ ଦାଦା କିଛିବର୍ଷ ପୂର୍ବେ ତାଙ୍କ ବାପାଙ୍କର ଅସ୍ଥି ନେଇ କାଶୀ, ତ୍ରିବେଣୀ ଓ ଗୟା ଯାଇଥିଲେ ପିଣ୍ଡ ଦେବା ଓ ଶ୍ରାଦ୍ଧ କରିବା ସକାଶେ । ପନ୍ଦରଦିନ ପରେ ଅଦ୍ଭୁତ ଅବସ୍ଥାରେ ଗାଁକୁ ଫେରିଆସି ଲୋକଙ୍କ ଦୃଷ୍ଟିରେ ହୋଇ ପଡ଼ିଥିଲେ ଜଣେ ଅତୁଳନୀୟ ମଣିଷ । ବନ୍ଧୁକ କିଣିବା ପାଇଁ ଦୁଇଥର ଯାଇଥିଲେ ମହାନଗରୀକୁ । ତା'ଛଡ଼ା ଠାକୁରଙ୍କ କାମରେ ବର୍ଷରେ ଅନେକବାର ଯାଆନ୍ତି ଜିଲ୍ଲାର ସଦର ମହକୁମା କେଉଁଝରଗଡ଼କୁ । ଗାଁର ପଧାନ ମଧ୍ୟ ଖଜଣା ଦାଖଲ କରିବା ପାଇଁ ସେଠାକୁ ଯାଆନ୍ତି ।

ଏ ଦୁଇଜଣ ଲୋକଙ୍କ ବ୍ୟତୀତ ଅନ୍ୟ ଯେଉଁ ବ୍ୟକ୍ତିଟି ବାହାର ପୃଥିବୀକୁ ଦେଖି ରୋମାଞ୍ଚକର ଅନୁଭୂତି ନେଇ ଫେରି ଆସିଥିଲେ, ସେ ହେଉଛନ୍ତି ଦେବ ଆଗୁର୍ଯ୍ୟ । ତାଙ୍କ ମୁଡ଼୍ ଭଲ ଥିଲେ ସେ ସମସ୍ତ ନାଟକୀୟତାର ସହିତ ବର୍ଣ୍ଣନା କରନ୍ତି ଏଇ ଅନୁଭୂତିକୁ । ଏକାଧିକବାର ଏସବୁ ଶୁଣିବା ସତ୍ତ୍ୱେ କେହି ବିରକ୍ତ କିମ୍ବା ଅନ୍ୟମନସ୍କ ହୁଅନ୍ତି ନାହିଁ ।

ଗାଁ ଲୋକଙ୍କର ଦୃଷ୍ଟିଭଙ୍ଗୀ ଏଇଭଳି ସଙ୍କୁଚିତ ହୋଇ ରହିଥିଲା ଆପାତତଃ ବାର କିଲୋମିଟରର ବ୍ୟାସାର୍ଦ୍ଧ ବିଶିଷ୍ଟ ଅଞ୍ଚଳ ଭିତରେ । ସେମାନେ ଅଭାବଗ୍ରସ୍ତ ଥିଲେ ମଧ୍ୟ ସନ୍ତୁଷ୍ଟ ଥିଲେ ଏଇ ଇଲାକା ଭିତରେ । ଗାଁ'ର ପରିସର ବାହାରେ ଥିବା କୌଣସି ଜିନିଷ ପ୍ରତି ସେମାନଙ୍କର ଆସକ୍ତି ନ ଥିଲା । ସେମାନଙ୍କର ଧାରଣା ଥିଲା ଯେ, ଗାଁ'ର ମାଟି ସନ୍ଧିରୁ ଛତୁ ଉଠିବା, ଗଛ ସୃଷ୍ଟି ହେବା, ସାପ ବାହାରିବା ଭଳି ଗାଁ' ମାଟି ଭିତରୁ ହିଁ ଜୀବନଯାତ୍ରାର ପ୍ରଣାଳୀ ଓ ପରମ୍ପରା ଉଦ୍ଭବ ହୁଏ । ଗାଁ ଭିତରେ ବଞ୍ଚି ରହିବା ହିଁ ସେମାନଙ୍କର ଜୀବନ, ତା' ଭିତରର ପ୍ରାପ୍ତି ହିଁ ସେମାନଙ୍କର ଜିଜ୍ଞାସା, ତା' ଭିତରର ଜୟଜୟ ଓ ହାହାକାର ହିଁ ସେମାନଙ୍କର ଭାଗ୍ୟ, ତା' ଭିତରର ହସ-କାନ୍ଦ ଓ ଜନ୍ମ-ମୃତ୍ୟୁ ହିଁ

ସେମାନଙ୍କର ଜୀବନ-ଚକ୍ର । ସେମାନେ ସଚେତନ ହୁଅନ୍ତି ନାହିଁ ଗୋଟିଏ ସୂର୍ଯ୍ୟାସ୍ତର ତାତ୍ପର୍ଯ୍ୟ ସମ୍ପର୍କରେ । ସମୟର ଗତି ପ୍ରତି ସାବଧାନ ହୋଇ ନିଜକୁ ସଜାଡ଼ିବାର ଚେଷ୍ଟା କେବେ ଦେଖା ନ ଥିଲା ତାଙ୍କଠାରେ । ଜୀବନ ଆପଣାଛାଏଁ ନିଜସ୍ୱ ପରିପାଟି ଓ ବିନ୍ୟାସ ଗ୍ରହଣ କରେ ଗଛଟିଏ ଭଳି, ମାଟି ଉପରେ ନିଜର ଆକାର ନେଇ ମୁଣ୍ଡ ଟେକୁଥିବା ଉଇହୁଙ୍କା ଭଳି ।

ଏଇଥିପାଇଁ ଆମ ଗାଁକୁ ବି.ଡ଼ି.ଓ.ଙ୍କର ପ୍ରଥମ ଆଗମନର ଗୁରୁତ୍ୱ ଉପଲବ୍ଧି କରି ନ ଥିଲେ କେହି । କେହି ଆଦୌ ଭାବି ନ ଥିଲେ ଯେ, ଗାଁ ମାଟିରୁ ସମ୍ଭୂତ ପରମ୍ପରା ଓ ଜୀବନଯାତ୍ରାର ରୂପରେଖକୁ ପରିବର୍ତ୍ତନ କରିବା ସକାଶେ ଏକ ଯୋଜନାବଦ୍ଧ ଉଦ୍ୟମ ଆରମ୍ଭ ହୋଇ ଯାଇଛି । ଏଇ ଉଦ୍ୟମର ପ୍ରାରମ୍ଭିକ ପ୍ରତୀକ ଭାବେ ବି.ଡ଼ି.ଓ. ଆସିଥିଲେ ଆମ ଗାଁ'କୁ । ରଜ କମ୍ଭା ମକରଯାତ୍ରା ଆସିବା ମାତ୍ରେ, ଦେବ ଆଗ୍ରହ୍ୟ ଯାତ୍ରା ଡାଇଲଗ୍ ଉଚ୍ଚାରଣ କରିବା ମାତ୍ରେ, ବାହାଘର ବାଜା ବାଜିବା ମାତ୍ରେ ସମସ୍ତଙ୍କର ଧାରଣା ହେଉଥିଲା ଯେ, ଏସବୁ ପ୍ରକାଶିତ ହେଉଛି ଗାଁର ଚେତନାରୁ, ଗାଁର ଜୀବନଧାରା ଓ ନିର୍ଯ୍ୟାସରୁ । କିନ୍ତୁ ଏଇ ଚେତନା ଓ ଧାରାର ପରିସର ବୃଦ୍ଧି କରିବା ପାଇଁ ଅନ୍ୟ କେଉଁ ସ୍ଥାନରେ ଯୋଜନାର କାଗଜପତ୍ର ପ୍ରସ୍ତୁତ ହୋଇ ସାରିଲାଣି ବୋଲି ଗାଁ ଲୋକେ ଜାଣନ୍ତେ କିପରି ? ସେମାନଙ୍କୁ କହିଲେ ମଧ୍ୟ ସେମାନେ ବୁଝନ୍ତେ କିପରି ? ଆମ ଗାଁ ଗୋଟାଏ ବୃହତ୍ତର ସାମଗ୍ରିକତାର ଅଂଶବିଶେଷ ଏବଂ ଏଇ ସାମଗ୍ରିକତା ଯୋଜନାର ପ୍ରସୂତି-ବେଦନା ଅନୁଭବ କରିବା ଆରମ୍ଭ କଲାଣି ବୋଲି କେହି ସଚେତନ ନ ଥିଲେ । ସେହି ବୃହତ୍ତର ପ୍ରସୂତି-ବେଦନାର ତରଙ୍ଗ ଆମ ଗାଁ ପର୍ଯ୍ୟନ୍ତ ବ୍ୟାପି ଆସିବାର ପ୍ରମାଣ ଥିଲା ବି.ଡ଼ି.ଓ.ଙ୍କର ଆଗମନ । ସେ'ଦିନ ସନ୍ଧ୍ୟାରେ ପ୍ରଦର୍ଶିତ ହୋଇଥିବା ସିନେମା ଥିଲା ସେଇ ତରଙ୍ଗର ସ୍ପଷ୍ଟ ଇସ୍ତାହାର । ଗାଁ ଚାରିପଟେ ରହିଥିବା ଘଞ୍ଚ ଜଙ୍ଗଲ ଏବଂ ବର୍ଷାଦିନେ ଅତଡ଼ା ଖାଉଥିବା ଓ ଗାଁକୁ ପରିଚିତ ଅଥଚ ସୀମିତ ଅଞ୍ଚଳରୁ ବିଚ୍ଛିନ୍ନ କରି ରଖୁଥିବା ଝରଣା ଓ ନଈର ପ୍ରତିବନ୍ଧକକୁ ଅମାନ୍ୟ କରି ଗୋଟାଏ ନୂଆ ପବନ ବହିବା ଆରମ୍ଭ କରିଥିଲା । କେହି ଅନୁଭବ କରି ନ ଥିଲେ ଏକଥା; କାରଣ

ଗାଁ’ ଲୋକଙ୍କ ପାଇଁ ପବନର ଅର୍ଥ ଆମ୍ବବଉଳ ବାସ୍ନାମଖା ପବନ, ନାମହୀନ ଜଙ୍ଗଲି ଫୁଲ ନିଜର ବିଭବ ଢାଳି ଦେଉଥିବା ପବନ । ଆମ ଗାଁ’ ଅଜାଣତରେ କକ୍ଷଚ୍ୟୁତ ହେବା ଆରମ୍ଭ କରୁଥିଲା । ପରିବର୍ତ୍ତନର ଅନିବାର୍ଯ୍ୟ ଓ ଶକ୍ତିଶାଳୀ ହାତ ଲମ୍ବି ଆସୁଥିଲା ଗାଁର ଆତ୍ମାକୁ କାବୁ କରିବା ପାଇଁ ।

—“କିରେ ପିଲେ, କୁଆଡ଼େ ସବୁ ଯାଉଚ ?” ଅପରାହ୍ଣ ପ୍ରାୟ ଚାରିଟାବେଳେ ଦୋକାନରେ ତାଲା ପକାଉଥିଲେ ଦେବ ଆଚାର୍ଯ୍ୟ । ଦଶ ବାର ଜଣ ପିଲା ଗାଁ ଦାଣ୍ଡରେ ଯାଉଥିବାର ଦେଖି ସେ ଏଇ ପ୍ରଶ୍ନ ପଚାରିଲେ ସେମାନଙ୍କୁ ।

ନାଟ ସ୍ୱଭାବ ହେବ ବିଶ୍ୱନାଥ ବୋଲି ଗୋଟିଏ ଟୋକା ଟିକିଏ ଇତସ୍ତତଃ ହୋଇ ଉତ୍ତର ଦେଲା—“ଆମେ ? ଆମେ ବୁଲି ଯାଉଚୁ । ତୁମେ କୁଆଡ଼େ ବାହାରିଲ ?”

ପିଲାମାନଙ୍କ ଗହଣରେ ଥିଲେ ରାଧାକାନ୍ତ ଓ ରଙ୍କିଆ । ବଦମାସୀ ଓ ଦୁଷ୍ଟାମୀ କରିବାରେ ସେ ଦୁହେଁ ଥିଲେ ଧୂରନ୍ଧର ଏବଂ ଅନ୍ୟ ପିଲାମାନଙ୍କର ନେତା । ଦେବ ଆଚାର୍ଯ୍ୟ ଜମା ବିଶ୍ୱାସ କଲେ ନାହିଁ ଯେ, ଏମାନେ କେବଳ ବୁଲିବା ପାଇଁ ବାହାରିଚନ୍ତି ।

ସେ’ଦିନ ପଶାଖେଳ ବନ୍ଦ ଥିଲା । ପାଖେଇ ଆସୁଥିଲା ରଜ । ଦୋକାନ ଆପାତତଃ ଫାଙ୍କା ହୋଇ ଯାଇଥିଲା । ସଉଦା ଆଣିବା ପାଇଁ ହେବ । ଅଥଚ ଶହ ଶହ ଟଙ୍କା ବାକି ପଡ଼ିଥିଲା ଲୋକମାନଙ୍କ ଉପରେ । ସକାଳୁ ଅନନ୍ତ ଟଙ୍କା ଆଦାୟ କରିବା ପାଇଁ ବାହାରି ଯାଇଚି । ଚାରି-ପାଞ୍ଚଟା ଗାଁ’ ବୁଲିବ । କେଉଁ ଲୋକ ଉପରେ କେତେ ଟଙ୍କା ଅଛି, ତାହାର ତାଲିକା ଦିଆଯାଇଚି ତାକୁ । ଅନନ୍ତର ଦୁଇ ତଳପାଦ ମାଛ-ଆଖିଆ ଯୋଗୁ ସେ ଚାଲିପାରୁ ନାହିଁ ଭଲ କରି । ସେଥିରେ ପୁଣି ଗୋଇଠି ଦୁଇଟାଯାକ ଫଟା । ବିଚରାକୁ କଷ୍ଟ ହେଉଚି, କିନ୍ତୁ ଟଙ୍କା ଆଦାୟ ନ କଲେ ଦୋକାନ ଚାଲିବ କିପରି ! ଯେଉଁ ଚାରି-ପାଞ୍ଚଟା ଦୋକାନରୁ ସେ ସଉଦା ଆଣନ୍ତି, ସେମାନଙ୍କର ମଧ୍ୟ ତାଙ୍କ ଉପରେ

ଅନେକ ଟଙ୍କା ବାକି ଅଛି । ସେ ଯାଉଚନ୍ତି ପାଖ ଗାଁକୁ । ଟଙ୍କା ହାତକୁ ଆସିଲେ ବାକି ପରିଶୋଧ ହେବ ଓ ସଉଦା ଆସିବ

ବନ୍ଦ କରିଥିବା ଦୋକାନ ପୁଣି ଖୋଲି ହେଲା । ଦେବ ଆଚାର୍ଯ୍ୟ କହିଲେ—"ମୁଁ ଯାଉଚି ଗୋଟେ ଗାଁକୁ । ପିଲେ ଆସ, ବଢ଼ିଆ ଜିନିଷ ନେବ ଯିଏ ।"

ପିଲାମାନେ ଉଠିଗଲେ ବାରନ୍ଦା ଉପରକୁ ଏବଂ ନିଶ୍ଚିତ ହେଲେ ଯେ, ବିସ୍କୁଟ କିମ୍ବା ଲଜେନ୍‌ସ ଖାଇବାକୁ ମିଳିବ । ଦେବ ଆଚାର୍ଯ୍ୟ କାଚ ଜାର ଉଠାଇ ଆଣନ୍ତି ଏବଂ ପିଲାମାନଙ୍କର ପ୍ରସାରିତ ହାତକୁ ବଢ଼େଇ ଦିଅନ୍ତି ଏସବୁ ଜିନିଷ । ସେତେବେଳେ ତାଙ୍କ ମୁହଁ ପ୍ରସନ୍ନତା ଓ ପରିପୂର୍ଣ୍ଣତାରେ ଅପୂର୍ବ ଦେଖାଯାଏ, ବହୁବର୍ଷର ବୈବାହିକ ଜୀବନ ପରେ ସ୍ତ୍ରୀଲୋକ ଜଣେ ମା' ହୋଇ ପିଲାକୁ ସ୍ତନ ଦେଉଥିବାର ଦୃଶ୍ୟ ଭଳି ।

ବାରନ୍ଦାର ଗୋଟିଏ କୋଣରେ ରହିଥିଲା ଆଚାର୍ଯ୍ୟଙ୍କର ଚିର ସହଚର ଗୁପ୍ତି ବାଡ଼ିଟି । ପ୍ରାୟ ଅଢ଼େଇ ଫୁଟ ଲମ୍ବର ସରଳ ଓ ନିଷ୍କପଟ ଦେଖାଯାଉଥିବା ଏଇଟା ବାସ୍ତବିକ ଗୋଟିଏ ମାମୁଲି ବାଡ଼ି ନ ଥିଲା । ଏହାର ମୁଣ୍ଡପାଖ ଟିକିଏ ମୋଡ଼ି ଟାଣି ଆଣିଲେ ବାହାରିଆସେ ଦୁଇଫୁଟ୍ ଲମ୍ବର ତୀକ୍ଷ୍ଣ ଓ ଚକ୍‌ଚକ୍ ଛୁରୀଟାଏ । ଏହାକୁ ହାତରେ ଧରି ଦୁଃସାହସୀ ଦେବ ଆଚାର୍ଯ୍ୟ ବଣ ରାସ୍ତାରେ ରାତି ଦଶଟା-ଏଗାରଟା ବେଳେ ଗାଁକୁ ଫେରି ଆସନ୍ତି ନିର୍ବିଘ୍ନରେ । ଅନେକବାର ଭାଲୁ ହାବୁଡ଼ରେ ପଡ଼ି ଅକ୍ଷତ ଅବସ୍ଥାରେ ନିଜକୁ ରକ୍ଷା କରିଥିବାର ଲୋମହର୍ଷଣକାରୀ ଅଭିଜ୍ଞତା ସେ କହନ୍ତି ।

ଗୁପ୍ତି ବାଡ଼ି ଭିତରୁ ଛୁରୀ ବାହାର କରି ଯାତ୍ରାର ନାୟକ ଖଣ୍ଡା ଧରିବା ଭଳି ବିଶ୍ୱନାଥ ଧରିଲା ଏବଂ ଦେବ ଆଚାର୍ଯ୍ୟଙ୍କୁ ଆହ୍ୱାନ କଲା—"ଧର ଅସ୍ତ୍ର, କର ରଣ ।"

ସବୁଥର ଭଳି ଦେବ ଆଚାର୍ଯ୍ୟ ଆମୋଦିତ ହେଲେ ଏବଂ ନିଜକୁ ସମର୍ପଣ କରିବା ଭଙ୍ଗୀରେ କହିଲେ ଅନୁନୟ ବିନୟ ହୋଇ—"ଅଧମର

ଆସ୍ପର୍ଦ୍ଧା କ୍ଷମା କରନ୍ତୁ, ମହାରାଜ ! ଅନ୍ଧ ହୋଇ ଯାଇଥିଲି ରାଜ୍ୟ ଜୟ ଲାଳସାରେ । ଉଦ୍ ଭ୍ରାନ୍ତ ହୋଇ ଯାଇଥିଲି ରାଜକୁମାରୀଙ୍କୁ ପାଇବାର ସ୍ୱପ୍ନରେ । ଆଜି ଦେଖୁଛି କେତେ ତୁଚ୍ଛ, କେତେ ଅକର୍ମଣ୍ୟ ମୁଁ ନିଜ ଲାଳସା ଓ ସ୍ୱପ୍ନ ତୁଳନାରେ । ମୋ ଲାଳସା, ମୋ ସ୍ୱପ୍ନ କରେ ମୋତେ ହବା ନଶି ବାତୁଳ ପରାସ୍ତେ । ମୋ ହାତ ପହଞ୍ଚେ ନାହିଁ ମୋ ଲାଳସା ପର୍ଯ୍ୟନ୍ତ, ମୋ କ୍ଷମତା ପଙ୍ଗୁ ହୁଏ ସ୍ୱପ୍ନର କୁହୁକ ପାଖରେ । ମୁଁ ଖାଲି ଛଟପଟ ହୁଏ, ଛଟପଟ ହେଉଥାଏ ମୋ ଜୀବନ ବ୍ୟାପୀ ।"

ଏତକ ନାଟକୀୟ ଭଙ୍ଗୀରେ କହିସାରିବା ପରେ ଦେବ ଆଗ୍ରୁର୍ଯ୍ୟ ସ୍ୱାଭାବିକ ହେଲେ ଏବଂ କହିଲେ—"ବଦମାସ୍, ନାଲ ଟୋକା ! ମୋ ପାଖରେ ବାଳଙ୍ଗି ବାହାର କରୁଚୁ ?" କହିବାମାତ୍ରେ ସେ ବିଶ୍ୱନାଥର କାଖତଳ ଓ ଅଣ୍ଟାରେ ଆଙ୍ଗୁଳି ପହଁରାଇ କୁତୁକୁତୁ କରିବା ଆରମ୍ଭ କଲେ । ବିଶ୍ୱନାଥ ହସି ହସି ଅସମ୍ଭାଳ ହେଲା ଏବଂ ବାରନ୍ଦା ଉପରେ ଗଡ଼ି ବୁଲିଲା ବେଦମ୍ ହୋଇ । ତା' ନାଲି ମୁହଁ ଝାଳେଇଗଲା ଓ ଆଖିରୁ ଲୁହ ଝରି ଆସିଲା । ଯଥେଷ୍ଟ ହୋଇଗଲା ବୋଲି ଭାବି ଆଗ୍ରୁର୍ଯ୍ୟ ଠିଆ ହେଲେ ଓ କହିଲେ—"ଯା, ଏଥର ।"

ବାରନ୍ଦା ତଳକୁ ଓହ୍ଲାଇ ଟିକିଏ ନିରାପଦ ଦୂରତାକୁ ଆସିବା-ମାତ୍ରେ ବିଶ୍ୱନାଥ କହିଲା—"ଦେବ ଅଜା, ଫେବ ଅଜା ।"

ହାଫ୍‌ସ୍ଲିଭ୍ ଥିବା ପଞ୍ଜାବ ଭଳି ଶ୍ଳେଟ କମିଜ୍ ସଜାଡ଼ି ନେଲେ ଦେବ ଆଗ୍ରୁର୍ଯ୍ୟ । ଦୋକାନରେ ତାଲା ପକାଇବା ବେଳେ ପିଲାମାନଙ୍କୁ ଉଦ୍ଦେଶ୍ୟ କରି ଚେତାବନୀ ଦେଲେ—"ଖବରଦାର୍ ପିଲେ, ଚଗଲା ହେବ ନାହିଁ । ଗଛ ଚଢ଼ିବ ନାହିଁ କି ପାହାଡ଼ ଆଡ଼େ ଯିବ ନାହିଁ । ଗୋଟେ ଅହିରାଜ ସାପ ଦୁଇଟା ଛେଳି ଗିଳି ସାରିଲାଣି ।"

ପିଲାମାନେ ଆଦୌ ବୁଝିପାରନ୍ତି ନାହିଁ, ସେମାନଙ୍କୁ ଏତେ ସ୍ନେହ-ଆଦର କରୁଥିବା ଦେବ ଆଗ୍ରୁର୍ଯ୍ୟ ବେଳେବେଳେ କଠୋର ଏବଂ ନିର୍ମମ ହୋଇପାରନ୍ତି କିପରି ? ଗଦାଧର କାନ୍ଦୁଥିବା କମ୍ପା ଅଝଟ ହେଉଥିବା ନିତାନ୍ତ ଶ୍ଳେଟ ଛୁଆମାନଙ୍କୁ "ଚୁପ୍ କରିବା ପାଇଁ କହିବାକୁ

ପଡ଼େ—"ହେଇ, ହେଇ, ଦେଖିଲୁ ସିଆଡ଼େ, କଏ ଆସୁଚି ? ଦୋକାଣି ଆସୁଚି, ଏତେବଡ଼ ଛୁରୀଟେ ଧରି । ଚୂପ୍, ଏକାଥରେ ଚୂପ୍ ।" ତା' ପରେ କିଞ୍ଚିତ ଉଚ୍ଚସ୍ୱରରେ ଅନୁରୋଧ କଲାଭଳି—"ନାହିଁ, ନାହିଁ, ବାବୁଲା ଚୂପ୍ ହୋଇଗଲାଣି । ସେ କାନ୍ଦୁନାହିଁ ଆଉ ।" ପିଲାଟି ଦୁଇ ପାପୁଲିରେ ମୁହଁ ଘୋଡ଼େଇ ଜାକିଜୁକି ହୁଏ ତା' ମା' ଗୁଡିରେ କମ୍ବା ବିଛଣା ଉପରେ । ବନ୍ଦ ହୋଇଯାଏ ତା' କାନ୍ଦଣା । ଅଳ୍ପଦିନ ପୂର୍ବେ କଠଉଯୋଡ଼ ନଈକୂଳକୁ ଯାଇଥିଲେ ଏଇ ପିଲା ଦଳଟି । ଗୁରୁ ବୋଲି ଗୋଟାଏ ବଣୁଆ ମିଠା କୋଳିର ଅନେକ ଗଛ ରହିଥିଲା କୂଳରେ । ପ୍ରଚୁର କୋଳି ଖାଇବା ପରେ ବିଶ୍ୱନାଥ ବ୍ୟତୀତ ଅନ୍ୟମାନେ ବିଭିନ୍ନ ଗଛରୁ ଓହ୍ଲାଇ ସାରିଥାନ୍ତି । କେହି ଜଣେ କହି ପକାଇଲା ମଜା କରିବା ପାଇଁ—"ଆରେ, ଆରେ, ଦେବ ଦୋକାଣି ଇଆଡ଼େ ଆସୁଚି ।" ବିଶ୍ୱନାଥ ଏତେ ଅତର୍କି ହୋଇ ପଡ଼ିଥିଲା ଯେ, ଡାଳରୁ ଖସି ପଡ଼ିଥିଲା ତଳକୁ ଏବଂ କେତୋଟି ମୁହୂର୍ତ୍ତ ପାଇଁ ନିଃଶ୍ୱାସ ନେଇପାରି ନ ଥିଲା ।

ଏସବୁ ସଙ୍କଟନ୍ତରେ ଦେବ ଆଗୁର୍ଯ୍ୟଙ୍କର ହସ୍ତକ୍ଷେପକୁ ଅନ୍ତତଃ ମନେ ମନେ ପ୍ରତ୍ୟାଖ୍ୟାନ କରୁଥିଲେ ଦୁଇଟି ପିଲା—ରାଧାକାନ୍ତ ଏବଂ ଆଗୁର୍ଯ୍ୟଙ୍କର ଲେଖାପୋଖାରେ ଭଣଜା ହେବ ନମାଇଁ । ରାଧାକାନ୍ତ ଦିନେ ନିଜର ପ୍ରତିବାଦ ଓ ବିରକ୍ତି ପ୍ରକାଶ କରିଥିଲା ଏଇଭଳି—"ଖାଲି ବାପା ମୁହଁକୁ ଗୁହିଁ ମୁଁ ତାକୁ କିଛି କହିପାରୁ ନାହିଁ । ବେଳେବେଳେ ମନହୁଏ, ସେ ଶୋଇଥିବାବେଳେ ଦିଅନ୍ତି ତା' ମୁଣ୍ଡକୁ ଲଣ୍ଡା କରି । ନ ହେଲେ ତା' ପିନ୍ଧିଥିବା ଲୁଗା ନେଇଯାଇ ତାକୁ ଲଙ୍ଗଳା କରି ଦିଅନ୍ତି ।"

ଦିନେ ଏଗାରଟା-ବାରଟାବେଳେ ସେମାନେ ପହଁରୁଥିଲେ ପୋଖରୀରେ । ସେମାନଙ୍କର ଉତ୍ପାତ ପହଞ୍ଚି ଯାଇଥିଲା ଚରମ ପର୍ଯ୍ୟାୟରେ । ପାଣି ଭିତରେ ପହଁରି ପହଁରି କଏ କେତେଦୂର ଯାଇ ପାରିବ, କଏ କେତେ ଚଞ୍ଚଳ ତଳୁ ପଙ୍କ ଆଣିପାରିବ—ଏଇଭଳି ପ୍ରତିଯୋଗିତାରେ ପୋଖରୀକୂଳ ପ୍ରକମ୍ପିତ ହେଉଥିଲା । କୌଣସି ଲୋକର ଉପଦେଶ ପ୍ରତି ଖାତିର ନ ଥିଲା ସେମାନଙ୍କର । ସହସା ସେମାନଙ୍କ

ମଧ୍ୟରେ ପ୍ରଚ୍ଛରିତ ହୋଇଗଲା ଯେ, ଦେବ ଆଚାର୍ଯ୍ୟ ପୋଖରୀହୁଡ଼ା ବରଗଛ ସେପାଖରେ ଠିଆ ହୋଇ ସେମାନଙ୍କ ତାମସା ଦେଖୁଛନ୍ତି । ନିମିଷକ ମଧ୍ୟରେ ଉପ୍ସାତୁର ନୀରବତା ଖେଳିଗଲା ସେଠାରେ । ସମସ୍ତେ ପକ୍ଷାଘାତ ରୋଗୀଭଳି ପଙ୍ଗୁ ଓ ଅଥର୍ବ ହୋଇ ପଡ଼ିଲେ ।

ତୁଠ ପାଖରେ ପାଞ୍ଜଣ ବାଡ଼ିଟିଏ ଧରି ଆଦେଶ ଦେଲେ ଦେବ ଆଚାର୍ଯ୍ୟ—"ଏଠିକି ଆସ । ଠିଆ ହୁଅ ଗୋଟିଏ ଧାଡ଼ିରେ । ହାତ ପାପୁଲି ଦେଖାଅ ।"

ସମସ୍ତେ ଦୁଇ-ତିନି ପାହାର ସହିଗଲେ ଅପରାଧୀର ପ୍ରାପ୍ୟ ଭଳି । ବାର କଲେମିଟର ଦୂର ମାଇନର ସ୍କୁଲରେ ପଢ଼ୁଥିବା ନିମାଇଁ ହାତ ନ ଦେଖାଇ ଅନ୍ୟମାନଙ୍କର ଶାସ୍ତି ଦେଖିଲା । ଧାଡ଼ି ଭାଙ୍ଗି ଯିବାକୁ ବାହାରିଲା ସେ ।

—"ଏ, ଯାଉଚୁ କୁଆଡ଼େ ? ଠିଆ ହ ।" ଆଦେଶ ଦେଲେ ଦେବ ଆଚାର୍ଯ୍ୟ ।

—"ଘରକୁ ଯାଉଚି ।" ନିମାଇଁ ସ୍ୱରରେ ଅମାନ୍ୟ କରିବାର ସ୍ପଷ୍ଟତା । ସେ ନ ଅଟକି ପଳେଇ ଯାଉଥିଲା ସେଠାରୁ ।

ତା'ର ଗୋଟିଏ ହାତ ଧରି ପକାଇ ଆଚାର୍ଯ୍ୟେ ପାହାରେ କଷି ପୁଣି ପାଞ୍ଜଣବାଡ଼ି ଉଠାଇବାବେଳେ ନିମାଇଁ ତାହାକୁ ଧରି ପକାଇଲା ଏବଂ ନିର୍ଭୀକ ସ୍ୱରରେ କୈଫିୟତ ଦାବି କଲା—"ପିଟୁଚ କାହିଁକି ?"

—"କାହିଁକି ପିଟୁଚି ?" ଆଚାର୍ଯ୍ୟେ ସ୍ତମ୍ଭୀଭୂତ ହୋଇ ଯାଇ-ଥିଲେ ଟୋକାର ବେଖାତିର ଢଙ୍ଗ ଦେଖି । "ପୋଖରୀରେ କ'ଣ ହେଉଥିଲା ?"

—"ପହଁରୁଥିଲୁ ।" ନିମାଇଁ କହିଲା । "ଏଇଟା କ'ଣ ତୁମ ପୋଖରୀ ଯେ ତୁମେ ଆମକୁ ବାଡ଼େଇବ ?"

ଆଚାର୍ଯ୍ୟଙ୍କର ଅଭିଭାବକପଣିଆ ଆହତ ଓ କ୍ଳୀବ ହୋଇଗଲା ଟୋକାର ଖୋଲାଖୋଲି ଯୁଦ୍ଧ ଘୋଷଣା ପରେ । ହାତର ଉଦ୍ୟତ

ପାଞ୍ଚଣ ସହିତ ଯେମିତି ଭୂଷୁଡ଼ି ପଡ଼ିଲା ଏବଂ ଏକ ଅପମାନଜନକ ଆତ୍ମ-ସମର୍ପଣର ଭାବ ନେଇ ମଥାନତ କଲା । ପ୍ରଥମଥର ପାଇଁ ଦେବ ଆଗ୍ରହ୍ୟ ନିଜର ଅସହାୟତା ପ୍ରକାଶ କଲେ—"ଦେଉଛି ତୋ ବାପାକୁ ସବୁକଥା କହି ।"

ପଛକୁ ନ ଅନେଇ ନମାଇଁ ନିର୍ଭୀକତା ପ୍ରକାଶ କଲା—"ହଁ, ହଁ, ଯାଅ କହିଦେବ ।"

ଅନେକ ଦିନ ଧରି ପିଲାମାନଙ୍କ ମନରେ ଦେବ ଆଗ୍ରହ୍ୟଙ୍କ ପ୍ରତି ରହିଥିବା ପୁଞ୍ଜୀଭୂତ ପ୍ରତିବାଦ ଓ ବିଦ୍ବେଷର ଏହା ଥିଲା ପ୍ରଥମ ପରି-ପ୍ରକାଶ । ପରେ କିନ୍ତୁ ନମାଇଁ ସବୁକଥା ସ୍ଥିର ମନରେ ଭାବି ଆତଙ୍କିତ ହୋଇ ପଡ଼ିଥିଲା । ଆଗ୍ରହ୍ୟ ବୋଧହୁଏ ତା ବାପା ଆଗରେ ଘଟଣାଟି ପ୍ରକାଶ କରି ନ ଥିଲେ; ନ ହେଲେ ତା ବାପା ଯେଉଁଭଳି ବଦରାଗୀ ଲୋକ, ଦେଇଥାନ୍ତେ ଏକାଥରେ ତାକୁ ସାବାଡ଼ି କରି ।

ଏଇ ପିଲାମାନଙ୍କ ଉପରେ ଦେବ ଆଗ୍ରହ୍ୟଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ସମ୍ପର୍କରେ ରହିଥିଲା ଅନେକ ପ୍ରମାଣ । ଅନେକ ଦିନ ତଳେ ଏଇ ପିଲାଙ୍କ ସହିତ ତାଙ୍କର ମୁହାଁମୁହିଁ ଭେଟ ହୋଇ ଯାଇଥିଲା ନାଗୁଆଣୀ ବୋଲି ପାହାଡ଼ ତଳେ । ଏ ପାହାଡ଼ଟା ଥିଲା ଆମ ଗାଁରୁ ପ୍ରାୟ ତିନି କିଲୋମିଟର ଦୂରରେ । ଘଞ୍ଚ ଜଙ୍ଗଲ, ବିଶାଳ ମହୁଫେଣା ଓ ଅସଂଖ୍ୟ ରଙ୍ଗା କୋଳିଗଛ, ବଡ଼ ସାପ, ବାଘ ଓ ଭାଲୁ ଇତ୍ୟାଦି ଦ୍ୱାରା ପାହାଡ଼ଟା ଥିଲା ରହସ୍ୟମୟ ଓ ଭୟଙ୍କର । ଏହି ପାହାଡ଼ ଚଢ଼ିବା ଥିଲା ଗୋଟାଏ ଚ୍ୟାଲେଞ୍ଜ ପୁରୁଷପଣିଆ ପ୍ରତି ।

"କିରେ, ଏଇ ଦିପହରଟାରେ ଯାଉଛ କୁଆଡ଼େ ? ରଙ୍ଗାକୋଳି ଖାଇବାକୁ ?" ପଚାରିଲେ ଦେବ ଆଗ୍ରହ୍ୟ ।

ପିଲାମାନେ ବିରକ୍ତ ଓ ହତୋତ୍ସାହ ହୋଇ ପଡ଼ିଥିଲେ ଅବେଳ-ଟାରେ ତାଙ୍କୁ ଦେଖି । ଏଇ ଋତୁରେ ଗାଢ଼ ନାଳ ରଙ୍ଗର ଟ୍ରେଟ ଓ ମିଠା ରଙ୍ଗାକୋଳି ନାଗୁଆଣୀ ପର୍ବତରେ ମିଳେ । ତା ସହିତ ବାଜକୁସୁମ, ବଇଁଚ ଓ ଭୂରୁଡ଼ି ଫଳ । ଆମ ଗାଁ ପାହାଡ଼ରେ ଏସବୁ ଫଳଗଛ ଏତେ ପର୍ଯ୍ୟାପ୍ତ ପରିମାଣରେ ନ ଥିଲା ।

କିଛି ସମୟ ଇତସ୍ତତଃ ହୋଇ ଜଣେ କହିଲା—ନାଇଁ ଆମେ ଏମିତି ଯାଉଥିଲୁ ଦୋଳ ବନେଇବା ପାଇଁ ଗଛ ହାଣିବାକୁ ।

—"ତୁମେ ସବୁ ମାଙ୍କଡ଼ଗୁଡ଼ାକ ଦୋଳ ବନେଇବ କ'ଣ ? କାଇଁ, ତୁମେ ଟାଙ୍ଗିଆ ବି ଆଣିନ । ଚାଲ, ଚାଲ ସମସ୍ତେ ଗାଁକୁ । ବିସ୍କୁଟ ଖାଇବ ।" ଆଚାର୍ଯ୍ୟେ କହିଲେ ଏବଂ ଗାଁ ମୁହାଁ ହେଲେ ।

ଅପ୍ରକାଶିତ ପ୍ରତିବାଦ ଓ କ୍ରୋଧର ସହିତ ସେମାନେ ପଛରେ ଫେରୁଥିଲେ କୋଳ ଖାଇବାର ଅଭିଯାନ ଫସରଫାଟି ଯିବାରୁ । ହଠାତ ଗୋଟାଏ କୁକୁଡ଼ାର ଆର୍ତ୍ତନାଦ ଶୁଣି ଦେବ ଆଚାର୍ଯ୍ୟ ପଛକୁ ଅନାଇ ଦେଖିଲେ, ବିଲ ହିଡ଼ତଳେ ଅଣ୍ଡିରା କୁକୁଡ଼ାଟାଏ ଛଟପଟ ହେଉଛି ।

—"କିଏ ଢେଲା ମାରିଲା ?" ଏଥର ଦେବ ଆଚାର୍ଯ୍ୟ ରାଗି ଯାଇଥିଲେ ।

—"ଏଇ" । ସମସ୍ତେ ରଙ୍କିଆ ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କଲେ । ସେତେବେଳକୁ କୁକୁଡ଼ାଟା ଭୂତଳଶାୟୀ ହୋଇ ମୃତ୍ୟୁ ସହିତ ନୀରବ ସଂଘର୍ଷ କରୁଥିଲା ।

ରଙ୍କିଆର କାନମୋଡ଼ି ଦୁଇଟି ଚଟକଣା ଦେବା ପରେ ଆଚାର୍ଯ୍ୟେ ପ୍ରସ୍ତାବ ଦେଲେ—"କୁକୁଡ଼ାଟା ମରିଗଲାଣି । ଚୁପ୍‌ଚାପ୍ ସେଇଟାକୁ ମୋ ବସାକୁ ନେଇ ଆସ । ଫିଷ୍ଟ କରିବା । ଯଦି ଧରାପଡ଼, ତେବେ ମୋଠୁ ପଇସା ନେଇ କୁକୁଡ଼ା ମାଲିକକୁ ଦେଇଦେବ ।"

ରଜ ପୂର୍ବରୁ ଆଉ ଦୁଇଟି ଘଟଣା ଘଟିଥିଲା । ପ୍ରଥମଟି ହେଉଛି ବାଉଁଶରାଣୀର ଚମତ୍କାର, ଲୋମହର୍ଷଣକାରୀ ଖେଳ । ଏମାନେ ଆସନ୍ତି କେବେ କେମିତି । ବଉଳଗଛମୂଳ ଦାଣ୍ଡରେ ବାଜେ ଢୋଲ ଡମ୍ବରୁ । ଝିଅପିଲାଟେ ବନ୍ଧା ହୋଇଥିବା ଦଉଡ଼ି ଉପରେ ଚାଲେ, ଅନ୍ୟ ଜଣେ ଧରିଥିବା ବାଉଁଶ ଚଢ଼େ । ଗାଁ ଦାଣ୍ଡ ଭରପୂର ହୋଇଯାଏ ଦେଖଣାହାରିଙ୍କ ଦ୍ୱାରା । ଏଥିପାଇଁ ଗାଁର ସକ୍ଷମ ଲୋକମାନଙ୍କ ଘରୁ ଚାନ୍ଦା ଆଦାୟ କରାଯାଏ । ଯଦି କିଅଣ୍ଟ ପଡ଼େ, ଘନଶ୍ୟାମ ଦାଦା ଭରଣା କରନ୍ତି । କେବେ କେମିତି ମେଜିକ୍‌ବାଲା ମଧ୍ୟ ଆସନ୍ତି ମନୋରଞ୍ଜନ ପାଇଁ । କିନ୍ତୁ ନିତାନ୍ତ

ମଫସଲ ହେଲେ ବି ଗାଁରେ ଏଇଭଳି ସାମୟିକ ଓ ଅପ୍ରତ୍ୟାଶିତ ଭାବରେ ଉତ୍ସବ-ମୁଖର ଘଟଣା ଘଟେ ।

ବାଉଁଶଗଣୀ କ୍ରୀଡ଼ାନୈପୁଣ୍ୟ ଦେଖାଇବାର ଦୁଇଦିନ ପରେ ଦେବ ଆଗୃର୍ଯ୍ୟ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ ଗାଁରୁ । ଏମିତିକି ତାଙ୍କର ଘନିଷ୍ଠ ସହକାରୀ ଅନନ୍ତ ମଧ୍ୟ ଟେର୍ ପାଇ ନ ଥିଲା । ସେ ଗଲେ କୁଆଡ଼େ, କାହିଁକି ଗଲେ ଓ କେବେ ଫେରିବେ ଘଟଣାଟା ଥିଲା ରହସ୍ୟମୟ ଓ ଉତ୍କଣ୍ଠାପୂର୍ଣ୍ଣ । ଫାଙ୍କା ହୋଇଗଲା ଦୋକାନ ବାରନ୍ଦା । ଲୋକମାନଙ୍କର ଅପରାହ୍ନ ବିତିଲା ବିନା କୌଣସି କାର୍ଯ୍ୟକ୍ରମରେ । ଗ୍ରେଟରାୟଙ୍କ ପଣ୍ଡିତମାନେ ଠାକୁରଙ୍କ ଭଣ୍ଡାର ଘର ବାରନ୍ଦାରେ ବସି ବଟୁଆରୁ ପାନ ବାହାର କଲେ ଓ ଗେଞ୍ଚବେଇଲେ ବିଲ୍‌କୁଲ୍ ବେକାର ହୋଇ ଯାଇଥିବାରୁ ।

କିନ୍ତୁ ତିନିଦିନ ପରେ ସନ୍ଧ୍ୟାବେଳେ ନାହିଁ ନ ଥିବା ଦୃଶ୍ୟଟିଏ ସଂଘଟିତ ହେଲା । ଗାଁର ଅନ୍ଧକାର ଉପରେ ପହଁରି ଆସିଲା ଉଜ୍ଜ୍ୱଳ ଆଲୁଅଟିଏ । ଲିଭିଗଲା ଆଗୃର୍ଯ୍ୟଙ୍କ ଦୋକାନ ସାମନାରେ । ଗାଁ'ର ସ୍ତମ୍ଭୀଭୂତ ଲୋକମାନେ ଦେଖିଲେ ଡାଇନାମୋ ଫିଟ୍ ହୋଇଥିବା ଦେବ ଆଗୃର୍ଯ୍ୟଙ୍କର ନୂଆ ହର୍କ୍ୟୁଲେସ୍ ସାଇକେଲ । ଦୁଇ ତିନିଟା ଲଣ୍ଠନ ଆଲୁଅରେ ସମସ୍ତେ ଦେଖିଲେ ଶୂନ୍ ବଗିଚିକୁ । ଅଦ୍ଭୁତ ଯନ୍ତ୍ରଟା ଠିଆ ହୋଇଥାଏ ନୀରବ ନମ୍ରତା ନେଇ । ଆମ ଗାଁର ହୋଇଥିବାରୁ ତାହା ଖୁବ୍ ଆପଣାର ଓ ଅନ୍ତରଙ୍ଗ ଜଣାପଡ଼ିଲା । ଇତିମଧ୍ୟରେ ଦେବ ଆଗୃର୍ଯ୍ୟ କିଛି ଫୁଲ, ଚନ୍ଦନ ପେଡ଼ି, ଧୂପକାଠି ଓ ନଡ଼ିଆ ସଂଗ୍ରହ କରି ସାରିଥିଲେ । ସେ ପୂଜା କରିବା ଆଗରୁ ଗାଁ'ର ସମସ୍ତେ ଆହୁରି ଗୋଟାଏ ଅଭାବିତ, ବସ୍ମୟକର ଜିନିଷ ଦେଖିଲେ । ଗୋଟାଏ ପକେଟ୍ ୱାଚ୍ । ଗୋଲ୍, ଧଳା ଡାଏଲ୍ । ଚକ୍ ଚକ୍ ଗୋଲ୍ ରଙ୍ଗ୍‌ରେ ବନ୍ଧା ଯାଇଥିଲା ସୂତା । ୱାଚ୍‌ଟା ଥିଲା ଆଗୃର୍ଯ୍ୟଙ୍କ ପକେଟରେ । ସୂତାର ଅନ୍ୟ ପାଶ୍ୱର୍ଟି ସେଫ୍‌ଟିପିନ୍ ଦ୍ୱାରା ଗୁନ୍ଥା ହୋଇଥିଲା ତାଙ୍କ ଗ୍ରୁଡି ପକେଟରେ । ଗାଁ'ର ଏଇ ଦୁଇଟି ନୂଆ ଓ ପ୍ରଥମ ଜିନିଷକୁ ପୂଜା କରିବାବେଳେ ଅନନ୍ତ ଶଙ୍ଖ ଫୁଙ୍କିବାରେ ଲାଗିଲା । ସେତକ ସରିବା ପରେ ଏକ ସନ୍ତୁଷ୍ଟ ଓ ବିଜୟୀ

ଦେବ ଆଚାର୍ଯ୍ୟ କଥାଟି ପ୍ରକାଶ କଲେ—"କାହାକୁ କିଛି ନ କହି ପଠେଇଥିଲି । ଏ ଜିନିଷ ଆଣି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେବା ମୋର ମତଲବ ଥିଲା ।"

ପ୍ରାୟ ଘଣ୍ଟାକ ପରେ ଲୋକମାନଙ୍କୁ ସେ ସ୍ଥାନ ଛାଡ଼ିବାକୁ ପଡ଼ିଲା; କାରଣ ଗାଁ'ର ସ୍ତ୍ରୀଲୋକମାନେ ଜିନିଷ ଦୁଇଟି ଦେଖିବା ପାଇଁ ଆସିଲେ । ସମସ୍ତେ ଅନୁଭବ କଲେ ଗାଁ'ର ମର୍ଯ୍ୟାଦା ଓ ଗୌରବ ବଢ଼ି ଯାଇଛି ଏ ଦୁଇଟି ଆଧୁନିକ ଯନ୍ତ୍ରଦ୍ୱାରା । ସମୟ ଓ ଦୂରତା ଯୁ'ପରେ ରହସ୍ୟ ହୋଇ ରହିବ ନାହିଁ । ଏହାକୁ ଅକ୍ଲେଶରେ ମାପି ହେବ ଏବଂ ଜୀବନର ଗତି ଓ ସମୟ ନିୟନ୍ତ୍ରିତ ହେବ ।

ପ୍ରାୟ ସପ୍ତାହେ ପର୍ଯ୍ୟନ୍ତ ଏ ଦୁଇଟି ଜିନିଷ ମହାଦେବଙ୍କ ଗୁରୁତ୍ୱକୁ ମଧ୍ୟ ହ୍ରାସ କରି ପକାଇଥିଲା । ଆଖପାଖ ଗାଁ'ର ଲୋକେ ଆସୁଥାନ୍ତି ଏବଂ କେତେକ ଯୋଡ଼ ହାତରେ ଭକ୍ତି ଗଦ୍‌ଗଦ୍ ମୁହଁ ନେଇ ଠିଆ ହେଉଥାନ୍ତି । ଯୁ'ପରେ ମୁଗ୍ଧ ଦୃଷ୍ଟିରେ ଚାହିଁଥାନ୍ତି ପ୍ରସନ୍ନ ହସୁଥିବା ଦେବ ଆଚାର୍ଯ୍ୟଙ୍କ ଆଡ଼େ ।

ରଜ ଥାଏ ଆଉ ଅଳ୍ପଦିନ । ବିପୁଳ ଉତ୍ସାହର ସହିତ ଚାଲିଥାଏ ପ୍ରସ୍ତୁତି । ଗାଁ'ର ପଶ୍ଚିମ ଦିଗକୁ ପ୍ରକାଣ୍ଡ ମକରଯାବା ପଡ଼ିଆ ପାଖରେ ଥିବା ବରଗଛମୂଳେ ଦୋଳି ତିଆରି ଚାଲିଥାଏ । ବରଗଛଟା ଥିଲା ଗୋଟାଏ ଚୋଟା ଭଳି ପରିବ୍ୟାପ୍ତ ଓ ଛାୟାଚ୍ଛନ୍ନ । ବର୍ଷତମାମ ସେଇଠି ଗାଈଗୋଠ ହୁଏ । ଶୀତଦିନରେ ଘନଶ୍ୟାମ ଦାଦାଙ୍କର ଶତାଧିକ ମଇଁଷି-ବାଛୁରୀ ସେ ଗଛମୂଳେ ରାତି କଟାନ୍ତି । ସବୁ ଗୋବରଗଦା ବିଲକୁ ସ୍ଥାନାନ୍ତରିତ ହୋଇଯାଏ ରଜ ହେବାର ଢେର୍ ଆଗରୁ, ଜମି ଚଷିବାବେଳେ । ନହାଣ, ବାଉଁସୀର କାମ ଚାଲିଥାଏ ଗଛମୂଳେ ଦଶ-ବାରଟା ବଡ଼ ଦୋଳି ତିଆରି ପାଇଁ । ତିନିଦିନଯାକ ପ୍ରାୟ ଚବିଶଘଣ୍ଟା ସେଇଠି ସମୟ ବିତିଯାଏ, ଦୋଳିଗୀତ ଗାୟଣରେ । ସଙ୍କର୍ଷଣ ମାଷ୍ଟରଙ୍କ ସାଇରେ ବଡ଼ ଜାମୁଗଛ ମୂଳେ ସେଇଭଳି ଦୋଳି ତିଆରି ଚାଲିଥାଏ । ଲକ୍ଷ୍ମଣ ସେଠି ବଡ଼ ବଡ଼ ଆଠ-ଦଶଟା ଖାସୀ ସଂଗ୍ରହ କରି ସାରିଥାଏ ରଜ ଉପଲକ୍ଷେ ମାରିବ ବୋଲି । ଘର-ଦ୍ୱାର ଲିପାପୋଛା ହୋଇ ସାରିଥାଏ ।

ଦିନ ଗୋଟାଏ-ଦୁଇଟା ବେଳେ ସୁଗନ୍ ଖାଁ ଫେରିବାଲା ଘୋଡ଼ାରେ ଚଢ଼ି ପହଞ୍ଚିଲା ଦୁଇଟା ବଡ଼ ଗଣ୍ଠିଲି ଧରି । ତାକୁ ଦେଖିବା ମାତ୍ରେ ସମସ୍ତଙ୍କର ଆଶଙ୍କା ଓ ଅସ୍ଥିରତାର ଅବସାନ ହେଲା । ସେ ଏବର୍ଷ ଆସିବ କି ନାହିଁ ବୋଲି ଦୁଇ-ତିନି ଥର ଆଲୋଚନା ହୋଇ ସାରିଥିଲା ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରଣ୍ଡାରେ । ଏଥିପାଇଁ ବାର କିଲୋମିଟର ଦୂରରେ ଥିବା ଢେଙ୍କିକୋଟ ହାଟରୁ କେତେଜଣ ଲୁଗା-ଜାମା କିଣି ସାରିଥିଲେ ।

ବର୍ଷରେ ଦୁଇଥର ସୁଗନ୍ ଖାଁ ଆସେ ଆମ ଗାଁକୁ । ରଜ ପୂର୍ବରୁ ଅନେକେ ବାକିରେ ଲୁଗା-ଜାମା କିଣନ୍ତି । ଧାନକଟା ପରେ, ମକରଯାତ୍ରା ପୂର୍ବରୁ ପୁଣିଥରେ ଆସି ବାକି ଟଙ୍କା ଆଦାୟ କରେ ଓ ପୁଣି ଲୁଗାପଟା ବିକ୍ରି କରେ । ବଉଳଗଛ ମୂଳଟା ଭରପୂର ହୋଇଗଲା ଲୋକଙ୍କ ଦ୍ୱାରା । ସୁଗନ୍ ଖାଁର ଅନୁରୋଧ କ୍ରମେ ବାଲ୍ଟିଏ ପାଣି ଓ ସିଲ୍‌ଭର ଥାଳି ପହଞ୍ଚିଗଲା । ସେ ପଠାଣ ହୋଇଥିବାରୁ ପାଣି ପିଇବା ପାଇଁ ଗ୍ଲାସ୍ ପାଇବାକୁ ଯୋଗ୍ୟ ନ ଥିଲା ।

ପାଣି ପିଉଥିବାବେଳେ ଗହଳି ଭିତରୁ କେହି ଜଣେ ଚିଲେଇ ଉଠିଲା—"ଖା, ଏଥର ସୁଗଣକୁ ।"

ସମସ୍ତେ ହସି ପକାଉଥିଲେ; କିନ୍ତୁ ସୁଗନ୍ ଖାଁର ଗମ୍ଭୀର ମୁହଁ ଦେଖି ନୀରବ ହୋଇଗଲେ କିଛି ଗୋଟାଏ ଅଘଟଣ ଆଶଙ୍କା କରି । ଗାରଗାରିଆ ଲୁଙ୍ଗୀ ଓ ହାଫ୍‌ସାର୍ଟ ପରିହିତ ସୁଗନ୍ ଖାଁ ବାଦ୍‌ଶାହୀ ଢାଞ୍ଚାରେ ରଖିଥିବା କଳା-ଧଳା ଦାଢ଼ୀ ଉପରେ ବୁଲାଇ ଆଣିଲା ହାତ । ଚଷମାର ଗୋଟିଏ ପାଖ ଭାଙ୍ଗି ଯାଇଥିବାରୁ ସୂତାରେ ବାନ୍ଧି ତା' କାନରେ ଗୁଡ଼ାଇ ଦେଇଥିଲା । ଚଷମା ଖୋଲି ପଚାରିଲା—"କୌନ୍ ଐସା ବୋଲା ? ମୈଁ ପୁଛ୍‌ତା ହୁଁ, ଐସା କହା କୌନ୍ ?"

ଅନେକେ ଜାଣିଥିଲେ ମଧ୍ୟ ଅପରାଧୀର ନାଁ ପ୍ରକାଶ କଲେ ନାହିଁ । ସୁଗନ୍ ଖାଁ ହସିବାରୁ ସମସ୍ତେ ହସିଲେ କ୍ଷମା ମାଗିବାର ଭଙ୍ଗୀରେ । ଫେରିବାଲା କହିଲା—"ଚଲେଆଓ ୟାହାଁ । ହମ୍ ଏ ଚିଜ୍ ଦେଙ୍ଗେ ।" ସେ ଗୋଟାଏ ନୂଆ ଗଞ୍ଜି ଟେକି ଧରିଲା ।

ଭିଡ଼ ଅତିକ୍ରମ କରି ରାଧାକାନ୍ତ ଠିଆ ହେଲା ସୁରାନ୍ ଖାଁ ଆଗରେ । ଆଶ୍ଚର୍ଯ୍ୟ, ଫେରିବାଲା ତା ହାତକୁ ବଢ଼େଇଦେଲା ନୂଆ ଗଞ୍ଜିଟି ଏବଂ ମନ୍ତବ୍ୟ ବାଢ଼ିଲା—"ଗ୍ରେଟକବି ହେ ବହୁତ୍ ବଦ୍‌ତମିଜ୍ !"

ରାତି ଏଗାରଟାରେ ପଶାଖେଳ ସରିବାପରେ ଦୋକାନ ବାରନ୍ଦାରେ ଦଉଡ଼ିଆ ଖଟ ପକେଇ ଦେବ ଆଗ୍ରୃର୍ଯ୍ୟ ଶୋଇବାକୁ ଚେଷ୍ଟା କରୁଥିଲେ । ଅନନ୍ତ ଗୋଡ଼-ହାତ ଘଷି ଦେଉଥିଲା । ତାଙ୍କ କହିବା ଅନୁସାରେ ସେ କେତେବେଳୁ ପଳେଇଲାଣି ତା ଘରକୁ । ଦେବ ଆଗ୍ରୃର୍ଯ୍ୟ ସେ ପର୍ଯ୍ୟନ୍ତ ଛଟପଟ ହେଉଥିଲେ ନିଦ ଆଶାରେ । ଟର୍ଚ୍ଚ ଟିପି ଘଡ଼ି ଦେଖିଲେ । ରାତି ଦୁଇଟା । ତମାମ୍ ଗାଁ ମୂର୍ଚ୍ଛିତ ହୋଇ ପଡ଼ିଥିଲା । ଏତେ ନୀରବ ଥିଲା ସମୁଦାୟ ପରିବେଶ ଯେ, ଗୋଟାଏ ଝାଁ...ଝାଁ...ଶବ୍ଦ ଶୁଭୁଥିଲା । ନୀରବତାର ମଧ୍ୟ ନିଜସ୍ୱ ଗୋଟାଏ ସ୍ୱର ଅଛି ।

ଏବଂ ଏଭଳି ମୁହୂର୍ତ୍ତ ହିଁ ଭୟଙ୍କର ତାଙ୍କ ପାଇଁ । ତାଙ୍କ ସତ୍ତାର କେଉଁ ଅନ୍ଧାରିଆ ସନ୍ଧି ସ୍ଥାନରୁ ଉଙ୍କିମାରି ଆସେ ଏକ ତୀବ୍ର ବ୍ୟାକୁଳଭାବ । ତାଙ୍କର ପ୍ରତ୍ୟେକ ରକ୍ତକଣିକା ଓ ଶିରାପ୍ରଶିରା ଦହଗଞ୍ଜ ହୁଏ ଏଭଳି ସମୟରେ । ତାଙ୍କୁ ସବୁ ଜଣାପଡ଼େ, ଖାଁ ଖାଁ, ଶୂନ୍ୟ । ଚାରିଆଡ଼େ ହାତ ବଢ଼େଇଲେ ବି କିଛି ଧରାପଡ଼େ ନାହିଁ । କରୁଣ ମୂର୍ଚ୍ଛନା ବହୁ ଦୂରରୁ, କେଉଁ ଏକ ଗୁମ୍ଫାରୁ ବାହାରି ଆସେ । ଗଡ଼ିଆସେ ତାଙ୍କ ପାଖକୁ ଏବଂ କାନଫଟା ଶବ୍ଦର ବିସ୍ଫୋରଣ ସୃଷ୍ଟି ହୁଏ ତାଙ୍କ ଚାରିପାଖରେ । ପୁଣି ଶୁଭେ ନିର୍ଜନତା ଭିତରେ ଉଦାସ ବଂଶୀଧ୍ୱନି । ଦ୍ୱିପ୍ରହରର ନୀରବତା ଭିତରେ ଗୋଟାଏ ନିଃସଙ୍ଗ କାଉ ରହି ରହି ରାବିଲା ଭଳି ପରିବେଶ ସୃଷ୍ଟି ହୋଇଯାଏ ତାଙ୍କ ମନ ଓ ଚେତନାରେ । ଏଇଭଳି ମୁହୂର୍ତ୍ତକୁ ଖୁବ୍ ଭୟ କରନ୍ତି ସେ । ଏହାକୁ ଏଡ଼େଇ ଦେବାପାଇଁ ସେ ଚାହାନ୍ତି ସବୁବେଳେ ସେ ଥାଆନ୍ତେ ଲୋକମାନଙ୍କ ଗହଣରେ । ସେମାନଙ୍କ କୋଳାହଳ ଭିତରେ । ଏକୁଟିଆ ହୋଇଯିବା କେଡ଼େ ଯନ୍ତ୍ରଣାଦାୟକ, ତାହା ବୋଧହୁଏ ତାଙ୍କ ବ୍ୟତୀତ ଆଉ କେହି ବୁଝି ନ ଥିଲେ ଆମ ଗାଁରେ ।

ବୟସ ଖସିଯାଉଚି ଆସ୍ତେ ଆସ୍ତେ । ନିଜ ସମ୍ପର୍କରେ, ନିଜର ସୀମିତ ସମ୍ପତ୍ତି ସମ୍ପର୍କରେ କୌଣସି ଯୋଜନା କରିପାରି ନାହାନ୍ତି ସେ ।

ସେସବୁ ଚିନ୍ତା କରିବାମାତ୍ରେ ସବୁବେଳେ ସେ ଗ୍ଲାନିପିଡ଼ିତ ହେଉଛନ୍ତି । ଗୋଟାଏ ସ୍ୱପ୍ନ ସତେ ଅବା ମିଛ କରି ଦେଉଛି ସମସ୍ତ ବାସ୍ତବତାକୁ, ଏପରିକି ତାଙ୍କ ସ୍ଥିତିକୁ । ସେ ସ୍ୱପ୍ନ ତାଙ୍କୁ ପ୍ରରୋଚନା ଦେଇ ଆସିଛି ବାରମ୍ବାର—ରହ, ଏମିତି ବ୍ୟସ୍ତ ହେଲେ ଚଳିବ ? ଦିନେ ଦେଖିବୁ, ସେ ଆସି ଯାଇଛି ତୋ ପାଖକୁ । ନ ଆସି ରହି ପାରିବ ନାହିଁ ସେ ସେଇ ସମ୍ଭାବନାହୀନ ଘରେ । ନ ହେଲେ ତୁ ଯିବୁ ତା' ପାଖକୁ । କ'ଣ ପାଇବୁ ଏ ଗାଁର ଜଙ୍ଗଲ, ଲଙ୍ଗଳା ଲୋକଙ୍କୁ ନେଇ ? ତୋ ତାସ୍-ପଶା ଖେଳ, ତୋ ଦୋକାନର ଲଣ୍ଠନ, ତୋର ଅନୁର୍ବର ଗୃଷ ଜମି ତୋତେ ଦେବ କ'ଣରେ ମୁକ୍ତି ?'' ଉଠ୍, ଗୃଲ୍ । ଅନେକଦିନ ଅପେକ୍ଷା କଲୁଣି ।

ଦେବ ଆଗ୍ୟର୍ଯ୍ୟଙ୍କର ଅଥୟ ଅସ୍ଥିରତା ତାଙ୍କୁ ପାଗଳ କରିଦିଏ । ଖଟ ଉପରୁ ଓହ୍ଲାଇ ସେ ଇତସ୍ତତଃ ହୁଅନ୍ତି । ତାଙ୍କର ଦେହର ପରିସୀମାକୁ ଛିନ୍ନଛିନ୍ନ କରିଦେବା ପାଇଁ ହୃଷ୍ଟପୁଷ୍ଟ ଆବେଗର ମୁକାବିଲା କରିପାରନ୍ତି ନାହିଁ ସେ । ଅସହାୟ ହୋଇ କହନ୍ତି—''କାହିଁକି ମୁଁ ଏମିତି ହେଲି ? କିଏ ଏତେ ଲମ୍ବା ସ୍ୱପ୍ନ ଖଞ୍ଜି ଦେଲା ଏଇ ମୋର ସୀମିତ ଜୀବନରେ ? ଏ ଦେହ ଆଉ ମନର ବିପ୍ଳବକୁ ଶାନ୍ତ କରିବ କିପରି ?''

ଗୃରିବର୍ଷ ବିଦେଶରେ କଟାଇବା ପରେ, ଏଇ ଦୁଇବର୍ଷ ହେଲା ସେ ଫେରି ଆସିଛନ୍ତି ନିଜ ଗାଁକୁ । ଗାଁରେ ପହଞ୍ଚି ସେ ଦେଖିଥିଲେ, ଘରଡ଼ିହରେ ଘର ନାହିଁ । ଯେଉଁ ଘରେ ଜନ୍ମ ହୋଇ ସେ କୋଡ଼ିଏଟି ଅନ୍ୟମନସ୍କ ଦିଗହୀନ ଲକ୍ଷ୍ୟହୀନ ବର୍ଷ ବିତେଇଥିଲେ, ସେଠାରେ କେବଳ ରହିଥିଲା ପୁରୁଣା ଘର କାନ୍ଥର ଧ୍ୱଂସାବଶେଷ, କୁଷ୍ଠରୋଗୀର କ୍ଷୟିଷ୍ଣୁ ଆଙ୍ଗୁଳି ଭଳି । ବଡ଼ଭାଇ ଅଚ୍ୟୁତାନନ୍ଦ ଏ ଘରଡ଼ିହ ଗୃଡ଼ି ଅନ୍ୟ ଜାଗାକୁ ଉଠିଯାଇଥିଲା ନିଜର ଗୁଡ଼ାଏ ପିଲାପିଲିଙ୍କୁ ନେଇ । ଦେବ ଆଗ୍ୟର୍ଯ୍ୟ ଗାଁରେ ପହଞ୍ଚିବା ପରେ ଅଚ୍ୟୁତାନନ୍ଦ ତାଙ୍କୁ ବୁଝେଇ ଦେଇଥିଲା—''ଏ ଘରଡ଼ିହର ମୋ ଅଂଶଟା ତୋତେ ଦେଉଛି । ମୁଁ ଘର କରିଥିବା ଜାଗାରେ ଥିବା ତୋ ଅଂଶ ମୋର ହେବ । ତୁ ଗାଁ ଗୃଡ଼ି ଯିବାର ବର୍ଷକ ପରେ ଯେଉଁ ଭୟାବହ ଘରପୋଡ଼ି ହୋଇଥିଲା, ତା' ପରେ ଏଠି ରହିବା ପାଇଁ ଆତ୍ମା ଡାକିଲା ନାହିଁ ।''

ଦେବ ଆଗ୍ରହର ଆଦୌ ଆପତ୍ତି କରି ନ ଥିଲେ । ଗାଁରେ ପହଞ୍ଚିବାବେଳକୁ ସେ ତନ୍ଦ୍ରାଚ୍ଛନ୍ନ ଥିଲେ, ଗୋଟାଏ ଯନ୍ତ୍ରଣାମଧୁର ନିଶା ତାଙ୍କୁ ଅକ୍ତିଆର କରି ରଖିଥିଲା । ତାଙ୍କର ମନେ ହେଉଥିଲା ଯେ, ଏ ଗାଁରେ ତାଙ୍କର ବେଶୀଦିନ ରହିବା ସମ୍ଭବ ନୁହେଁ । ସେ ପୁଣି ଧାଇଁ ବୁଲିବେ ସ୍ୱପ୍ନ ପଛରେ । ପହଞ୍ଚିବେ ଗୋଟାଏ ନିବିଷ୍ଟ ଆଲିଙ୍ଗନର ବଳୟ ଭିତରେ । ସେ ଆଲିଙ୍ଗନର ବଳୟ ତାଙ୍କର ସ୍ୱର୍ଗ, ଗ୍ରୀଡ଼ ଆସିଥିବା ସେହି ମୁଣ୍ଡର କେଶରୁ ବିଚ୍ଛୁରିତ ହେଉଥିବା ବାସ୍ନା ତାଙ୍କ ପାଇଁ ପାରିଜାତ । ସେ ମଣିଷର ସ୍ପର୍ଶରେ ଅଛି ତାଙ୍କର ମୋକ୍ଷ, ସେ ମଣିଷର ଭାବନା ତାଙ୍କ ପାଇଁ ତପସ୍ୟା ।

ତେଣୁ ଗାଁରେ ପହଞ୍ଚିବାର ମାସକ ପରେ ଏଇ ଘର । ଗାଁ ଦାଣ୍ଡକୁ ଲାଗି ପ୍ରଶସ୍ତ ବାରନ୍ଦା, ତାପରେ ଦୋକାନ, ତା'ପରେ ଏକ ବଖରା ଶୋଇବା ଘର, ତାପରେ ରୋଷେଇ ଘର । ତାହାର ଅବଶିଷ୍ଟ ଅଞ୍ଚଳ ବର୍ଷସାରା ଛେଉଣ୍ଡଭଳି ଅଯତ୍ନରେ ପଡ଼ିଥାଏ । ଧାନକଟା ବେଳେ କିଛି ଅଂଶରେ ଖଳା ତିଆରି ହୁଏ । ଏହା ବ୍ୟତୀତ ବାଡ଼ ପାଖରେ ଥିବା ବାଉଁଶବୁଦା, ରୋଷେଇ ଘର ପାଖରେ ଧାଡ଼ି ହୋଇ ରହିଥିବା ଅମୃତଭଣ୍ଡା, ସଜନା ଓ ପିଜୁଳିଗଛ, ସପୁରିବୁଦା ତାଙ୍କର ମନୋଯୋଗୀ ଦୃଷ୍ଟି ଏଯାଏଁ ଆକର୍ଷଣ କରିପାରି ନାହାନ୍ତି । ସେମାନଙ୍କୁ ନେଇ କିଛି ଗୋଟାଏ କରାଯାଇପାରେ ବୋଲି ଏଯାଏଁ ଭାବି ନାହାନ୍ତି ସେ ।

ଛ' ବର୍ଷ ପୂର୍ବେ ଗାଁର ମରୁଡ଼ି ପରିସ୍ଥିତି ନିତାନ୍ତ ଶୋଚମୟ ଓ ଅସମ୍ଭାଳ ହୋଇ ପଡ଼ିଥିଲା । ଅନେକେ ଗାଁ ଛାଡ଼ି ପଳେଇ ଯାଇଥିଲେ କଲିକତା ଓ ଆସାମ ଆଡ଼େ । ଯେଉଁମାନେ ଅସହାୟ ଅକର୍ମଣ୍ୟ ହୋଇ ପଡ଼ି ରହିଥିଲେ ଗାଁରେ, ସେମାନଙ୍କର କାମ ଥିଲା ଅସହଯୋଗୀ ନିର୍ବାକ୍ ଆକାଶ ଓ ଶୋଷ-ଭରପୂର ନିର୍ଯ୍ୟାତିତ ଜମି ଆଡ଼େ ଚାହିଁବା । ମହାଦେବଙ୍କ ମନ୍ଦିରରେ ଜଳଶାୟୀ ହେଉଥାଏ, ପଢ଼ା ଯାଉଥାଏ ଆଦ୍ୟକାଣ୍ଡ ଓ ଭାଗବତ । ଗୋଟାଏ ଅପରିଜ୍ଞେୟ ଆଶା ଓ ସନ୍ଧାନ ମିଳି ନ ଥିବା ଏକ ସମ୍ଭାବନା ମଣିଷକୁ ଅପେକ୍ଷା କରିବା ପାଇଁ କିପରି ଧୈର୍ଯ୍ୟ ଓ ସହନଶୀଳତା ଯୋଗେଇ ଦେଇପାରେ, ତାହାର ଚମତ୍କାର ଦୃଷ୍ଟାନ୍ତ

ଥିଲେ ଗାଁରେ ପଡ଼ି ରହିଥିବା ଓ ଅଖାଦ୍ୟ ଖାଉଥିବା ଗାଈ ଗୋରୁ-ମାନଙ୍କର ଭୋକଲା ହମ୍ବାରଡ଼ି ଶୁଣୁଥିବା ଓ ଗୃହ୍ମ ଗୃହ୍ମ ମରି ଯାଉଥିବା ଗଛମାନଙ୍କୁ ଦେଖୁଥିବା ସେଇ ଲୋକମାନେ ।

ପାଖରେ ଥିଲା ମାତ୍ର ଛ' ଅଣା । ଦେବ ଆଗୃର୍ଯ୍ୟ ବିନା ଟିକଟରେ ରେଳଯାତ୍ରା କରି ଓହ୍ଲେଇ ପଡ଼ିଲେ କୋଳାହଳପୂର୍ଣ୍ଣ ହାଓଡ଼ା ଷ୍ଟେସନ୍ ପ୍ଲାଟଫର୍ମରେ । ପ୍ରଥମେ ତାଙ୍କର ମନ ହେଲା କାନ୍ଦି ପକେଇବାକୁ, ଏଭଳି ମୂଢ଼ ଓ ଉପାୟହୀନ ହୋଇ ପଡ଼ିଥିଲେ ସେ । ସେ ଅପେକ୍ଷା କଲେ, ପାଣି ପିଇଲେ, ଆପାତତଃ ଫାଙ୍କା ପ୍ଲାଟ୍‌ଫର୍ମ ଉପରେ ଚଲାବୁଲା କଲେ, ଯାତ୍ରାପାର୍ଟିରେ ଶିଖିଥିବା ଗୀତ ଗାଇଲେ ମନକୁ ମନ ଏବଂ କହିଲେ— "ସମ୍ରାଟ୍ ମୁଁ ଏ ସମସ୍ତ ଅଞ୍ଚଳର । ଭୟଭୀତ ହେବି ମୁଁ କାହିଁକି ?"

ପରଦିନ ଅନେକ ବାଟ ବୁଲିବା ପରେ, ଛ' ଅଣା ଖର୍ଚ୍ଚ ହୋଇଯିବା ପରେ ସେ ଗୋଟେ ଝୋଟ କଳରେ ନିଜକୁ ଆବିଷ୍କାର କଲେ କୁଲି ଭୂମିକାରେ । ଆଠ-ଦଶ ଦିନର ଧଇଁସଇଁ ପରିଶ୍ରମ ପରେ ସେ ଅନୁଭବ କଲେ ଯେ, ସେ ସ୍ଥାନ ତାଙ୍କ ପାଇଁ ନୁହେଁ । ତାଙ୍କ ଭୋକ, ତାଙ୍କର ହାସ୍ୟାସ୍ପଦ ରୋଜଗାରକୁ ବହୁ ପଛରେ ପକାଇ ଲମ୍ଫି ଯାଉଥି ଆଗକୁ । ଫେରିଯିବେ କି ଗାଁକୁ ? ଏତକ ଭାବିବାମାତ୍ରେ ତାଙ୍କର ହାତ ଶିଥିଳ ହୋଇଗଲା । ସେ ଠିଆହେଲେ ନିର୍ବାକ୍ ହୋଇ । ମନ୍ତ୍ରମୁଗ୍ଧ ହେବାଭଳି ବାହାରି ଆସିଲେ ସେଠାରୁ ।

ଅଥଚ ସେ ପହଞ୍ଚିଲେ ନାହିଁ ଷ୍ଟେସନ୍‌ରେ । ଏମିତି ବୁଲିଲେ ତମାମ୍ ସହର ଅନେକ ଭୋକ ଓ କ୍ଲାନ୍ତିକୁ ପେଟରେ ଧରି । ତାଙ୍କର ଝାପ୍‌ସା ଝାପ୍‌ସା ଆଖି ଦେଖିପାରୁ ନ'ଥାଏ ଭଲ କରି ଏତେବଡ଼ କୋଠାଘର, ଲୋକଗହଳି, ଯାନବାହନ ଓ ଜୀବନଧାରଣର ବ୍ୟସ୍ତ ଶବ୍ଦ । ଦିନେ ଦୁଇଦିନ ପରେ ଜଣେ ଲୋକ ତାଙ୍କୁ ପହଞ୍ଚେଇ ଦେଇଥିଲା ସେଇ କୋଠାଘରେ । ପରିତୋଷ ସିହ୍ନାଙ୍କ ଘରେ ସେ ପୂଝାରୀର ଭୂମିକା ଗ୍ରହଣ କଲେ ।

ଦରମା ଇତ୍ୟାଦି ସମ୍ପର୍କରେ କୌଣସି ଚୁକ୍ତି ନ ଥିଲା । ସୁସ୍ଥ ବାତାବରଣ ଭିତରେ ରହି ପେଟ ଭରି ଖାଇବା ଥିଲା ତାଙ୍କ ଅନ୍ୱେଷଣର

ପ୍ରଥମ ଲକ୍ଷ୍ୟ । ବେଶ୍ ପୁରୁଣାକାଳିଆ, ବହୁ ଯୁଗରୁ ଧୂଳେଇ ହୋଇ ନ ଥିବା ଘରର ବାହାର କାନ୍ଥ ଦେଖି ସେ ପୁଣି ଦ୍ୱିଧାଗ୍ରସ୍ତ ହେଲେ । ଘରଟା ନିର୍ବାସିତ ଭଳି ଦେଖା ଯାଉଥିଲା ଦୁଃଖୀ, ନୀରବ ଓ ପ୍ରତିବାଦହୀନ ।

ଦୋତାଲା ଘର ଗୃହପାଖରେ ଥିବା ଉଚ୍ଚ ପାଚେରି ସ୍ଥାନେ ସ୍ଥାନେ ଧସକ ପଡ଼ିଥିଲା । ଗେଟ୍ ଉପର ଛାତ ବହୁ ଉଚ୍ଚ । ସେଇଭଳି ଉଚ୍ଚ ଥିଲା ଦୋତାଲାର ପର୍ଟିକୋ । ପରେ ସେ ବୁଝିଥିଲେ ହାତୀ ଯିବା ଆସିବା ପାଇଁ ସେଭଳି ଗେଟ୍ ଓ ପର୍ଟିକୋ ତିଆରି ହୋଇଥିଲା । ହତା ଭିତରଟା ଦିଶୁଥିଲା ଶ୍ରୀହୀନ, ଯତ୍ନ ଅଭାବରୁ । ତାଙ୍କୁ ଆଣିଥିବା ଲୋକ-ଜଣକ ପଚାଶ୍ ପଚପନ ବର୍ଷର ଜଣେ ସ୍ତ୍ରୀ ଲୋକ ଜିମା ଛାଡ଼ିଦେଇ ପଳାଇଲା । ହରଦମ୍ ପାନ ଖାଉଥିବା ସ୍ତ୍ରୀ ଲୋକ ଜଣକ ଉଚ୍ଚସ୍ୱରରେ କଥା କହି, ହାତ ଓ ଆଖିର ଭଙ୍ଗୀ ସାହାଯ୍ୟରେ ବୁଝାଇଦେଲା ଯେ, ସେ ଏକୁଟିଆ ଘରର ସବୁ କାମ ପାରୁ ନାହିଁ । ଦେବ ଆଚାର୍ଯ୍ୟ ସେଠାରେ ଗୃହକର-ପୂଜାର୍ଚ୍ଚା-ଟହଲିଆ ଇତ୍ୟାଦି କାମ କରିବେ ।

ଘର ପଛପଟେ ବଗିଚା ଘେରେଇ ଘର । ସ୍ଥାନେ ସ୍ଥାନେ ଫଲସ୍ତରି ଉଠି ଯାଇଥିବା, ସବୁଜ ଘାସ ମୁଣ୍ଡ ଟେକୁଥିବା ଅଗଣା । କିଛି ଦୂରରେ ଏକଦା ଘୋଡ଼ାଶାଳ ଭାବରେ ବ୍ୟବହୃତ ହେଉଥିବା ଉଚ୍ଚ ଘରଟି ପରିତ୍ୟକ୍ତ ହୋଇ ପଡ଼ିଥିଲା । ଫଟା ଛାତ ଓ କାନ୍ଥରୁ ସ୍ପର୍ଦ୍ଧିତ ଗଛ ବଢ଼ୁଥିଲେ, ମରିବା ପୂର୍ବରୁ ଜଣେ ରିକ୍ତ ମଣିଷର ଦେହ ଅତିକ୍ରମ କରି ହା ହୁତାଶମୟ ଦୀର୍ଘଶ୍ୱାସ ଉଠିବା ଭଳି ।

ତଳ ମହଲାର ଗୋଟିଏ ରୁମ୍ ଖୋଲି ଦିଆଗଲା । ଦେବ ଆଗୃର୍ଯ୍ୟ ରହିବେ ସେଇଠି । ଦୀର୍ଘ ସମୟ ପାଇଁ ହାତରେ ବ୍ୟାଗ୍ ଧରି ଠିଆ ହୋଇଥିଲେ ସେ । ପାପୁଲିରେ କପାଳ ଓ ବେକର ଝାଳ ପୋଛୁ ମାନ୍ଧାତା ଅମଳରୁ ଧୂଳେଇ ହୋଇ ନ ଥିବା ହଳଦିଆ ଦେଖା ଯାଉଥିବା କାନ୍ଥଆଡ଼ୁ ଦୃଷ୍ଟି ଫେରାଇଲେ । ବହୁତ ଉଚ୍ଚ ସିଲିଙ୍ଗ୍ । ଦୁଇଟିଯାକ ବଡ଼ ଝରକା ସ୍ଥାୟୀ ଭାବରେ ବନ୍ଦ କରାଯାଇଥିଲା । ସେ ଆବିଷ୍କାର କଲେ, କବ୍‌ଜା ଭାଙ୍ଗିଯାଇଛି ଦୁଇଟିଯାକର । ଦ୍ୱାର କବାଟରୁ ଗୋଟିଏ ଗୋଟିଏ ଘଷି ହେଉଛି ଚଟାଣ ଉପରେ, ଅନିଚ୍ଛୁକ ଫଙ୍ଗୁଟିଏ ବାଧ୍ୟ ହୋଇ ଗନ୍ଧ କଲାଭଳି । ରୁମ୍‌ଟା ଥିଲା ଆସବାବଶୂନ୍ୟ, ଗୋଟାଏ ସଜ୍ଜାହୀନ, ପୁରୁଣା ଗନ୍ଧକୁ ନିଜ ଗର୍ଭରେ ଧରି ।

କାନ୍ଧରେ ଥିବା କଣ୍ଢାରେ ଝୁଲାଇ ଦେଲେ ବ୍ୟାଗ । ବାରନ୍ଦା ଉପରକୁ ଆସିଲେ କାମ କରିବା ସକାଶେ ବରାଦ ଶୁଣିବେ ବୋଲି । କେହି କୁଆଡ଼େ ନାହିଁ । ତାଙ୍କୁ ଜଣାଗଲା, ମନ୍ଦ ଉଦ୍ଦେଶ୍ୟ ନେଇ ଗୋପନରେ ସେ ବୋଧହୁଏ ଅନୁପ୍ରବେଶ କରିଚନ୍ତି କାହା ଘରେ । ସେ ପୁଣି ରୁମ୍ ଭିତରକୁ ଗଲାବେଳେ ଦେଖିଲେ, ଅନ୍ୟ ପାର୍ଶ୍ୱରେ ଥିବା କାଠ ସିଡ଼ିରୁ ଓହ୍ଲାଉଛି ସେଇ ସ୍ତ୍ରୀ ଲୋକ ଜଣକ ।

—"ତୁମକୁ ରୁଟି ତିଆରି ଆସେ ?" ପାଖରେ ପହଞ୍ଚି ସେ ପଚାରିଲା ।

—"ହଁ ।" ନିତାନ୍ତ ମାମୁଲି କାମ ବୋଲି ଆଗୃର୍ଯ୍ୟଙ୍କ ସ୍ୱର ଥିଲା ସହଜ ।

—"ପଲଉ, ମାଂସ, ଛେଞ୍ଚଡ଼ା ?"

—"ହଁ ।" ପୁଣି ଆତ୍ମ-ବିଶ୍ୱାସ ଭରପୂର ଉତ୍ତର ।

ସ୍ତ୍ରୀଲୋକଟି ଆଶ୍ୱସ୍ତ ହୋଇ ଆଗ୍ରଯ୍ୟଙ୍କୁ ଚାହିଁଲା ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ । କହିଲା—"ବୋହୂ ମା' ଉପର ମହଲାରେ ଅଛନ୍ତି । କ'ଣ ତୁମ ସହିତ କଥା ହେବେ । ଯାଅ ।" କହିଲା ଏବଂ ସେ ଚାଲିଗଲା ଘର ଭିତରେ ପଶିଲା ।

ଟିକିଏ ନର୍ଭସ୍ ହୋଇ ଯାଇଥିଲେ ଆଗ୍ରଯ୍ୟ । ଛାତି ଦପ୍ ଦପ୍ ହେଲା । ଶୁଖିଗଲା ତଣ୍ଟି । ଏଠୁ ତଡ଼ା ଖାଇବେ କି ? ଚାରିଆଡ଼କୁ ଚାହିଁ ଉଠିଲେ କାଠ ଶିଡ଼ିରେ । ଅପରିଚିତ ଘର ବୋଲି ଧୀରେ ଯିବାକୁ ପଡ଼ୁଥିଲା । ବିଶେଷତଃ ଆଶଙ୍କା ଥିଲା ଯେ, ଶିଡ଼ିଟା ତାଙ୍କ ଓଜନ ସମ୍ଭାଳି ନ ପାରି ଭୁଷୁଡ଼ି ଯାଇପାରେ ।

ତଥାପି ଆହୁରି ଭୟ-ଚମତ୍କାରଟା ପାଉଛି ବାକି ଥିଲା । ଅଟକିଗଲେ ଦେବ ଆଗ୍ରଯ୍ୟ । ଓସାରିଆ ଲମ୍ବା ବାରନ୍ଦା ମଝିରେ ଚୌକି ଉପରେ ବସିଥିଲେ ଜଣେ ମହିଳା ଓ ବ୍ୟସ୍ତ ଥିଲେ କିଛି ପଢ଼ିବାରେ । ସେଇଭଳି ସେ କେତେ ସମୟ ଠିଆ ହୋଇ ରହିଥିଲେ, ତାହା ଜଣା ନ ଥିଲା ଆଗ୍ରଯ୍ୟଙ୍କୁ । ମହିଳା ଜଣକ ବହି ଉପରୁ ଦୃଷ୍ଟି ଫେରାଇ ଅନେଇଲେ ସିଡ଼ି ଆଡ଼କୁ ଓ ତାଙ୍କୁ ଦେଖିପାରି ପାଖକୁ ଆସିବା ପାଇଁ ହାତରେ ଇଙ୍ଗିତ ଦେଲେ ।

ଦେବ ଆଗ୍ରଯ୍ୟ ଠିଆ ହୋଇପଡ଼ିଲେ ପାଖରେ ଏବଂ ସ୍ତବ୍ଧ ହୋଇଗଲେ । ଏଭଳି ସୁନ୍ଦରୀ ମହିଳା ଆଗରୁ ସେ ଦେଖି ନ ଥିଲେ ଜମା, ପାଖରେ ଠିଆ ହେବା ତ ଦୂରର କଥା । ଗୋରା ଦେହ, ରକ୍ତିମ ଓଠ, ସ୍ୱପ୍ନବିଜଡ଼ିତ ଆଖି ଓ ଭାଷା ପରିପୂର୍ଣ୍ଣ ଭ୍ରୂଲତା । ଦେବ ଆଗ୍ରଯ୍ୟଙ୍କର ଦୃଷ୍ଟି ନିମ୍ନଗାମୀ ହୋଇଗଲା ।

—"ତୁମ ନାଁ କ'ଣ ?" ସ୍ନେହ ଭରସା ପରିପୂର୍ଣ୍ଣ ଝଙ୍କାରଟିଏ ।

—"ଦେବ । ଦେବ ଆଗ୍ରଯ୍ୟ ।" କ୍ଷଣକ ପାଇଁ ମୁହଁ ଟେକି ଚକ୍ ଚକ୍ ସୁସଜ୍ଜିତ ଦାନ୍ତଗୁଡ଼ିକ ଦେଖିନେଲେ ସେ । ଏକ ବିସ୍ମୃତ, ଦଳ ପରିପୂର୍ଣ୍ଣ ଜଳାଶୟ ଭିତରେ ମହିଳା ଜଣକ ଥିଲେ ଗୋଟିଏ ସତେଜ ପଦ୍ମଫୁଲ ପରି ।

ଘାର୍ଘ ନୀରବତା । ସେ ପୁଣି କହିଲେ—"ତୁମେ ଟିକିଏ ବଡ଼ ହୋଇ ଯାଇଚ । ଆମ ଘରେ କାମଦାମ କରିବା ପାଇଁ ତୁମକୁ ଖରାପ ଲାଗିବ ନି ?"

—"ନା ।" ପ୍ରତିଶ୍ରୁତି ଦେଲେ ଦେବ ଆଗ୍ରୁର୍ଯ୍ୟ ।

—"ଲୁଚିକରି ପଳେଇଯିବ ନାହିଁ ତ ?" ମହିଳାଙ୍କର ଏ ପ୍ରଶ୍ନ ଶୁଣି ଦେବ ଆଗ୍ରୁର୍ଯ୍ୟ ଟିକିଏ ହସିଲେ । ତାଙ୍କର ଜିଜ୍ଞାସୁ ଗମ୍ଭୀର ମୁହଁରେ ମଧ୍ୟ ହସର ତରଙ୍ଗ ବ୍ୟାପିଗଲା ।

—"ନା ।" ପୁଣି ପ୍ରତିଶ୍ରୁତି ।

—"ସତ କହୁଚ ?" ପୁଣି ପ୍ରତିଶ୍ରୁତି ପାଇଁ ଅନୁରୋଧ; ଆଦେଶ ନୁହେଁ ।

—"ହଁ ।"

—"ସତ କହୁଚ ?" ତାଙ୍କ ପ୍ରଶ୍ନର ପୁନରାବୃତ୍ତି ଶୁଣି ଦେବ ଆଗ୍ରୁର୍ଯ୍ୟ ମୁହଁ ଉଠାଇଲେ । କିଛି କହିଲେ ନାହିଁ ।

—"ଯାଅ, ଦେଖ, କ'ଣ କାମ ଅଛି କରିବା ପାଇଁ ।" ଦେବ ଆଗ୍ରୁର୍ଯ୍ୟ ଗୋଷ୍ଠେଇ ଘରଆଡ଼କୁ ଯାଉଥିଲେ ବିସ୍ମୟକର ସ୍ୱରଟିଏ ସାଙ୍ଗରେ ନେଇ । ଏକ ଅଦୃଶ୍ୟ ତେଉ ବାରମ୍ବାର ପରିବ୍ୟାପ୍ତ ହେଉଥିଲା ତାଙ୍କର ଶିରା-ପ୍ରଶିରା ଓ ହାଡ଼ର ମଜ୍ଜା ଉପରେ ।

ସେ ଘରେ ଜମା ଦୁଇଦିନ ରହିବା ପରେ ଦେବ ଆଗ୍ରୁର୍ଯ୍ୟ ଭାବିଲେ, ସେ ପାଗଳ ହୋଇଯିବେ । ସେ ସ୍ଥିର କରି ନେଇଥିଲେ ଯେ, ଦିନେ ରାତିରେ ବ୍ୟାଗ୍ ଧରି ପଳେଇ ଯିବେ । ସେ ଥିଲେ ଜଣେ ପ୍ରାଣ-ପ୍ରାଚୁର୍ଯ୍ୟଭରା କର୍ମଚଞ୍ଚଳ ଯୁବକ । କେଉଁଠି ଚୁପ୍‌ଚାପ୍ ବସି ରହିବା, ଗୋଟାଏ ସୁଦୃଢ଼ ଶୃଙ୍ଖଳା ଭିତରେ ବନ୍ଦୀ ହୋଇ ରହିବା ତାଙ୍କ ସ୍ୱଭାବର ପରିପନ୍ଥୀ ଥିଲା । ସେ ଚାହୁଁଥିଲେ ଅନେକ ସାଙ୍ଗମାନଙ୍କ ଗହଣରେ କୋଳାହଳପୂର୍ଣ୍ଣ ସମୟ ବିତାଇବାକୁ । ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କ ପାଇଁ ନୂଆ ହେବା ଆବଶ୍ୟକ ଥିଲା ।

ଅଥଚ ସେ ଘରେ ଥିଲା କ'ଣ ? କେବଳ ନୀରବତା । ଏତେ ଚୁପ୍‌ଚାପ୍, ସୁପ୍ତ ଥିଲା ସେ ଘରର ପରିବେଶ ଯେ, ନୀରବତାକୁ ସତେ

ଯେପରି ସ୍ପର୍ଶ କରିହେବ, ନୀରବତାର କଠିନ ସାନ୍ଦ୍ରତା ଅନୁଭବ କରିହେବ । କୌଣସି କୋଳାହଳ ସକ୍ଷମ ନ ଥିଲା ସତେ ଯେପରି ସେଇ ନୀରବତାକୁ ଖଣ୍ଡ ଖଣ୍ଡ କରି ତରଳାଇ ଦେବା ପାଇଁ । ଆନ୍ତର ମଧ୍ୟ ଥିଲା ଗୋଟାଏ ଗନ୍ଧ । ଗୋଟାଏ ଗୌରବମୟ ଖାନ୍‌ଦାନି ଓ ସମ୍ଭ୍ରାନ୍ତ ପରମ୍ପରାର ମୃତ ଦେହ ପଚି ଯାଉଥିଲା ଆସ୍ତେ ଆସ୍ତେ, ସେଇ ପଚାଗନ୍ଧ ପବନରେ ଝୁଲି ରହିଥିଲା ଅନିବାର୍ଯ୍ୟ ଢଙ୍ଗରେ । ଦେବ ଆଗ୍ରହର୍ଯ୍ୟଙ୍କର ସ୍ୱଭାବସୁଲଭ ଚଞ୍ଚଳତା ଏଭଳି ବିପରୀତାତ୍ମକ ପରିବେଶ ଭିତରେ ରୁଦ୍ଧ ହୋଇ ଯାଉଥିଲା ।

ଗୋଟାଏ କଙ୍କାଳ ଭଳି ଘରଟା ଥିଲା ଅନ୍ତଃସାରଶୂନ୍ୟ । କେହି ନ ଥିଲେ ସେ ଘରେ । ପରିତୋଷ ସିହ୍ନାଙ୍କୁ ସେ ଗତ ଦୁଇଦିନ ଭିତରେ ଦୁଇଥର ମାତ୍ର ଦେଖିଥିଲେ । ସକାଳ ନ'ଟା ବେଳେ ସବୁ କାମ ସାରି ସେ ବାହାରି ଯାଆନ୍ତି କେଜାଣି କୁଆଡ଼େ । ଠିକ୍ ସେଇ ସମୟରେ ଘୋଡ଼ାଗାଡ଼ିଟେ ପହଞ୍ଚି ଯାଇଥାଏ ପର୍ଟିକୋ ତଳକୁ । ଦିନତମାମ୍ ଦେଖା ନ ଥାଏ ତାଙ୍କର । ସେ ଘରେ ରହୁଥିବା ସ୍ତ୍ରୀ ଲୋକ ଜଣକ କହିଥିଲା—
"ମଧ୍ୟାହ୍ନ ଭୋଜନ ରଖିଦେଇ ଆସ ବାବୁଙ୍କ ରୁମ୍‌ରେ । କେତେବେଳେ ଯଦି ଫେରିବେ, ଖାଇବେ । ଫେରିବେ କି ନାଇଁ, ତାହା ସେ କେବେ ଆଗରୁ କହିଦେଇ ଯାଆନ୍ତି ନାଇଁ ।"

ଗତ ଦୁଇଦିନ ବାବୁ ଫେରି ନ ଥିଲେ ମଧ୍ୟାହ୍ନଭୋଜନ ପାଇଁ । ରାତିରେ ତାଙ୍କର ଗୁଟିପଟ ରୁଟି ଓ ଗିଲାସେ କ୍ଷୀର ଥୁଆ ହୋଇଥାଏ ତାଙ୍କ ରୁମ୍‌ରେ । କେତେବେଳେ କେଜାଣି ଫେରନ୍ତି । ସେତକ ଖାଇ ନିଜର ପୃଥକ୍ କୋଠରିରେ ଶୋଇ ପଡ଼ନ୍ତି । ମାଡ଼ାମ୍ ତାଙ୍କ ରୁମ୍‌ରେ; ବାବୁ ତାଙ୍କ ରୁମ୍‌ରେ । କିଛି ବୁଝି ହୁଏ ନାଇଁ ।

ମାଡ଼ାମ୍‌ଙ୍କ ଭଳି ବାବୁ ଥିଲେ ସୌମ୍ୟ ପୁରୁଷ ଜଣେ । ବେଶ୍ ଡେଙ୍ଗା ଓ ସ୍ୱାସ୍ଥ୍ୟବାନ୍ । ଗୋରା । ଚକ୍ ଚକ୍ ଗହଳିଆ କେଶ । ବିଶାଳ ନିଶ । ସବୁବେଳେ ସଫା ଧୋତି ଓ ପଞ୍ଜାବୀ ପିନ୍ଧନ୍ତି । ପାଦରେ କଳା ରଙ୍ଗର ଚପଲ । ବେକରେ ମୋଟା ସୁନାର ଚେନ୍ । ତାଙ୍କ ଦେହରୁ ହାଲ୍‌କା ଚମତ୍କାର ବାସ୍ନା ବିଚ୍ଛୁରିତ ହେଉଥାଏ । ସେ ଗମ୍ଭୀର ଥାନ୍ତି

ସବୁବେଳେ । ପ୍ରାୟ କାହାକୁ କିଛି କହନ୍ତି ନାହିଁ । ଦେବ ଆଗୃର୍ଯ୍ୟ ତାଙ୍କୁ ଦେଖିବା ମାତ୍ରେ ଦୁରନ୍ତ ବୋଧ କଲେ ନିଜକୁ । ତାଙ୍କର ଉପସ୍ଥିତି ବୋଧହୁଏ ସିହ୍ନା ସାହେବଙ୍କ ଚେତନାରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରି ନ ଥିଲା । ଘର କୋଣରେ ଗଢ଼ି ଉଠୁଥିବା ବୁଢ଼ିଆଣୀ ଜାଲ ଦେଖିଲେ, କବାଟର କବ୍‌ଜା ଭାଙ୍ଗି ଯାଉଥିବାର ଦେଖିଲେ, କିଛି କହିଲେ ନାହିଁ । ଗୋଟାଏ ସଂକ୍ଷିପ୍ତ ଓ ନୀରବ ଦୀର୍ଘଶ୍ୱାସ ଯାହା ବାହାରି ଆସିଲା ତାଙ୍କ ଭିତରୁ । ଦେବ ଆଗୃର୍ଯ୍ୟଙ୍କୁ ଦେଖି ସେ ଦୃଷ୍ଟି ବୁଲାଉଥିଲେ; କିନ୍ତୁ କ'ଣ ଭାବିଲେ କେଜାଣି, ପଚାରିଲେ—"ତୁମ ନାଁ କ'ଣ ?"

—"ଦେବ ଆଗୃର୍ଯ୍ୟ ।"

ସେ ଆଗକୁ ପାଦ ବଢ଼ାଉଥିଲେ; କିନ୍ତୁ ଅଟକି ଗଲେ । ପଚାରିଲେ—"କ'ଣ କହିଲ, ତୁମ ନାଁଟା ?"

—"ଦେବ ଆଗୃର୍ଯ୍ୟ ।"

—"ଦେବ ଆଗୃର୍ଯ୍ୟ !" ନାଁଟା ମୁଖସ୍ଥ କରିବା ପାଇଁ ସେ ବୋଧହୁଏ ଚେଷ୍ଟା କରୁଥିଲେ । ମନ୍ତବ୍ୟ ବାଢ଼ିଲେ—"ତୁମେ ଭଲ ରୋଷେଇ କରୁଚ ?"

ଦେବ ଆଗୃର୍ଯ୍ୟ ଏଭଳି କୃତକୃତ୍ୟ ହୋଇ ନ ଥିଲେ ପୂର୍ବରୁ । ଅବଶ୍ୟ ସେ ଜାଣିଥିଲେ ଯେ ସିହ୍ନା ସାହେବ ତାଙ୍କ ହାତରନ୍ଧା ଖାଦ୍ୟ ଖାଇ ନ ଥିଲେ ସେ ପର୍ଯ୍ୟନ୍ତ, କେତେ ପଟ ରୁଚି ବ୍ୟକ୍ତ । ତା'ଛଡ଼ା, ରୋଷେଇ କରିବାରେ ସେ କେତେ ଅଭିଜ୍ଞ, ତାହା ସେଯାଏଁ ପରୀକ୍ଷିତ ହୋଇ ନ ଥିଲା । ତଥାପି ସେ ବେଶ୍ ଆନନ୍ଦିତ ହେଲେ, ପ୍ରଶଂସାଟା ମିଛ ହେଉ ପଛକେ ।

—"ତୁମେ ଆମ ଘରେ କିଛିଦିନ ରହିବ ?" ବାବୁଙ୍କର ପରବର୍ତ୍ତୀ ପ୍ରଶ୍ନ ।

—"ହଁ ।" ଏତିକ କହିବା ବେଳେ ଦେବ ଆଗୃର୍ଯ୍ୟଙ୍କର ଦୃଢ଼ତା ଟହଲି ଯାଇଥିଲା ଟିକିଏ ।

"କିଛି ଅସୁବିଧା ହେଲେ କହିବ । ସଂକୋଚ କରିବ ନାହିଁ ଜମା । ଆମକୁ ନ କହି ଲୁଚିକରି ପଳେଇବ ନାହିଁ । କ'ଣ କହୁଚ ?" ଉପଦେଶ ଦେବା ପରେ ତାଙ୍କଠାରୁ ଜବାବ ଆଶା କରୁଥିଲେ ସେ ।

—"ହଁ ।" ଦେବ ଆଗ୍ରହୀଁ କହିଲେ ।

—"ହଁ, କ'ଣ ?"

—"ଘରୁ ଲୁଚିକରି ପଳେଇବି ନାହିଁ ।" ଦେବ ଆଗ୍ରହୀଁ କଥାଟା ସ୍ପଷ୍ଟ କରିଦେଲେ ।

ଆଉ କିଛି କଥା ନାହିଁ । ସିହ୍ନା ସାହେବ ବାହାରିଗଲେ ଘରୁ । ସବୁ ପୁଣି ଉଦାସ, ମୂର୍ଚ୍ଛାଳିଆ ଲଗିଲା ।

ଭାଙ୍ଗି ଯାଉଥିବା ଘରର ଏଇ ଦୁଇଜଣ ହେଉଛନ୍ତି ଅଧିବାସୀ—ଶ୍ରୀ ଓ ଶ୍ରୀମତୀ ସିହ୍ନା । ପିଲାପିଲିଙ୍କର ଦେଖା ନାହିଁ । କେହି ଆସନ୍ତି ନାହିଁ ଏ ଘରକୁ । ଘରର ଅବକ୍ଷୟ ଦେଖିବା ପାଇଁ ଶ୍ରୀମତୀ ସିହ୍ନା ସତେ ଯେପରି ବସି ରହିଥାନ୍ତି ଉପର ମହଲାରେ । ଘରର ଅବକ୍ଷୟ ନ ଦେଖିବା ପାଇଁ ଶ୍ରୀ ସିହ୍ନା ସତେ ଯେପରି ବାହାରେ ସମସ୍ତ ସମୟ କଟାଇବାକୁ ଉଦ୍‌ଗ୍ରୀବ ହୋଇ ପଡ଼ନ୍ତି । ଏଭଳି ଘରେ କୌଣସି ଚାକର ଦୀର୍ଘଦିନ ପାଇଁ ରହିପାରେ ? ଚୁପ୍‌ଚାପ୍, କାହାକୁ ନ କହି ଖସି ପଳେଇ ଯିବା ହିଁ ବଙ୍କତା । ବୋଧହୁଏ ଏଥିପାଇଁ ଉଭୟ ସ୍ୱାମୀ-ସ୍ତ୍ରୀ ବ୍ୟସ୍ତ ହୋଇ ପଡ଼ିଥିଲେ ଚାକର ଖୋଜି ନିଯୁକ୍ତ କରିବାରେ । ନ ହେଲେ ସେ ଦୁହେଁ ତାଙ୍କଠୁ ଗୋଟିଏ ପ୍ରକାରର ପ୍ରତିଶ୍ରୁତି ଆଦାୟ କରନ୍ତେ କାହିଁକି ?

ସେ ଘରେ ରହିବାର ପଞ୍ଚମ ଦିନ ରାତିରେ ହିଁ ଦେବ ଆଗ୍ରହୀଁ ଲୁଚି କରି ପଳେଇଯିବା କଥା । ମନ ଭିତରେ ଯୋଜନା ଚୂଡ଼ାନ୍ତ ହୋଇ ସାରିଥିଲା । ସେଠାରେ ତାଙ୍କୁ ଯେ ବହୁତ କାମ କରିବାକୁ ପଡ଼ୁଥିଲା, ତା' ନୁହେଁ । ଘର ଝାଡ଼ିବା, ହତା ଭିତରେ ଅନାବନା ଗଛ ଉପାଡ଼ିବା, ଘାସ ସଫା କରିବା, ବଜାର ସଉଦା କରିବା ଓ ରୋଷେଇ କରିବା ଇତ୍ୟାଦି କଷ୍ଟ କାମ ନ ଥିଲା; କିନ୍ତୁ ଏସବୁ କରିବାରେ ସେ ଆନ୍ତରିକତା ଦେଇପାରୁ ନ ଥିଲେ । ସବୁ ଯେମିତି ଚାଲିଥିଲା ଅନ୍ୟମନସ୍କ ଭାବରେ ।

ତେବେ ସେଠାରୁ ଫେରିଲେଇଯିବା କଥା ଭାବିବାମାତ୍ରେ ଯନ୍ତ୍ରଣାଦଗ୍ଧ ବିକ୍ଷୁବ୍ଧତା ଭିତରେ ସମସ୍ତ ଆଗ୍ରହ ଓ ଅସ୍ଥିରତା ପୋଛି ହୋଇଯାଏ । ଗୋଟାଏ ବ୍ୟାକୁଳ କମ୍ପନ ସଂପ୍ରସାରିତ ହୋଇଯାଏ ତାଙ୍କ ସର୍ବାଙ୍ଗରେ । ସରଳ ବିଶ୍ୱାସକୁ ପ୍ରତାରିତ କରିବାକୁ ଯାଉଚନ୍ତି ବୋଲି ମନେହୁଏ ତାଙ୍କର । ଶ୍ରୀମତୀ ସିହ୍ନାଙ୍କର ଅପୂର୍ବ ସ୍ନେହପ୍ରବଣ ମୁହଁ ସଙ୍କୁଚିତ କରି ପକାଏ ତାଙ୍କୁ ।

ପାଞ୍ଚଦିନ ଧରି ସେ ଶ୍ରୀମତୀଙ୍କର ଶୋଇବାଘର ଝାଡ଼ିଚନ୍ତି, ବିଛଣା ସଜାଡ଼ିଚନ୍ତି ଶିହରଣର ସହିତ । ସେ ତାଙ୍କୁ ପଚାରିଚନ୍ତି ତାଙ୍କ ପରିବାର କଥା, ଗାଁ କଥା । କୌଣସି ପ୍ରଶ୍ନର ଉତ୍ତର ଦେବାପାଇଁ ସେ ସଂକୋଚ ବୋଧ କଲେ ସେ ତାଙ୍କୁ ବାଧ କରି ନାହାନ୍ତି କିଛି କହିବା ପାଇଁ । ଗାଁ ଯାତ୍ରାଦଳରେ ସେ ମିଶିଥିଲେ ବୋଲି ଶୁଣି ଶ୍ରୀମତୀ ସିହ୍ନା ଆଗ୍ରହୀ ହୋଇ-ଚନ୍ତି । ତାଙ୍କ କୋଠରୀ ଭିତରେ ଡାଇଲଗ୍ ଉଚାରଣ କରି ଚମତ୍କୃତ କରିଚନ୍ତି ତାଙ୍କୁ । ଶ୍ରୀମତୀ ସିହ୍ନା ପ୍ରଶଂସାସୂଚକ ତାଳି ମାରିଚନ୍ତି ଅନିୟନ୍ତ୍ରିତ ଭାବରେ ହସି ହସି । ସେ ଗାଇଥିବା ଗୀତ ଶୁଣିଚନ୍ତି ଦୃଢ଼ାନ୍ତ ମନୋଯୋଗ ନେଇ । ଗୀତର ସ୍ୱର ଅନୁସାରେ ତାଙ୍କ ମୁହଁର ଭଙ୍ଗୀ, ଓଠ ଏବଂ ଭ୍ରୂଲତାର ଆକାର ବଦଳାଇ ।

ସିଦ୍ଧାନ୍ତ ଗ୍ରହଣ କରିବା ଏତେ ସହଜ ନ ଥିଲା ତାଙ୍କ ପାଇଁ । ନିଜ ରୁଚି ଅନୁସାରେ ଦେବ ଆଗ୍ରୱାଲଙ୍କୁ ସଜାଡ଼ିବାକୁ ଚେଷ୍ଟା କରିଚନ୍ତି ସେ । ଯଥା—"ଦେବ, ତୁମେ ନିଶ କାଟିଦିଅ । ଆହୁରି ଭଲ ଦେଖା-ଯିବ ।" ଏବଂ "କଥା କହିବାବେଳେ କିମ୍ବା ଶୁଣିବା ବେଳେ ଜମା ଗମ୍ଭୀର ହେବ ନାହିଁ । ହସ ହସ ମୁହଁ ଜରିଆରେ ସୂଚେଇଦେବ ଯେ, କଥା କହିବାକୁ କିମ୍ବା ଶୁଣିବାକୁ ତୁମଠି ଆଗ୍ରହ ଓ ଆନ୍ତରିକତା ଅଛି । କହିଲ ଦେଖି, ଗମ୍ଭୀର ମୁହଁ ତୁମକୁ ଭଲ ଲାଗେ ?"

ଶ୍ରୀମତୀଙ୍କର ପ୍ରସ୍ତାବ ଶୁଣି ଦେବ ଆଗ୍ରୱାଲ, ଶ୍ରୀ ସିହ୍ନାଙ୍କର ନିଶ ଓ ଆବେଗର ତରଙ୍ଗ ସୃଷ୍ଟି ହେଉ ନ ଥିବା ତାଙ୍କ ମୁହଁ କଥା ହିଁ ଚିନ୍ତା କରିଥିଲେ । ପରୋକ୍ଷ ଭାବରେ ଶ୍ରୀମତୀ ସିହ୍ନା ଅଭିଯୁକ୍ତ କରୁଥିଲେ ତାଙ୍କ ସ୍ୱାମୀଙ୍କୁ ଏବଂ ପ୍ରତ୍ୟାଖ୍ୟାନ କରୁଥିଲେ ତାଙ୍କ ଅଭ୍ୟାସକୁ ।

କିନ୍ତୁ ଏଭଳି ପରିବେଶ ଭିତରେ କେତେଦିନ ରହିପାରିବ ଜଣେ ଚଳଚଞ୍ଚଳ ମଣିଷ ? ଏ ସହରକୁ ଆସିବା ତାଙ୍କ ପାଇଁ ସଉକ ନୁହେଁ; ଗୋଟାଏ ଆବଶ୍ୟକତା ଥିଲା । ସେ ବଞ୍ଚି ରହିବେ ଏବଂ ଗାଁକୁ ଫେରିବା ବେଳେ ଅନ୍ତତଃ ନିଜର ସ୍ଥିତିକୁ ଦୃଢ଼ କରିବା ପାଇଁ ଶକ୍ତି ଓ ଅବଲମ୍ବନ ନେଇଯିବେ । ଶ୍ରୀମତୀ ସିନ୍ହାଙ୍କ ପ୍ରତି ଥିବା ତାଙ୍କର ଏଇ ଅର୍ଥହୀନ, ସମ୍ଭାବନାହୀନ ଆବେଗ, ତାଙ୍କ ଜୀବନର ଭବିଷ୍ୟତକୁ ନିୟନ୍ତ୍ରଣ କରିବା ଠିକ୍ ନୁହେଁ । ତାଙ୍କୁ ବାସ୍ତବବାଦୀ ହେବାକୁ ପଡ଼ିବ । ଏଇଭଳି ଦ୍ୱନ୍ଦ୍ୱ ହିଁ ବିଚଳିତ କରିଦେବ ଆଗ୍ନେୟଙ୍କୁ । ସେ ବାସ୍ତବତାର ସ୍ୱରୂପ ଚିହ୍ନନ୍ତି; ଅଥଚ ନିଜକୁ ମୁକ୍ତ କରିପାରନ୍ତି ନାହିଁ ଆବେଗ ଓ ଦିବାସ୍ୱପ୍ନରୁ । ସେହି ଘରଟିଛାଡ଼ି ପଳେଇବା ହୋଇଥାନ୍ତା ବିଜ୍ଞତା; ସେଇଘରେ ରହିଯିବା ଥିଲା ଆବେଗର ପ୍ରରୋଚନା । ସେ ଇତସ୍ତତଃ ହେଉଥିଲେ ଏବଂ ଭାବୁଥିଲେ ଯେକୌଣସି ଐଶ୍ୱରିକ ଶକ୍ତି ତାଙ୍କୁ ଏ ଘରୁ ମୁକ୍ତ କରିବାକୁ ଆଗେଇ ଆସିବା ଉଚିତ ।

ଯେଉଁଦିନ ଘର ଛାଡ଼ି ପଳେଇବେ ବୋଲି ଦ୍ୱିଧାଗ୍ରସ୍ତ ଭାବରେ ସେ ସିଦ୍ଧାନ୍ତ ଗ୍ରହଣ କରିଥିଲେ, ସେଇଦିନ ଅପରାହ୍‌ଣର ଘଟଣା—

"ତୁମକୁ ଏ ଘର ଭଲ ଲାଗୁଛି ?" ପାନ ଛେପ ପକାଇ ସ୍ତ୍ରୀ ଲୋକଟି ପଚାରିଲା ।

—"ହିଁ ।" ନିଜ ମନକୁ ଲୁଚେଇବା ପାଇଁ ଅଯଥା ଦୃଢ଼ତାର ସହିତ କହିବାକୁ ପଡ଼ିଥିଲା ଦେବ ଆଗ୍ନେୟଙ୍କୁ ।

—"କ'ଣ କହୁଥିଲି କି, ତୁମ ଅଞ୍ଚଳରୁ ଅନେକ ଟୋକା ଏ ଘରେ ରହିଚନ୍ତି । କିଏ ଚାରିଦିନ, କିଏ ଦଶଦିନ ରହି ଲୁଚି ପଳେଇଚନ୍ତି । କାହିଁକି ପଳାନ୍ତି, କହିଲ ?" ସେ ପଚାରିଲା ।

—"କାହିଁକି ?"

—"ମୁଁ ଭାବୁଚି, ଏ ଘର ସେମାନଙ୍କୁ ଭଲ ଲାଗେ ନାହିଁ । ଖାଁ ଖାଁ ଲାଗେ ଏଠାରେ । ବିମର୍ଷ, କାନ୍ଦୁରା ପରିବେଶ ଏଇଟା । ଏଇ ହେଉଚି କାରଣ । ନ ହେଲେ ମାଲିକ ମାଲିକାଣୀ ତ କେତେ ଭଲ । କାହାକୁ

ଗାଳିମାଡ଼ ଦେବା ଲୋକ ନୁହଁନ୍ତି ସେମାନେ । ତୁମେ କ'ଣ ଭାବୁଚ ?'' ସ୍ତ୍ରୀଲୋକଜଣକ ନିଜ କଥା ପ୍ରତି ସମର୍ଥନ ଚାହୁଁଥିଲା ।

—''ଦୁହେଁ ଯାକ ଭାରି ଭଲ ମଣିଷ ।'' କୃତଜ୍ଞତାବୋଧ ହେଉଥିବା ଭଙ୍ଗୀ ଉତ୍ତର ଥିଲା ଦେବ ଆଚାର୍ଯ୍ୟଙ୍କର ।

ପାନ ଚୋବେଇବା ସ୍ଥଗିତ ରଖି ସ୍ତ୍ରୀଲୋକ ଜଣକ ପାଞ୍ଚ-ଦଶ ମିନିଟ ମଧ୍ୟରେ ସେହି ପରିବାରର ସଂକ୍ଷିପ୍ତ ଅଥଚ ମର୍ମସ୍ପର୍ଶୀ ଇତିହାସ ଉପସ୍ଥାପନ କରିଥିଲା । ପରିତୋଷ ସିହ୍ନାଙ୍କ ପରିବାର ଏକଦା ଥିଲା ଐଶ୍ୱର୍ଯ୍ୟସମ୍ପନ୍ନ, ପ୍ରତାପଶାଳୀ ଜମିଦାର ପରିବାର । ପରିତୋଷଙ୍କର ଜେଜେବାପା ଅମଳରୁ ଆରମ୍ଭ ହେଲା ପତନ ଓ ବଦନାମର ଅଧ୍ୟାୟ । ସେ ଏବଂ ତା'ପରେ ପରିତୋଷଙ୍କ ବାପା ନିଜ ଜୀବନକୁ ଓ ପରିବାରର ସମ୍ପଦକୁ ବଦଖର୍ଚ୍ଚ କରିବାକୁ ଲାଗିଲେ । ପରିତୋଷଙ୍କ ବାପା ଯକ୍ଷ୍ମା-ରୋଗରେ ମରିବା ପୂର୍ବରୁ ପରିତୋଷଙ୍କର ବାହାଘର ହୋଇ ଯାଇଥିଲା । ପରିତୋଷ ଏକମାତ୍ର ସନ୍ତାନ । ଏବେବି ଯେତିକି ସମ୍ପତ୍ତି ବାଡ଼ି ଅଛି, ତାହାର ଉପଯୁକ୍ତ ତତ୍ତ୍ୱାବଧାନ କରାଗଲେ ଯଥେଷ୍ଟ ହୁଅନ୍ତା । କିନ୍ତୁ ପରିତୋଷ ଜୀବନରେ କେବେ ବି ବାପା ହୋଇପାରିବେ ନାହିଁ ବୋଲି ଶୁଣିବା ପରେ, ସେ ଉଦ୍‌ଭ୍ରାନ୍ତ ହୋଇ ଯାଇଚନ୍ତି । ସବୁଆଡ଼ୁ ମନ ତୁଟି ଯାଇଚି ଏବଂ ସେ କେବଳ ସଢ଼ୁଚନ୍ତି ନିଜ ଭିତରେ । କାହାକୁ ହେଲେ ପୋଷ୍ୟପୁଅ କରି ଅଣାଯାଇ ପାରନ୍ତା; କିନ୍ତୁ ସେ ରାଜି ନୁହନ୍ତି ଜମା । କେତେଜଣ କହୁଚନ୍ତି ଯେ ରାମକୃଷ୍ଣ ମିଶନ୍‌କୁ ସେ ନିଜର ସମସ୍ତ ସମ୍ପତ୍ତି ଦାନ କରିଦେବେ ।

ଆଖିର ଲୁହ ପୋଛୁଥାଏ ଏବଂ ନିଜକୁ ଯଥାସମ୍ଭବ ସଂଯତ କରୁଥାଏ ସ୍ତ୍ରୀଲୋକ ଜଣକ । ଏଣେ କହୁଥାଏ—''କୁଷ୍ଠ ରୋଗୀମାନଙ୍କର ରହିଥାନ ପାଇଁ କିଛି ବ୍ୟବସ୍ଥା କରିବାକୁ ପଡ଼ିବ । ବାବୁ ଆଗଭର ହୋଇ ବାହାରି ପଡ଼ିବେ ଚାନ୍ଦା ପାଇଁ । ଯକ୍ଷ୍ମା ରୋଗୀମାନଙ୍କ ପାଇଁ ଡାକ୍ତରଖାନା ଖୋଲାଯିବ । ସମସ୍ତେ ବାବୁଙ୍କୁ ସେଇ କମିଟିର ସଭାପତି କରିଦେବେ । ଇଏ ଖାଲି ମନ ବାଆଁରେଇବା କଥା । ଘରକୁ, ନିଜ ସ୍ତ୍ରୀକୁ ଚାହିଁବା

ପାଇଁ ତ ସାହସ ନାହିଁ । ତେଣୁ କିଛି ଗୋଟେ କାମରେ ବ୍ୟସ୍ତ ରହିଲେ ସମୟ କଟିଯିବ; ନିଜ କଥା ବି ନିଜକୁ ଡରେଇବ ନାହିଁ ।”

ସ୍ୱୀ'ପରେ ତା ଆଖିରୁ ଆହୁରି ଦୁଇ ଟୋପା ଗଡ଼ିପଡ଼ିଲା ଲୁହ । ବେଶ୍ ଅସମ୍ଭାଳ ହୋଇ ପଡ଼ିଥିଲା ସେ—“ବାବୁଆଣୀଙ୍କୁ ଦେଖିଲେ ମନଟା ଚୂନା ହୋଇଯାଏ । କ'ଣ ଗୋଟେ ଭିତରଟା କାଟି ପକେଇବା ଭଳି ଜଣାପଡ଼େ । ବାବୁ ଖାଲି ଟିକିଏ ଘରମୁହାଁ ହେଲେ ସବୁ ବଦଳି ଯାଆନ୍ତା । ଏମିତି ବାବନାଭୂତ ହୋଇ ତାଙ୍କୁ ବୁଲିବାର ଦେଖିଲେ ବି ମନ ଥୟ ଧରେ ନାହିଁ । ଖାଲି ଏଇମାନଙ୍କ ପାଇଁ ଏ ଘରେ ପଡ଼ି ରହିବା କଥା । ଏତକ ଯିଏ ନ ବୁଝିଚି, ସେ କ'ଣ ଧୈର୍ଯ୍ୟ ଧରି ରହିପାରିବ ଏ ଦରମଲା ଘରେ !”

ସ୍ତ୍ରୀଲୋକଟିର ଶେଷ କେଇପଦ କଥା ଦେବ ଆଚାର୍ଯ୍ୟଙ୍କ ମଣିଷ-ପଣିଆ ଓ ସମ୍ବେଦନଶୀଳତା ପ୍ରତି ଥିଲା ଗୋଟେ ଆହ୍ୱାନ । ଘରୁ ପଳେଇବା ସଂକ୍ରାନ୍ତୀୟ ଯୋଜନା ବିଧ୍ୱସ୍ତ ହୋଇ ଯାଇଥିଲା ଏଇ ଆହ୍ୱାନର ମାଡ଼ରେ । ସମ୍ପର୍କ ନ ଥିବା ଅପରିଚିତ ଏଇ ପରିବାର ପ୍ରତି ସେ ସହସା ଦରଦୀ ହୋଇ ପଡ଼ିଥିଲେ ।

ଏହା ମଧ୍ୟରେ ଦେବ ଆଚାର୍ଯ୍ୟଙ୍କର ସେ ଘରେ ମାସେ ବିତି ଯାଇଥିଲା ବୋଲି ସେ ନିଜେ ସଚେତନ ନ ଥିଲେ । ସନ୍ଧ୍ୟା ସାତଟା ବେଳେ ସ୍ତ୍ରୀଲୋକ ଜଣକ ତାଙ୍କୁ ନିର୍ଦ୍ଦେଶ ଦେଲେ ଉପର ମହଲାକୁ ଯିବା ପାଇଁ ।

—“ଆଜି ତୁମର ଏ ଘରେ ମାସେ ପୂରିଲା । ତମ ଦରମା ନିଅ ।” ଶ୍ରୀମତୀ ସିହ୍ନା କିଛି ନୋଟ୍ ଧରି ତାଙ୍କ ଆଡ଼େ ବଢ଼େଇଲେ ।

ଦେବ ଆଚାର୍ଯ୍ୟଙ୍କ ପାଇଁ ଏଇଟା ଥିଲା ଗୋଟାଏ ସୁଖବର । ପ୍ରଥମେ ସେ ଟିକିଏ ଇତସ୍ତତଃ ହେଲେ । କହିଲେ—“ନାଇଁ, ଆପଣଙ୍କ ପାଖରେ ଥାଉ । ଏ ଘରୁ ଯିବା ଦିନ ମାଗି ନେବି ।”

ସେ ବେଶ୍ ଆମୋଦିତ ହେଲେ ଯେ, ତାଙ୍କ ଉପରେ ଦେବ ଆଚାର୍ଯ୍ୟଙ୍କର ଥିବା ଏଇ ବିଶ୍ୱାସ ଯୋଗୁ । କହିଲେ—“ଏ ଟଙ୍କା

ତୁମର । ତୁମ ପାଖରେ ରହିବା ଦରକାର । ନିଅ, ରଖ । ଏ ଘରେ ଜମା ରେଶ୍ ହେବ ନାହିଁ ।" ଦେବ ଆଗ୍ରହୀ ନୋଟ୍‌ଗୁଡ଼ାକ ଧରିବା ପରେ ପୁଣି କହିଲେ—"ଗଣ" ।

—"ପରେ ଗଣିବି ।" ଦେବ ଆଗ୍ରହୀ ଅପ୍ରସ୍ତୁତ ହୋଇ ପଡ଼ୁଥିଲେ ।

—'ନା, ଏଇଠି ଗଣ । କାଳେ ତୁମ ମନକୁ ନ ପାଇବ !"

ସ୍ତମ୍ଭୀଭୂତ ହୋଇ ଯାଇଥିଲେ ଦେବ ଆଗ୍ରହୀ । ସେ ଯେତିକି ପାଇବେ ବୋଲି ଆଶା କରୁଥିଲେ, ତାହାର ପ୍ରାୟ ତିନିଗୁଣ ଟଙ୍କା ଦିଆଯାଇଥିଲା ତାଙ୍କୁ । କୃତଜ୍ଞତା ଓ ଅବିଶ୍ୱାସରେ ତାଙ୍କ ଭ୍ରୂ କୁଞ୍ଚିତ ହୋଇ ପଡ଼ିଲା । ସେ ଆପାତତଃ ଗଦ୍‌ଗଦ ହୋଇ ଅଣ୍ଟା ଭାଙ୍ଗି ନମସ୍କାର କଲେ ।

—"ଶୁଣ !" ଦେବ ଆଗ୍ରହୀ ଅଟକି ଗଲେ । "ଦେଖିଲି, ଏଇ ଜାମାଟା ହେଉଛି କି ନାହିଁ ।" ଗୋଟାଏ ନୂଆ କମିଜ୍ ଧରି ଶ୍ରୀମତୀ ସିହ୍ନା ଦେବ ଆଗ୍ରହୀଙ୍କ ଦୁଇ କାନ୍ଧରେ ଧରି ଲମ୍ବ ଠିକ୍ ଅଛି କି ନା, ପର୍ଯ୍ୟବେକ୍ଷଣ କରୁଥିଲେ । ପ୍ରଥମଥର ପାଇଁ ଦେବ ଆଗ୍ରହୀ କାନ୍ଧରେ ଶ୍ରୀମତୀ ସିହ୍ନାଙ୍କର ହାତର ସ୍ପର୍ଶ ଅନୁଭବ କରୁଥିଲେ । ସେ ତାଙ୍କର ଏତେ ପାଖରେ ଠିଆ ହୋଇଥିଲେ ଯେ, ଦେବ ଆଗ୍ରହୀ ନିଜ ଗ୍ରୀବାରେ ଅନୁଭବ କରୁଥିଲେ ତାଙ୍କର ଗରମ ନିଃଶ୍ୱାସ ଓ ଆଘ୍ରାଣ କରୁଥିଲେ ତାଙ୍କ କେଶର କ୍ଷୀଣ ମଧୁର ସୁଗନ୍ଧ । ଗୋଟାଏ ସାଙ୍ଘାତିକ ତଡ଼ିତ୍ ଦେବ ଆଗ୍ରହୀଙ୍କର ଭାବନାଶକ୍ତିକୁ ଧ୍ୱଂସ କରି ଦେଉଥିଲା । ସେ କିନ୍ତୁ ସମ୍ଭାଳି ନେଲେ ନିଜକୁ । ଅନିୟନ୍ତ୍ରିତ ହେବାକୁ ଯାଉଥିବା ଦୁଇ ହାତ ମୁଠା କଲେ ଏବଂ ଜୋର୍ କରି ଅଟକାଇ ରଖିଲେ ଦେହର ଦୁଇ ପାର୍ଶ୍ୱରେ ।

—"ଜାମାଟା ଠିକ୍ ହେବ ।" ସେ ସନ୍ତୋଷ ପ୍ରକାଶ କଲେ ଏବଂ ଦେବ ଆଗ୍ରହୀଙ୍କ କାନ୍ଧ ଉପରେ ରଖିଲେ । ତା'ପରେ ନୂଆ ଧୋତି ଥୋଇଲେ ଅନ୍ୟ କାନ୍ଧରେ । "ଏଇ ନିଅ । ହେଲେ ଚପଲ କିଣିବ ।" ଝାଁ ଝାଁ କରୁଥିବା କାନ ଏତିକି ଶୁଣିଲା । ମନ୍ତ୍ରମୁଗ୍ଧ ହାତ

ଗ୍ରହଣ କଲା ଦିଆଯାଉଥିବା ଝଙ୍କା । "ଯାଅ ।" ଦେବ ଆଗୃର୍ଯ୍ୟ ମୁହଁ ବୁଲାଇ ଗଲାବେଳକୁ ପ୍ରାୟ ପକ୍ଷାଘାତ ହୋଇ ଯାଇଥିବା ପିଠି ଉପରେ ଅନୁଭବ କଲେ ସବୁ କୋମଳ ଅବିସ୍ମରଣୀୟ ଗୃପୁଡ଼ାଟିଏ । ଘରୁ ଲୁଚି ପଳେଇଯିବା ଯୋଜନାଟି ଦେବ ଆଗୃର୍ଯ୍ୟଙ୍କ ସ୍ମୃତିରେ ହାସ୍ୟାସ୍ପଦ ଓ ନିର୍ବୋଧ ହୋଇ ଯାଇଥିଲା ।

ଯୁ'ପରେ ତାଙ୍କୁ ଦେଖିବାମାତ୍ରେ ଦେବ ଆଗୃର୍ଯ୍ୟ ସଚେତନ ହୋଇ ପଡ଼ୁଥିଲେ । ତାଙ୍କ ଭିତରେ ଭିଡ଼ମୋଡ଼ ହେଉଥିବା ଉତ୍ତେଜନା ତାଙ୍କୁ ପ୍ରାୟ ଅଣନିଃଶ୍ୱାସୀ କରି ପକାଉଥିଲା । ଉପର ମହଲାକୁ ଯିବା ପାଇଁ ସେ ଖୁବ୍ ଭଲ ପାଉଥିଲେ । ଆହୁରି ଭଲ ପାଉଥିଲେ ଶ୍ରୀମତୀ ସିହ୍ନାଙ୍କ କୋଠରୀରେ ଦୀର୍ଘ ସମୟ ରହିବା ପାଇଁ ଓ ତାଙ୍କ ସଙ୍ଗେ ଗପସପ କରିବା ପାଇଁ ।

କିନ୍ତୁ ସେ ଘରେ ଦେବ ଆଗୃର୍ଯ୍ୟଙ୍କର ରହଣୀ ସହସା ସମାପ୍ତ ହୋଇ ଯାଇଥିଲା ଗୋଟାଏ ନାଟକୀୟ ଅବିଶ୍ୱାସ ଘଟଣା ପରେ । ସେ ଘରେ ରହିବା ବର୍ଷେରୁ ଅଧିକ ହୋଇ ଯାଇଥିଲା । କେଉଁ ଗୋଟାଏ ଅନୁଷ୍ଠାନ ଗଢ଼ିବା ପାଇଁ ଶ୍ରୀ ସିହ୍ନା ସହର ବାହାରକୁ ଗୃଲି ଯାଇଥିଲେ । ତାଙ୍କର ଅନୁପସ୍ଥିତିରେ ହିଁ ସେ ଦୁହିଁଙ୍କର ବିବାହବାର୍ଷିକୀ ଦିନଟି ପହଞ୍ଚି ଯାଇଥିଲା । ଦଶ ବର୍ଷର ବିବାହ ପରେ ପ୍ରଥମ ଥର ପାଇଁ ସେ ରହିପାରି ନ ଥିଲେ ଏଇ ଦିନରେ । ସେ ଅବଶ୍ୟ ଏଇ ଦିନଟିର କୌଣସି ତାତ୍ପର୍ଯ୍ୟ ବୁଝି ନ ଥିଲେ; କିନ୍ତୁ ପ୍ରାୟ ସବୁବେଳେ ଘରେ ପଡ଼ି ରହିଥିବା ଓ ଉତ୍ତରପୁରୁଷ ସୃଷ୍ଟି କରିବାର ସମସ୍ତ ସ୍ୱପ୍ନ ହରାଇ ସାରିଥିବା ଶ୍ରୀମତୀ ସିହ୍ନାଙ୍କ କ୍ୟାଲେଣ୍ଡରରେ କେବଳ ଏଇ ଦିନଟି ଥିଲା ଗୁରୁତ୍ୱପୂର୍ଣ୍ଣ ।

ସ୍ତ୍ରୀଲୋକ ଜଣକ ଅନେକ ଅଭିଯୋଗ ଓ ସହାନୁଭୂତିର ସହିତ ସବୁକଥା କହିସାରି ଦେବ ଆଗୃର୍ଯ୍ୟଙ୍କୁ ନିର୍ଦ୍ଦେଶ ଦେଲା ଉପରକୁ ଯାଇ ମାଡାମ୍‌ଙ୍କଠାରୁ ଉପହାର ଗ୍ରହଣ କରିବା ପାଇଁ । ଆଉଜା ହୋଇଥିବା କବାଟ ଆଡ଼େଇ ଝାପ୍‌ସା ଆଲୋକରେ ଦେବ ଆଗୃର୍ଯ୍ୟ ଯାହା ଦେଖିଲେ, ତାହା ବିଶ୍ୱାସ କରିବା ପାଇଁ ଅନେକ ସମୟ ଲାଗିଲା । ଚେୟାର ଉପରେ ଗାଢ଼ ନାଲି ରଙ୍ଗର ଖୁବ୍ ଦାମିକା ସିଲ୍‌କ ଶାଢ଼ୀ ପିନ୍ଧିଥିଲେ

ସେ । ପ୍ରଚୁର ଗହଣା ପିନ୍ଧିଥିଲେ ହାତରେ, ବେକରେ, ଝୁଲ୍ଲା ମଣ୍ଡିରେ । ଆଖିରେ କଜ୍ଜଳ । ଦେବ ଆଗ୍ରୁଫିଂ ଭାବୁଥିଲେ, ଏ ନାରୀ ମୂର୍ତ୍ତି ସହିତ ତାଙ୍କର କୌଣସି ପରିଚୟ ନାହିଁ; କାରଣ ସେ ଜଣାପଡ଼ୁଥିଲେ ଅବାସ୍ତବ, ଗୋଟାଏ ରଙ୍ଗୀନ ସ୍ୱପ୍ନ ପରି । ସେ ଜଣାପଡ଼ୁଥିଲେ ସ୍ନିଗ୍ଧହୀନ ଗୋଟାଏ ମନମୁଗ୍‌ଧକର ବାସ୍ନା ପରି । ତାଙ୍କୁ ସ୍ପର୍ଶ କରିବା ମାତ୍ରେ ସତେ ଯେପରି ସେ ଅଦୃଶ୍ୟ ହୋଇଯିବେ; ମିଶିଯିବେ ପବନ ଭିତରେ ।

—"ଭିତରକୁ ଆସ । ଏମିତ ଚାହିଁଛ କ'ଣ ?" ଦେବ ଆଗ୍ରୁଫିଂ କିନ୍ତୁ ଲକ୍ଷ୍ୟ କରିଥିଲେ, ଶ୍ରୀମତୀ ସିନ୍ହାଙ୍କର ସମସ୍ତ ଶାରୀରିକ ଐଶ୍ୱର୍ଯ୍ୟ ସତ୍ତ୍ୱେ ତାଙ୍କ ଆଖି ଓ ମୁହଁ ଉପରେ ଆସ୍ଥାନ ଜମାଇଥିଲା ଗୋଟାଏ ଶୋକ ଓ ଅଭାବବୋଧ । ସେ ଯେପରି ନିଜକୁ ଆଦୌ ସାଲିସ୍ କରିପାରୁ ନ ଥିଲେ ଏଇ ଆତ୍ମିକ ଶୂନ୍ୟତା ସହିତ । ଗୋଟାଏ ଦୀର୍ଘଶ୍ୱାସ । ସେ କହିଲେ—"ଆମ ବାବୁ ଅନ୍ତତଃ ଆଜି ଘଣ୍ଟା ରହିବା କଥା ମୋ' ପାଖରେ । ସେତକ ମୋର ବର୍ଷସାରା ଦୁଃଖର ଫସଲ ପାଇଁ ଏକମାତ୍ର ସାନ୍ତ୍ୱନା ।"

ଦେବ ଆଗ୍ରୁଫିଂଙ୍କର କୌଣସି ବକ୍ତବ୍ୟ ନ ଥିଲା ଏ ବ୍ୟାପାରରେ । "ତୁମକୁ ଗୋଟିଏ ଉପହାର ଦେବି । କ'ଣ ନେବ ?"

ଦେବ ଆଗ୍ରୁଫିଂ କେବଳ ଚାହିଁ ରହିଥିଲେ ତାଙ୍କୁ । ଗୋଟାଏ ଗରମ ଢେଉ ବାରମ୍ବାର ପ୍ରବାହିତ ହେବାକୁ ଲାଗିଲା ତାଙ୍କ ଦେହ ଉପରେ । ସଚେତନ ହେବାବେଳେ ଦେଖିଲେ, ସ୍ୱପ୍ନର ନାରୀ ମୂର୍ତ୍ତିଟି ଠିଆ ହୋଇଛି ତାଙ୍କ ପାଖରେ ଏବଂ ଖୁବ୍ ନମ୍ର ସ୍ୱରରେ ପଚାରୁଛି— "କ'ଣ ନେବ ?"

ତା'ପରେ ହଠାତ୍ ସଂଖ୍ୟାହୀନ ରଙ୍ଗୀନ୍ ବିସ୍ଫୋରଣ ସମଗ୍ର ବିଶ୍ୱରେ ଓ ଅନନ୍ତ ସମୟ ପାଇଁ । ଦୁହେଁ ପରସ୍ପରକୁ ସମସ୍ତ ଶକ୍ତି ସହିତ ଆଲିଙ୍ଗନ କରିଥିଲେ ଏବଂ ନିଜ ସତ୍ତା ଭିତରେ ଅନ୍ୟର ସତ୍ତାକୁ ସମ୍ପୂର୍ଣ୍ଣ ଭାବରେ ଦ୍ରବୀଭୂତ କରିବା ପାଇଁ ଚାହୁଁଥିଲେ । ଦୁହିଁଙ୍କର ପ୍ରସାରିତ, ଅନ୍ୱେଷଣରତ ହାତ ସତେ ଯେପରି ପରିପୂର୍ଣ୍ଣତା ପାଇ ପାରିଥିଲା ଏବଂ

ଜୀବନର ସମସ୍ତ ଜିଜ୍ଞାସାର ପରିସମାପ୍ତି ଘଟିଥିଲା । ଗରମ ନିଃଶ୍ୱାସ, ଝାଳ ଆକାଙ୍‌କ୍ଷିତ କମ୍ପନ ଭିତରେ ଦୁହେଁ ରୁଦ୍ଧ ହୋଇ ପଡ଼ିଥିଲେ ।

ଅନେକଗୁଡ଼ାଏ ଯୁଗ ବୋଧହୁଏ ବିତି ଯାଇଥିଲା ଇତି ମଧ୍ୟରେ । ସ୍ୱାଭାବିକ ହେବା ପରେ ଦେବ ଆଚାର୍ଯ୍ୟ ଦେଖିଲେ, ସେ ବସିଚନ୍ତି ପ୍ରଶସ୍ତ ପଲଙ୍କ ଉପରେ । ଘରର ଗୋଟିଏ କୋଣରେ, ତାଙ୍କ ଆଡ଼େ ପିଠି କରି ଠିଆ ହୋଇଚନ୍ତି ଶ୍ରୀମତୀ ସିହ୍ନା । ତାଙ୍କର ପରିଧାନ ଥିଲା ବିପର୍ଯ୍ୟସ୍ତ ଏବଂ ସେ ଦୁଇ ପାପୁଲିରେ ମୁହଁ ଢାଙ୍କିଥିଲେ ।

ଅବଶ ବୋଧ କରୁଥିବା ଦେବ ଆଚାର୍ଯ୍ୟ ବୁଝିପାରୁ ନ ଥିଲେ ଯା' ପରେ ତାଙ୍କର ଭୂମିକା କ'ଣ । ସେ ଉଠି ଆସିଲେ ଶ୍ରୀମତୀ ସିହ୍ନାଙ୍କ ପାଖକୁ । ତାଙ୍କ ପିଠି ଥାପୁଡ଼ାଇବାବେଳେ ସେ ବୁଲି ପଡ଼ିଲେ ଓ ସାମ୍ନାସାମ୍ନି ଠିଆ ହେଲେ । ଆଶ୍ଚର୍ଯ୍ୟ, ସେ କାନ୍ଦୁଥିଲେ । ତାଙ୍କ ଆଖିର କଜ୍ଜଳ ଲେସି ହୋଇ ଯାଇଥିଲା ଗୁଣ୍ଡି ପାଖରେ । ସେ ଦୁଇ ହାତରୁ ଗୁଡ଼ିଏ ସୁନାଚୁଡ଼ି ବାହାର କରି ଦେବ ଆଚାର୍ଯ୍ୟଙ୍କ ପାପୁଲି ଭିତରେ ରଖି କହିଲେ—"ତୁମ ପାଇଁ ମୋର ଉପହାର । ଶେଷ ଉପହାର ।"

ଦେବ ଆଚାର୍ଯ୍ୟଙ୍କୁ କିଛି କୁହାଇ ନ ଦେଇ ସେ କହିଲେ ଖୁବ୍ ନମ୍ର କିନ୍ତୁ ଦୃଢ଼ ସ୍ୱରରେ—"ଦେବ, ତୁମେ ମୋ ପାଇଁ ଗୋଟିଏ ଅଲଙ୍ଘନୀୟ ପ୍ରଲୋଭନ ହୋଇ ପଡ଼ିଚ । ତୁମର ନାମ ମୋ ପାଇଁ କାମନା ହୋଇ ପଡ଼ିଚ । ତୁମ ସନ୍ନିଧ୍ୟ ଭାବନା ହୋଇପଡ଼ିଚି ମୋ ପାଇଁ ପାପ ।" ଦୀର୍ଘଶ୍ୱାସ ତ୍ୟାଗ କରି ସେ କହିଲେ—"ତୁମେ ଏଠାରୁ ପଳାଅ । ମୋର ହିତାହିତ ଜ୍ଞାନ ଲୋପ ପାଇବା ପୂର୍ବରୁ ତୁମେ ପଳାଅ ଏଠୁ ।"

ଏତିକ କହିବାବେଳକୁ ତାଙ୍କ କଣ୍ଠସ୍ୱର ଅଶ୍ରୁଳ ହୋଇ ଯାଇଥିଲା । ପଲଙ୍କଧାରରେ ବସି, ଲୁଗା କାନିରେ ମୁହଁ ଘୋଡ଼ାଇ ସେ ନିଜର କୋହ ଅକ୍ତିଆର କରୁଥିଲେ । ଦେବ ଆଚାର୍ଯ୍ୟ ଫେରି ଆସିଥିଲେ ନିଜର ସ୍ଥିତି ଭିତରକୁ, ବାସ୍ତବତାର ବଳୟ ଭିତରକୁ । ସେ କିଛି କହିଲେ ନାହିଁ । ଶ୍ରୀମତୀ ସିହ୍ନା ଦେଖି ନ ପାରିବା ଭଳି ଚୁଡ଼ି ଗୁଡ଼ିକ ସେ ରଖିଦେଲେ ତକିଆ ତଳେ । ପାଣ୍ଡୁର ହସ ଛିଟିକି

ହୋଇ ଉଭେଇଗଲା ତାଙ୍କ ମୁହଁରୁ । ସ୍ୱପ୍ନର ନାରୀମୂର୍ତ୍ତିକୁ କ୍ଷଣକ ପାଇଁ ଦେଖି ସେ ବାହାରି ଆସିଲେ ସେହି ରୁମ୍‌ରୁ । ବାହାରି ଆସିଲେ ସେହି ଘରୁ ଓ ସେହି ସହରରୁ ।

ଗାଁର କେତେଜଣ ଘନିଷ୍ଠ ଲୋକଙ୍କ ପାଖରେ ଏଇ ଘଟଣା ବାରମ୍ବାର କହିବା ସତ୍ତ୍ୱେ ଦେବ ଆଗୃର୍ଯ୍ୟ ଆଦୌ କ୍ଲାନ୍ତ କମ୍ବା ବିରକ୍ତ ହେଉ ନ ଥିଲେ । ପରନ୍ତୁ ସେ ଘଟଣାଟି ଯେତିକ ବେଶୀ ଅତୀତ ହୋଇ ଯାଉଥିଲା, ତାହାର ଆବେଗାତ୍ମକ ଆବେଦନ ଆହୁରି ଶକ୍ତିଶାଳୀ ହେଉଥିଲା ତାଙ୍କ ପାଇଁ । ସେହି ଘଟଣାର ପୁନରାବୃତ୍ତି ଆଉ ସମ୍ଭବ ନୁହେଁ ବୋଲି ହୃଦ୍‌ବୋଧ ହେବା ଫଳରେ, ସେ ତାହାକୁ ସାଇତି ରଖିଥିଲେ ତାଙ୍କ ସ୍ମୃତିରେ ଜୀବନର ସର୍ବଶ୍ରେଷ୍ଠ ପ୍ରାପ୍ତି ବୋଲି ମନେ-କରି । ପୁଣି ସେହିଭଳି ନିବିଡ଼ ଆଲିଙ୍ଗନ ଆଉ ଭାଗ୍ୟରେ ନାହିଁ ବୋଲି ଭାବିବାମାତ୍ରେ ସେ ବ୍ୟାକୁଳତାର ସହିତ ତାହାକୁ ଖୋଜି ବୁଲୁଥିଲେ । ଏଥିପାଇଁ ସେହି ଅଭିଜ୍ଞତା ତାଙ୍କ ପାଇଁ ଥିଲା ପରିପୂର୍ଣ୍ଣତା ଓ ଶୂନ୍ୟତା, ପ୍ରାପ୍ତି ଓ ହତାଶା ।

ସେହି ଅଭିଜ୍ଞତାକୁ ବର୍ଣ୍ଣନା କରିବା ପରେ ଦେବ ଆଗୃର୍ଯ୍ୟ ଉଦାସ ଓ ନୀରବ ହୋଇ ପଡ଼ୁଥିଲେ ଦୀର୍ଘ ସମୟ ପାଇଁ । ତାଙ୍କ ଦୃଷ୍ଟିରୁ ଗାଁ ଲୋକେ, ରାସ୍ତା-ଘାଟ, ସାମନାରେ ଥିବା ଠାକୁରଙ୍କର ପ୍ରକାଣ୍ଡ ହାତା ଓ ଦୋକାନ ସମ୍ପୂର୍ଣ୍ଣ ଭାବେ ଅଦୃଶ୍ୟ ହୋଇ ଯାଉଥିଲା । ସେହି ଅଭିଜ୍ଞତା ଓ ତା'ର ସ୍ମୃତି ହିଁ ଥିଲା ଏକମାତ୍ର ସତ୍ୟ ତାଙ୍କ ପାଇଁ । ତାଙ୍କ ଜୀବନର ତାହା ହିଁ ଥିଲା ଗୌରବମୟ ଯଥାର୍ଥତା ।

ତାଙ୍କୁ ପଗୃରିବାକୁ ପଡ଼େ, ତା'ପରେ ହେଲା କ'ଣ । ସେଇ ସହରରୁ ଫେରି ଆହୁରି ଦୁଇ-ତିନିବର୍ଷ ସେ କଟାଇଲେ କେଉଁଠି ଓ କିପରି । ଯଦି ଇଚ୍ଛା ହୁଏ, ତେବେ ସେ କହନ୍ତି । ଦୁଇ-ତିନି ବର୍ଷର ସ୍ମୃତିର ବର୍ଣ୍ଣନା ପାଞ୍ଚ-ଦଶ ମିନିଟ୍ ମଧ୍ୟରେ ଶେଷ ହୋଇଯାଏ ବିନା ଆବେଗ ଓ ଉତ୍ସାହରେ । ବେଳେବେଳେ ସେ କହନ୍ତି—''ତା'ପରେ ଆଉ କ'ଣ ହେଲା ? ହେବ ପୁଣି କ'ଣ ? ସବୁ ମୁହୂର୍ତ୍ତ, ସବୁ ଘଟଣା କ'ଣ କେବେ ଚିରଦିନ ପାଇଁ ସ୍ମୃତିର କାଗଜରେ ଲେଖି ହୋଇପାରେ ?

ପଚାଶ-ଷାଠିଏ ବର୍ଷର ଲୋକଙ୍କୁ ଯଦି ତା ଜୀବନର ଦଶ-ବାରଟା ବିଶିଷ୍ଟ ଘଟଣା ସମ୍ପର୍କରେ ପଚାରିବ, ତେବେ ତାଙ୍କୁ ଅନ୍ତ୍ରୋଳିବାକୁ ପଡ଼ିବ ତା ସ୍ମୃତିକୁ । ପାଞ୍ଚ-ଛ'ଟା ଘଟଣା ହୁଏତ ତା'ପାଇଁ ବିଶିଷ୍ଟ ଘଟଣା ହୋଇ-ପାରେ । ପ୍ରେମ କରିବା, ବାହା ହେବା, ପିଲାପିଲିଙ୍କର ବାପା ହେବା । ତା'ପରେ ଆଉ କ'ଣ ? ଆଉସବୁ ହୁଏତ ମାମୁଲି, ବିଲ୍‌କୁଲ୍ ଫାଲ୍‌ତୁ । ତା ମାନେ ଜଣଙ୍କୁ ଏତେଗୁଡ଼ାଏ ବର୍ଷ ବଞ୍ଚି ରହିବାକୁ ପଡ଼େ ପାଞ୍ଚ-ଛ'ଟା ବିଶିଷ୍ଟ ଘଟଣା ଅଙ୍ଗେ ନିଭେଇବା ସକାଶେ । ହାରମଜାଦା ଜୀବନଠାରୁ ବଳି ବଡ଼ ପ୍ରତାରକ ଆଉ କିଏ ଅଛି ? ଖାଲି ଧୋକାରୁଥିବ ଆଗକୁ । ଆଶା ଆଉ ସମ୍ଭାବନା ସୃଷ୍ଟି କରି ଚାଲିଥିବ ମନରେ । ଦେଖିଲାବେଳକୁ କିଛି ନାହିଁ । ହାତ-ଗୋଡ଼ ଖଣ୍ଡିଆ ହୁଏ, ରକ୍ତ ବାହାରେ, ଯନ୍ତ୍ରଣା ହୁଏ, ଖାଲି କାନ୍ଦିବାକୁ ମନ ହୁଏ ।"

ଦେବ ଆଚାର୍ଯ୍ୟ ଏଇଭଳି କେତୋଟି ତତ୍ତ୍ୱ କଥା କେଜାଣି କେଉଁଠୁ ଶିଖିଥିଲେ । ଜୀବନ ସହିତ ଭଲ ଭାବରେ ଏଯାଏଁ ପରିଚୟ ହୋଇ ନ ଥିବା ଦେବ ଆଚାର୍ଯ୍ୟଙ୍କ ତୁଣ୍ଡରୁ ଏକଥା ଝରିଆସେ, ପ୍ରଜ୍ଞାଶୀଳ ଓ ଅନୁଭୂତିସମ୍ପନ୍ନ ଜଣେ ଦିବ୍ୟଦ୍ରଷ୍ଟାଙ୍କ ଉକ୍ତି ଭଳି ।

କିନ୍ତୁ ସେ କହି ଚାଲିଲେ ସେ ସହରରୁ ଫେରିବା ପରେ କ'ଣ ସବୁ ହେଲା ।

ରାତି ସେତେବେଳେ କେତେ ହେବ କେଜାଣି ? ଦେବ ଆଚାର୍ଯ୍ୟ ପ୍ଲାଟ୍‌ଫର୍ମ ଉପରେ ଠିଆ ହୋଇ ଦେଖିଲେ, ସେଇଟା ପଡ଼ି ରହିଛି ମନ୍ଥରଗ୍ରସ୍ତ କଆଁର ଭଳି, ଅଥର୍ବ ଓ ନିଦ୍ରିତ ହୋଇ । ଗୁଡ଼ାଏ ଘନ ଘନ ଦୀର୍ଘଶ୍ୱାସ । ଶୁଖିଲା ଓଠ । ଅବଶ ପାଦ । ଦୁକ୍ ଦୁକ୍ ଛାତି । ଗୋଟାଏ ଆଶା ନେଇ ସେ ଚାହିଁଲେ ଚାରିଆଡ଼କୁ । ଥରେ ନୁହେଁ, ଅନେକ ଥର । ତାଙ୍କର ମନ କହୁଥିଲା, ମୃତପ୍ରାୟ ଦୋତାଲା କୋଠା ଓ ସଢ଼ି ଯାଉଥିବା ରାଜକାପୁତାର ଭବିଷ୍ୟତହୀନତାରୁ ସେଇ ନାରୀମୂର୍ତ୍ତି ଜଣକ ବାହାରି ଆସିବ । ବାସ୍ତବିକ୍ ଗୋଟାଏ ରୁଦ୍ଧ ପରିବେଶର ପବନ ଭିତରେ ରହି ସେ ଯେପରି ନିଜ ଜୀବନର ସମସ୍ତ ଅର୍ଥ ଓ ଉଦ୍ଦେଶ୍ୟ ହରାଇ ବସୁଛି । ସେ ମୁକ୍ତ ପବନ ଭିତରକୁ ଚାଲି ଆସିବା ଉଚିତ । ନୀରବ ଓ ପ୍ରତିବାଦ-ହୀନ ହୋଇ ସେ ନିଜକୁ ନଷ୍ଟ କରିଦେବା ଠିକ୍ ନୁହେଁ ।

ଏତକ ଭାବବାମାନେ ଦେବ ଆଚାର୍ଯ୍ୟ ଅନୁଭବ କଲେ, ସେ ଠିଆ ହୋଇଚି ତାଙ୍କ ପାଖରେ, ଅସ୍ତବ୍ୟସ୍ତ ପରିଧାନ ନେଇ । ସେ ପୁଣି ଅନୁଭବ କଲେ ଆଲିଙ୍ଗନର ଆଶ୍ଳେଷ । ଦୁଇହାତ ପ୍ରସାରିତ କରିବା-ମାନେ ସେହି ସ୍ୱପ୍ନ ଆସି ଯାଉଥିଲି ତାଙ୍କ ପାଖକୁ । ସେ ଅସ୍ଥିର, ବିବ୍ରତ ହୋଇ ପଡ଼ିଲେ । ଭାବିଲେ, ଫଳାଫଳ ଯାହାହେଉ ପଛକେ, ସେ ପୁଣି ଫେରିଯିବେ ସେହି ଘର ଭିତରକୁ ।

ଆପାତତଃ ସେ ତାହା ହିଁ କରୁଥିଲେ; କିନ୍ତୁ ଗୋଡ଼ ତାଙ୍କର ଗତିହୀନ ହୋଇ ପଡ଼ିଲା । ମୁଣ୍ଡ ତଳେ ବ୍ୟାଗ୍ ରଖି ସେ ପ୍ଲାଟ୍‌ଫର୍ମ ଉପରେ ଶୋଇ ପଡ଼ିଲେ । ଆଖି ଖୋଲି ରଖି ସେ କେବଳ ଦେଖିବାକୁ ଲାଗିଲେ ହାତଛଡ଼ା ହୋଇ ଯାଇଥିବା ସେହି ସ୍ୱପ୍ନକୁ ।

ଟ୍ରେନ୍ ଆସିଲା । ସେ ଚଢ଼ିଗଲେ ଗୋଟିଏ ଡବା ଭିତରକୁ । ତାଙ୍କ ଯାତ୍ରାର କୌଣସି ଦିଗ ନ ଥିଲା, କୌଣସି ଲକ୍ଷ୍ୟ ନ ଥିଲା । ଟ୍ରେନ ଆଗକୁ ଗତି କରିବା ସଙ୍ଗେ ସଙ୍ଗେ ସେ ଏତେ ବ୍ୟାକୁଳ ଓ ବିଚ୍ଛିନ୍ନବୋଧ ମନେକଲେ ଯେ, ମାତ୍ର ଦୁଇଟି ଷ୍ଟେସନ ପରେ ଓହ୍ଲାଇ ପଡ଼ିଲେ ତଳକୁ । ସେ ଆଦୌ ଦୂରକୁ ଯିବାପାଇଁ ଚାହୁଁ ନ ଥିଲେ । ଦିନେ-ଦୁଇଦିନ ପରେ ସେ ପୁଣି ଫେରିଯିବା ପାଇଁ ଯୋଜନା କରୁଥିଲେ ସେହି ବୈକୁଣ୍ଠକୁ । ସେହି ଦୋଚାଳିକୋଠା ସ୍ୱର୍ଗରେ ପରିଣତ ହୋଇ ଯାଉଥିଲା । ସଢ଼ି ଯାଉଥିବା ଗଜକାପୂତା ହୋଇ ଯାଉଥିଲା ସମସ୍ତ ଐଶ୍ୱର୍ଯ୍ୟ ।

ଦିନେ-ଦୁଇଦିନ ପରେ ଗୋଟିଏ ହଷ୍ଟେଲରେ ପୂଝାରିର ଭୂମିକା । ତିନି ଚାରି ମାସ ପରେ ଜଣେ ବ୍ୟବସାୟୀଙ୍କ ଘର । ତା'ପରେ ଗୋଟାଏ ହୋଟେଲ । ସମୟ ଗଡ଼ି ଯାଉଥିଲା ଓ ସ୍ୱପ୍ନ ଦୂରେଇ ଯାଉଥିଲା । ସେହି ସ୍ୱପ୍ନ ଓ ତାଙ୍କ ମଧ୍ୟରେ ରହିଥିଲା ଅନେକ ଦୀର୍ଘଶ୍ୱାସ ଓ ନିଜ ମନକୁ ଦେଇଥିବା ଅଯଥା ପ୍ରତିଶ୍ରୁତି ।

ଦେବ ଆଚାର୍ଯ୍ୟ ବୁଲିଥିଲେ ଏଣେ ତେଣେ । ବୁଲିଥିଲେ ଅଜ୍ଞାତର ସେହି ଆଲିଙ୍ଗନ ପାଇବାକୁ । ରାସ୍ତାରେ ଗଲାବେଳେ, ଶୋଇଥିବାବେଳେ, ଖାଉଥିବାବେଳେ ସେ ଭାବନ୍ତି, ହଠାତ୍ ଯଦି ଶ୍ରୀମତୀ ସିହ୍ନା ଏଇଠି ଉଭା ହୋଇଯାଆନ୍ତେ ! ମୁଁ ତୁମକୁ ଖୋଜି ଖୋଜି ହାଲିଆ ହୋଇ ପଡ଼ିଲଣି ବୋଲି ଅଭିଯୋଗ କରନ୍ତେ !

ତା'ପରେ ଆକସ୍ମିକ ଭାବରେ ଗୋଟାଏ ଯାତ୍ରାପାର୍ଟିରେ ତାଙ୍କର ଯୋଗଦାନ । ସେ ବୁଝି ଥିଲେ ଯେ, ସେ କ୍ରମେ କ୍ରମେ ଦୂରେଇ ଯାଉଚନ୍ତି ଫେରିପାଇବାକୁ ଚାହୁଁଥିବା ସ୍ୱପ୍ନ ପାଖରୁ । ନିଜ ଅଜାଣତରେ ସେ ନିଜ ରାଜ୍ୟଆଡ଼େ ଆଗେଇ ଯାଉଥିଲେ; କିନ୍ତୁ ସେ କୌଣସିମତେ

ନିଜକୁ ପରିପ୍ରକାଶ କରିବାକୁ ଚାହୁଁଥିଲେ । ଏତେ ପୁଞ୍ଜୀଭୂତ ଆହତ ଆବେଗ ନେଇ ବଞ୍ଚି ରହିବା ଘରି କଷ୍ଟକର ଥିଲା ତାଙ୍କ ପାଇଁ ।

ଗୋଟାଏ ଷ୍ଟେସନ ପାଖରେ ପାଞ୍ଚରାତି ଯାତ୍ରା ପରେ ଦଳଟି ଫେରି ଯାଉଥିଲା ନିଜ ସ୍ଥାନକୁ । ତା' ପୂର୍ବରୁ ସେ ସାକ୍ଷାତ କରିଥିଲେ ଅପେରା ପାର୍ଟିର ସ୍ୱୟଂ ମାଲିକଙ୍କୁ । ସେଇଟା ସମ୍ଭବତଃ ଥିଲା ଗ୍ରୀନ୍‌ରୁମ୍ । ରାତିର ଅଭିନୟ ପରେ ସମସ୍ତେ ପାଣ୍ଡୁର ଓ ବିବର୍ଣ୍ଣ ଦେଖାଯାଉଥାନ୍ତି ଦିନ ଆଲୁଅରେ । କେତେଜଣ ଲୋକ ମଞ୍ଚରେ ସଜା ଯାଇଥିବା ଜିନିଷପତ୍ର ଖୋଲି ଖୋଲି କରି ସଜାଡୁଥାନ୍ତି । ସେ କାମ ସରିଗଲେ ସନ୍ଧ୍ୟା ସୁଦ୍ଧା ଟ୍ରକ୍ ଯୋଗେ ଫେରିଯିବା କଥା ।

ଭଦ୍ରଲୋକ ପଚାରିଲେ—"କି ପାର୍ଟ କରିପାରିବ ତୁମେ ?"

—"ଯେ କୌଣସି ପାର୍ଟ !" ଆତ୍ମବିଶ୍ୱାସ ଭରପୂର ଜବାବ ଆସିଲା ଦେବ ଆଚାର୍ଯ୍ୟଙ୍କ ଠାରୁ ।

—"ଯଥା ?"

—"ଯଥା ରଜା, ରାଣୀ, ସେନାପତି, ଜୋକର । ଭଲ ଡୁଏଟ୍ ଗାଇପାରେ । କମିକ୍ ରୋଲ୍ ବି ନେଇ ପାରିବି । ହାର୍ମୋନିୟମ, ଢୋଲକି ମଧ୍ୟ ବଜାଇ ପାରିବି ।" ଦେବ ଆଚାର୍ଯ୍ୟ ଅହଙ୍କାର ନୁହେଁ; ଆଗ ଭଳି ଆତ୍ମବିଶ୍ୱାସର ସହିତ ଜବାବ ଦେଲେ ।

ଯାତ୍ରାପାର୍ଟିର ମାଲିକ ବୋଧହୁଏ ବିଶ୍ୱାସ କଲେ ନାହିଁ । ସେ ଚାହିଁଲେ ଦୀର୍ଘ ସୌମ୍ୟ ଦେବ ଆଚାର୍ଯ୍ୟଙ୍କୁ । ପରିହାସ କରୁ ନ ଥିବା ମୁହଁକୁ । ମୁଣ୍ଡ କୁଣ୍ଡାଇଲେ । ବିଡ଼ି ଲଗେଇଲେ । ଧୂଆଁ ଗୁଡ଼ େ କହିଲେ—"ଭଲ କଥା । ତେବେ ତୁମକୁ ରାଣୀ କଲେ ଚଳିବ କମିତି ? ତୁମର ରଜା ହେବା ପାଇଁ ଆମ ଦଳରେ କେହି ନାହାନ୍ତି ।" ପୁଣି ମାରିବସା । କହିଲେ—"ଆମର ଏଇ ଯାତ୍ରାପାର୍ଟି ଓଡ଼ିଶାର ସବୁଠୁ ଭଲ ପାର୍ଟି । ତୁମେ ଗୋଟିଏ କାମ କର । ଭାବିନିଅ ଯେ, ତୁମେ ଗୋଟେ ଜଙ୍ଗଲରେ ତୁମ ପ୍ରେମିକାକୁ ଖୋଜୁଚ । ସେଇଠି କୋଉଠି ହିଂସ୍ର ଜନ୍ତୁ ଥାଇପାରନ୍ତି । ଭିଲେନ୍ ତ ଧରିଚି ତୁମ ପିଛା । ତୁମ ଦେହ ରକ୍ତାକ୍ତ । ମନରୁ ଗୋଟାଏ ଡାଇଲଗ୍ ବାହାର କରି ଦୃଶ୍ୟଟିକୁ ଅଭିନୟ କଲ ! ଦେଖିବା !"

ଏଇଭଳି ଗୋଟିଏ ପରୀକ୍ଷା ନେବାକୁ ଯାଉଥିବାରୁ ଦେବ ଆଚାର୍ଯ୍ୟ କ୍ରୁଦ୍ଧଙ୍କ ହୋଇପଡ଼ିଲେ ବଡ଼ ଝାଣ୍ଟୁଥିବା ଯାତ୍ରା ମାଲିକଙ୍କ ପ୍ରତି । ଘରଆଡ଼କୁ ଯାହିଁ ଦେଖିଲେ ବିଭିନ୍ନ ବୟସର କୋଡ଼ିଏ ପଚିଶଟି ଉତ୍ସୁକ ମୁହଁ ଚାହିଁଛନ୍ତି ଅନେଇଚ ।

ଦେବ ଆଚାର୍ଯ୍ୟ ସେଇ ଯାତ୍ରା ଦଳରେ ପ୍ରାୟ ଦେଢ଼ ବର୍ଷ ରହିଥିଲେ ମଧ୍ୟ ବିନା ମେକ୍‌ଅପ ଓ ରଙ୍ଗମଞ୍ଚରେ ସେ ସେଦିନ ଯେଉଁଭଳି ଅଭିନୟ କରିଥିଲେ, ସେଇ ପର୍ଯ୍ୟାୟକୁ ପହଞ୍ଚି ପାରି ନ ଥିଲେ ଆଦୌ । ପ୍ରେମିକାକୁ ଖୋଜିବା ଅର୍ଥ ଶ୍ରୀମତୀ ସିନ୍ଧାଙ୍କୁ ହିଁ ଖୋଜିବା ନିଜ ଜୀବନକୁ ବିପର୍ଯ୍ୟସ୍ତ କରି । ଅଭିନୟ ପରେ ସେ ଠିଆ ହେଲେ ଏବଂ ଆଖିର ଲୁହ ପୋଛିଲେ ।

ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇଥିଲେ ଏଇ ଗୋଟିଏ ଡାଇଲଗ୍‌ରେ । ବେଶ୍ କିଛି ସମୟ ପାଇଁ ଲିଭି ଯାଇଥିବା ବିଡ଼ି ହାତରେ ଧରି ଯାତ୍ରା ମାଲିକ ବସି ରହିଥିଲେ । ଧୋତି କାନିରେ ମୁହଁ ପୋଛି ପଚାରିଲେ—"ତୁମେ ବାସ୍ତବିକ ଭଲ ଅଭିନୟ କରୁଚ । ଏତେ କଥା ଶିଖିଲ କେଉଁଠି ?"

—"କେଉଁ କଥା ?" ଦେବ ଆଚାର୍ଯ୍ୟ ପଚାରିଲେ ।

—"ହାର୍ମୋନିୟମ, ଢୋଲକ ଇତ୍ୟାଦି ବଜାଇବା । ବିଭିନ୍ନ ପ୍ରକାର ପାର୍ଟ ନେବା ଇତ୍ୟାଦି ।" କଥାଟା ସେ ସ୍ପଷ୍ଟ କରିଦେଲେ ।

—"ଆମ ଗାଁରେ ଗ୍ରେଟକାଟର ଯାତ୍ରାପାର୍ଟି ଅଛି ।" ଦେବ ଆଚାର୍ଯ୍ୟ ସ୍ୱୀକାର କଲେ । "ଏବେ ଅଛି କି ନା, କେଜାଣି ? ମୁଁ ମିଶିଥିଲି । ମରୁଡ଼ି ପଡ଼ିଲା । ଗାଁ ଛାଡ଼ି ବୁଲୁଚି ଦୁଇ-ତିନି ବର୍ଷ ହେଲା ।" ଏତେ କଥା କହିବା ବୋଧହୁଏ ଉଚିତ ନ ଥିଲା । ସେ ସଚେତନ ହୋଇପଡ଼ିଲେ ।

ଯାତ୍ରାପାର୍ଟିରେ ମିଶିବା ଥିଲା ଗୋଟାଏ ସଉକ; ନିଜକୁ ପରିପ୍ରକାଶ କରିବା ପାଇଁ ତାହା ଥିଲା ଗୋଟାଏ ମାଧ୍ୟମ । ଦେବ ଆଚାର୍ଯ୍ୟ ହାଲୁକା ଅନୁଭବ କରୁଥିଲେ । ମାତ୍ର ଅଳ୍ପ ଦିନ ମଧ୍ୟରେ ତାଙ୍କୁ ହିଁ କେନ୍ଦ୍ରକରି

ସେହି ଯାତ୍ରା ଦଳ ଅପ୍ରତିଦ୍ୱନ୍ଦୀ ହୋଇପଡ଼ିଥିଲା । ବିଶେଷତଃ କରୁଣ ଦୃଶ୍ୟ ଅଭିନୟ କରିବାରେ ସେ ଥିଲେ ସିଦ୍ଧହସ୍ତ । ରାତି ପରେ ରାତି ଗୋଟିଏ ବହି ଅଭିନୀତ ହେଲେ ମଧ୍ୟ ସେ ବିରକ୍ତ କିମ୍ବା କ୍ଲାନ୍ତ ଅନୁଭବ କରୁ ନ ଥିଲେ । ସେ କାନ୍ଦି ପାରୁଥିଲେ ଅକ୍ଳେଶରେ । ଅଭିଭୂତ କରି ପକାଉଥିଲେ ଦର୍ଶକମାନଙ୍କୁ । ଉପହାର ସ୍ୱରୂପ ତାଙ୍କୁ ମିଳୁଥିଲା ଅଜସ୍ର କରତାଳି, ମେଡ଼ାଲ ଓ ଅନ୍ୟାନ୍ୟ ଉପହାର । ଆଚାର୍ଯ୍ୟତଃ ସେ ମାନସିକ ସ୍ତରରେ ମାତାଲ ଅବସ୍ଥାରେ ହିଁ ଥିଲେ । ରଙ୍ଗମଞ୍ଚ ଉପରେ ସେ ଉଚ୍ଚାରଣ କରୁଥିବା ଡାଇଲଗ୍‌ଗୁଡ଼ିକ ଥିଲା ଗୋଟାଏ ବାର୍ତ୍ତା, ଗୋଟାଏ ପ୍ରରୋଚନା ଏବଂ ଗୋଟାଏ ଆହ୍ୱାନ । "ଆ, ଚାଲିଆ, ପୁଣି ଥରେ ଏଇ ପ୍ରସାରିତ ହାତର ବାହୁବଳୟ ଭିତରକୁ । ତୋ ନିଃଶ୍ୱାସ ଫେରିଆସୁ ମୋ ଗ୍ରୀବା ଉପରକୁ । ତୋ କେଶର ବାସ୍ନା ପୁଣି ଥରେ ମୋତେ ବିମୋହିତ କରୁ । ତୁ ରୂପାନ୍ତରିତ ହୋଇ ଯା, ସ୍ୱପ୍ନରୁ ପ୍ରାପ୍ତିକୁ ।"

କିନ୍ତୁ ବେଳେବେଳେ ନିଃସଙ୍ଗ ମୁହୂର୍ତ୍ତରେ ଦେବ ଆଚାର୍ଯ୍ୟଙ୍କ ଗୋଡ଼ରୁ ଉପରକୁ ଉଠିଆସେ ଗୋଟାଏ ଥଣ୍ଡା । ସେ ଥଣ୍ଡା ତାଙ୍କର ସମସ୍ତ ସବୁଜ ଦିବାସ୍ୱପ୍ନକୁ ଚାପିଦିଏ । ତାଙ୍କର ରକ୍ତ ସଞ୍ଚାଳନ ଓ ନିଃଶ୍ୱାସ-ପ୍ରଶ୍ୱାସ ଯେମିତି ଅଥର୍ବ ହୋଇଯାଏ ସେତେବେଳେ । ବିମର୍ଷ ରାଗିଣୀ ତାଙ୍କ ଭିତରର କେଉଁ ନିର୍ଜନ ଶୂନ୍ୟତା ଭିତରୁ ସ୍ପଷ୍ଟ ଶୁଭିଯାଏ ଏବଂ ଅଳ୍ପ କେତୋଟି ମୁହୂର୍ତ୍ତ ମଧ୍ୟରେ ଏକ ଭୟଙ୍କର ଗର୍ଜନରେ ପରିଣତ ହୋଇଯାଏ । ସେ ଅସ୍ଥିର ହୋଇ କେବଳ ଇତସ୍ତତଃ ହୁଅନ୍ତି । କେହି ଯେପରି ଗୁରୁତର ପ୍ରଶ୍ନ ପଚାରି ବିବ୍ରତ କରିପକାଏ ତାଙ୍କୁ—କେତେ ଦିନ ? କେତେ ଦିନ ଧରି ତୁ ଏମିତି ଧାଇଁ ପଳାଉଥିବୁ ନିଜ ପାଖରୁ ? କେତେ ଦିନ ଧରି ତୁ ଠକୁଥିବୁ ନିଜକୁ ? ତୁ ଧାଉଁଚି କୁଆଡ଼େ ? କାହିଁକି ଏମିତି ବଦଖର୍ଚ୍ଚ କରୁଚୁ ନିଜକୁ ?

ପଳେଇ ଯିବି । ନା, ଆଉ ନୁହେଁ । ପଳେଇ ଯିବି ଏଥର । ଅକଥନୀୟ କ୍ଳାନ୍ତି । ବିରକ୍ତି । ନିଜ ଉପରେ କ୍ରୋଧ । ପୃଥିବୀ ପ୍ରତି ଅଭିମାନ । କେତେ ଦିନ ଏମିତି ଚାଲିବ ?

ଦେବ ଆଚାର୍ଯ୍ୟ ଦିନେ ବ୍ୟାଗ୍ ସଜାଡ଼ିଲେ ଏବଂ ଘୋଷଣା କଲେ—"ମୁଁ ଯାଉଚି ଗାଁକୁ ।"

କୌଣସି ନୋଟିସ ନ ଥିଲା ଏ ସମ୍ବନ୍ଧରେ । ଘୋଷଣାଟି ଥିଲା ଅବିଶ୍ୱାସ୍ୟ । ସମସ୍ତେ କେବଳ ହସିଲେ, ନର୍ଭସ୍ ହୋଇ ପଡ଼ିଲେ ଟିକଏ । ଏହା ମଧ୍ୟ ଗୋଟାଏ ଅଭିନୟ ହୋଇପାରେ ।

—"ଏଇଟା ଅଭିନୟ ନୁହେଁ ।" ଦେବ ଆଚାର୍ଯ୍ୟ ଦୃଢ଼ତାର ସହିତ ପରିଷ୍କାର କରିବାକୁ ଚେଷ୍ଟା କଲେ ନିଜର ଉଦ୍ଦେଶ୍ୟ । "ଏଇଟା ଅଭିନୟ ନୁହେଁ । ସେ ପୁନରାବୃତ୍ତି କଲେ ନିଜ କଥାର ଏବଂ ଟିକଏ ନୀରବତା ପରେ କହିଲେ—"ଯଥେଷ୍ଟ ହେଲା ରଙ୍ଗମଞ୍ଚ ଉପରେ ପାଉଡ଼ର ଲଗାଇ ପୋଷାକ ପିନ୍ଧି ଅଭିନୟ କରିବା । ମୁଁ ରଙ୍ଗମଞ୍ଚରୁ ନିଜକୁ ମୁକ୍ତ କରିବାକୁ ଚାହୁଁଛି । ଆରଶିରେ ମେକ୍ଅପ୍-ବିହୀନ ନିଜର ମୁହଁ ଦେଖିବାକୁ ଚାହୁଁଛି ।"

ଦେବ ଆଚାର୍ଯ୍ୟଙ୍କୁ କେହି ପ୍ରତିରୋଧ କଲେ ନାହିଁ; କରିବା ଆବଶ୍ୟକ ନ ଥିଲା ତେବେ, ଏତେ ଦିନ ଧରି ଯେଉଁମାନଙ୍କ ସହିତ ଷ୍ଟେଜ୍ ଉପରେ ସେ ଅଭିନୟ କରୁଥିଲେ, ସେମାନଙ୍କଠାରୁ ବିଦାୟ ନେବାବେଳେ ଗୋଡ଼ ତାଙ୍କର ଛନ୍ଦି ହେଉଥିଲା । ତାଙ୍କର ଭାବନା-ଶକ୍ତି ଜଖମ ହୋଇ ଯାଇଥିଲା ସତେ ଯେପରି । ସେ ପ୍ରାୟ ଫେରି ଆସୁଥିଲେ; କିନ୍ତୁ ନିଜକୁ ଏକଜୁଟ କରି ଆଗେଇ ଚାଲିଲେ ସେ ।

ହାଓଡ଼ା ଷ୍ଟେସନ । ସତେ ଯେପରି ଏକ ନିର୍ଦ୍ଦିଷ୍ଟ ଘରକୁ ଯିବାରେ ସେ ଅଯଥା ଡେରି କରୁଛନ୍ତି । କେହି ଜଣେ ସତେଅବା ତାଙ୍କର ଫେରିବା ବାଟକୁ ଉତ୍କଣ୍ଠାର ସହିତ ଅପେକ୍ଷା କରୁଚି ଏବଂ ତାଙ୍କର ବିଳମ୍ବ କିଛି ଗୋଟାଏ ଅଘଟଣ ସୃଷ୍ଟିକରି ଦେଇପାରେ । ଅପରାହ୍ଣର ଝାଉଁଳି ଯାଉଥିବା ଖରା ମାଖି ହୋଇ ଦୋ'ତାଲା କୋଠାଟା ଠିଆ ହୋଇଥିଲା ଆଗଭଳି ନୀରବରେ, ଅନ୍ୟମନସ୍କ ହୋଇ । ସାହସ ସଂଗ୍ରହ କରିବା ଦରକାର ନ ଥିଲା । ଜରୁରୀ ଗତିଶୀଳତା ନେଇ ଦେବ ଆଚାର୍ଯ୍ୟ ପାଖରେ ପହଞ୍ଚି ଦେଖିଲେ, କେହି କୁଆଡ଼େ ନାହିଁ । କବାଟ ଦେହରୁ ଝୁଲୁଥିବା କେତେଟା ତାଲା ଅଲିଖିତ ନୋଟିସ ଭଳି ଘୋଷଣା କରୁଥିଲେ ଯେ, କେହି ନାହାନ୍ତି । କୁଆଡ଼େ କେଜାଣି ପଳେଇ ଯାଇଚନ୍ତି ।

ବସ୍ଷ୍ଟାଣ୍ଡ୍ରେ ଓହ୍ଲାଇବା ବେଳକୁ ଦିନ ବାରଟା ପାଖାପାଖି । ଚାରିବର୍ଷ ଭିତରେ ସେମିତି କିଛି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟି

ନାହିଁ । ଗୋଟାଏ ଦୁଇଟା ଅଧିକ ଦୋକାନ ଯାହା ଖୋଲିଚି । ଦେବ ଆଚାର୍ଯ୍ୟ ପାଣି ପିଇଲେ, ମୁହଁ-ହାତ ଧୋଇ ହୋଇ ବସିଲେ ଗୋଟାଏ ବେଞ୍ଚ ଉପରେ । ତା'ପରେ ଗଲେ ତାରଣୀ ଦର୍ଶନ କରିବା ପାଇଁ । ସେଠାରେ ଉପସ୍ଥିତ ଥିବା ଲୋକମାନଙ୍କ ଉପରୁ ଦୃଷ୍ଟି ବୁଲାଇ ଆଣିଲେ । ଗାଁ'ରୁ କେହି ନ ଥିଲେ ସେମାନଙ୍କ ଗହଣରେ । ବୁଦୁବୁଦୁକଆ ଶାଳବଣ । କେତେକ ସ୍ଥାନ ସଫା ହୋଇ କଆଶ କରାଯାଇଚି । ପୋଲ ନ ଥିବା ଶୁଖିଲା ନଈ । ଗାଈ-ଛେଳି ଚରଉଥିବା ଟୋକାମାନଙ୍କର ଗୀତ, ଉତ୍ସାହ ଭରପୂର କୌତୁକ । ଅସଜଡ଼ା କୁର୍ଣ୍ଣ ରାସ୍ତା । ନୀରବତା ।

ଗାଁରେ ପହଞ୍ଚିବା ବେଳକୁ ତିନଟା ପାଖାପାଖି । ବଉଳଗଛ ମୂଳେ ଦେବ ଆଚାର୍ଯ୍ୟ ଠିଆ ହେଲେ । ଏ ପାଖରେ ଠାକୁରଙ୍କର କୋଠାଘର । ଅନ୍ୟ ପାଖରେ ଘନଶ୍ୟାମ ଦାଦାଙ୍କର ଗୁହାଳ । ଗୋଟାଏ ଗାଈ ଦନେ ଦୁଇଦନ ହେବ ବାଛୁରୀ ଜନ୍ମ କରିଚି । ଗାଈ ସାମନାରେ ରହିଚି ବଡ଼ାଏ ସବୁଜ ଘାସ । ବାଛୁରୀ ମା' କ୍ଷୀର ପିଉଚି ଓ ଲାଞ୍ଜ ସାହାଯ୍ୟରେ ମାଛି ହୁରୁଉଡ଼ଉଚି । ବେକ ବଙ୍କେଇ ଗାଈ ଚାଟୁଚି ବାଛୁରୀ ଦେହ ।

ଦେବ ଆଚାର୍ଯ୍ୟ ମନକୁମନ କହିଲେ, 'ମୁଁ ଗାଁରେ ପହଞ୍ଚି ଯାଇଚି ।'

ବଡ଼ ଘାଇ ଅଚ୍ୟୁତାନନ୍ଦ ଆଉ ଗୋଟାଏ ଉହଳୁ ଉଠିଯାଇଥିଲେ ବୋଲି ତାଙ୍କୁ ଜଣା ନ ଥିଲା । ପୁରୁଣା ଘର ପାଖରେ ପହଞ୍ଚି ଦେଖିଲେ, କୁଷ୍ଠରୋଗୀର ଆଙ୍ଗୁଳି ଭଳି ଘର କାନ୍ଥର ଧ୍ୱଂସାବଶେଷ ତରଳି ଯାଉଚି ଆସ୍ତେ ଆସ୍ତେ । —"ମୁଁ ଗାଁରେ ପହଞ୍ଚି ଯାଇଚି ।" ଦେବ ଆଚାର୍ଯ୍ୟ ଟିକିଏ ଉଚ୍ଚ ସ୍ୱରରେ କହିଲେ । ଅନ୍ୟ କାହାକୁ ଜଣେଇବା ପାଇଁ ନୁହେଁ, ନିଜର ହୃଦ୍‌ବୋଧ ହେବା ପାଇଁ ସେ ପୁନରାବୃତ୍ତି କଲେ—ମୁଁ ଗାଁରେ ପହଞ୍ଚି ଯାଇଚି । ଚାରି ବର୍ଷର ଅନୁପସ୍ଥିତି ପରେ ।

ତାଙ୍କ ନାଁ ବାଇଧର ପାଣି । ଘନଶ୍ୟାମ ଦାଦାଙ୍କ ଘରୁ ଆସିଥିବା ଜଳଖିଆ ଖାଇ ଓ ସର୍ବତ ପିଇ ସେ ବସିଥିଲେ ଠାକୁରଙ୍କ କୋଠାଘର ବାରନ୍ଦାରେ, ଗୋଟାଏ ଚୌକି ଉପରେ । ପିନ୍ଧିଥିଲେ ଧୋତି ଓ କମିଜ ।

ବାରନ୍ଦା ଉପରେ ଗୋଟାଏ ପିଲର୍ ଉପରେ ଡେରି ହୋଇ ଠିଆ ହୋଇଥିଲା ତାଙ୍କର ସାଇକେଲ । କେରିଅର୍ ଉପରେ ତାଙ୍କର ଟୋପି ଥୁଆ ହୋଇଥିଲା । ଗାଁ ଠାରୁ ଚାରି କିଲୋମିଟର ଦୂରରେ ଅବସ୍ଥାନ କରୁଥିବା ଫରେଷ୍ଟ ଗାର୍ଡ଼ ଏବଂ ବାର କିଲୋମିଟର ଦୂରରେ ଥିବା ଥାନାବାବୁ ଏଭଳି ଟୋପି ପିନ୍ଧିଥିବାର ଗାଁ'ଲୋକେ ଦେଖିଥିଲେ । ସାଇକେଲ ହ୍ୟାଣ୍ଡେଲରୁ ଝୁଲୁଥିଲା ତାଙ୍କର ବ୍ୟାଗ୍ ।

ଗାଁ ସାରା ପ୍ରଚାର ହୋଇ ଯାଇଥିଲା ଯେ ଖୋଲିବାକୁ ଯାଉଥିବା ପ୍ରାଇମେରୀ ସ୍କୁଲର ଶିକ୍ଷକ ଆସିଯାଇଛନ୍ତି ଓ ବସିଛନ୍ତି ଚୌକି ଉପରେ । କୌତୂହଳୀ ପିଲା ଓ ଏପରିକି ବୟସ୍କ ଲୋକମାନେ ଦୂରରୁ ବାଇଧର ମାଷ୍ଟରଙ୍କୁ ଦେଖୁଥିଲେ ଅଭାବିତ ଆଗ୍ରହର ସହିତ । ସେମାନଙ୍କ ମଧ୍ୟରୁ ଅନେକେ ନିରୁତ୍ସାହିତ ହେଉଥିଲେ ଏଇଥିପାଇଁ ଯେ, ସେ ଜଣେ ସାଧାରଣ ଲୋକଭଳି ଦିଶୁଥିଲେ । କୌଣସି ଅଭୂତପୂର୍ବ ବିଶେଷତ୍ୱ ନ ଥିଲା ତାଙ୍କଠାରେ । ଏପରିକି ନାରଣ ଓସ୍ତାଦ୍ ରଖିଥିବା ଲମ୍ବାକାଳି, କପାଳର ସିନ୍ଦୂରଗାର ତାଙ୍କ ପାଖରେ ନ ଥିଲା । ଓସ୍ତାଦ୍ କଥା କହୁଥିଲେ ଉଚ୍ଚ ସ୍ୱରରେ, ଆଦେଶ ଦେବା ଭଙ୍ଗୀରେ । ତାଙ୍କ ମୁହଁରେ ଥିଲା ଗୋଟାଏ ତେଜ, ଅନ୍ୟ ଲୋକକୁ ପ୍ରଭାବିତ କରିପାରିବା ଭଳି ଆତ୍ମବିଶ୍ୱାସ । ଏସବୁ କିଛି ନ ଥିଲା ନୂଆ ହୋଇ ଆସିଥିବା ସ୍କୁଲମାଷ୍ଟରଙ୍କ ପାଖରେ । ସେ ଚୁପ୍‌ଚାପ୍ ବସିଥିଲେ ଭାଷାହୀନ ମୁହଁ ନେଇ ।

କୁମରକୁ ଏତେ ଉତ୍ତେଜିତ ହେବାର ଦେଖି ନ ଥିଲେ କେହି ସେ'ଦିନ ଭଳି । ବିଚ୍ଛଣାରେ ଗଡ଼ପଡ଼ ହେଉଥିବା ନାରଣ ଓସ୍ତାଦଙ୍କୁ ସେ କହୁଥାଏ—"ଆଜି ସେ ବାଞ୍ଛୋଡ଼ ପିଲାମାନଙ୍କୁ ଯଦି ଆପଣ ଭଲକରି ପାନେ ଲେଖାଏଁ ନ ଦେବେ, ତେବେ ମୋ ଦୋଷ ଆଉ ଧରିବେ ନାହିଁ । ମୁଁ ଉତ୍ତର ଦେବି ଶଳାମାନଙ୍କର ପିଠିର ଚମଡ଼ା । ମାଷ୍ଟ ଯଦି ଆସିଛି, ସେଥିରେ ତୁମର ଗଲା କ'ଣ ? ରିହର୍ସାଲ ହେଉଛି । ସେଇଟା ବଡ଼ କଥା, ନା ସେଇ ମାଷ୍ଟରର ମୁହଁକୁ ଏପଟେ ସେପଟେ ହୋଇ ଭୁଙ୍କି ଦେଖିବା ବଡ଼ କଥା ? ଯେମିତି ଶୁଣିଛନ୍ତି ସିଏ ଆସିଲାଣି ବୋଲି, ସମସ୍ତେ ଚହଲି ଚାଲିଉଛନ୍ତି । ହଁ, ସେମିତି ଅପୂର୍ବ ଦେଖା ଯାଉଥାଆନ୍ତା କି ସିଏ ?"

ନାରଣ ଓସ୍ତାଦ୍ କିଛି କହିଲେ ନାହିଁ । ଅନ୍ୟମନସ୍କ ଭାବରେ ଚାହିଁଲେ ଘରର ଛପରକୁ ସେଇଭଳି ଖଟରେ ଶୋଇରହି । ସ୍କୁଲଟି ଖୋଲିବ ବୋଲି ଶୁଣିବା ଦିନଠୁ କେମିତି ଗୋଟାଏ ଅସ୍ୱସ୍ତି ଭାବ ଓ ସଂଶୟ ଆଚ୍ଛନ୍ନ କରି ଆସିଥିଲା ତାଙ୍କ ମନକୁ । ସେ ଭାବି ପାରିଲେ ନାହିଁ ଏତେ ଦିନ ଧରି ଏତେ ଆରାମରେ ଥିବା ଓ ବେଶ୍ ସମ୍ମାନ ପାଉଥିବା ଏ ସ୍ଥାନ ଛାଡ଼ିବା ପରେ ତାଙ୍କ ଅବସ୍ଥା ହେବ କ'ଣ ? ସେ ଯିବେ କେଉଁଠିକି ?

ଅପମାନଜନକ ଅନୁଭୂତି ନେଇ ଏ ଗାଁକୁ ତିନି ବର୍ଷ ହେଲା ଆସିଥିଲେ ମଧ୍ୟ ତାଙ୍କୁ ଖୋଜିବା ପାଇଁ ତାଙ୍କ ବଡ଼ ଭାଇ ବୋଧହୁଏ କୌଣସି ଚେଷ୍ଟା ମଧ୍ୟ କରିନାହାନ୍ତି । ତାଙ୍କ ନିଜ ଗାଁ ଅବଶ୍ୟ ଏଠାରୁ ଅନେକ ଦୂରରେ । ପହଞ୍ଚିବା ପାଇଁ ଦୁଇ ଦିନ ଲାଗିଯିବ । ସେ ପୁଣି ରହିଛନ୍ତି ଏ ଗାଁ ଭଳି ନିତାନ୍ତ ମଫସଲରେ । ତେଣୁ କୌଣସି ଯୋଗସୂତ୍ର ସ୍ଥାପନ ସମ୍ଭବ ହୋଇପାରି ନାହିଁ । କେଜାଣି, ତାଙ୍କ ଭାଇ ଏବଂ ଭାଉଜ ହୁଏତ ଖୁସି ଥାଇପାରନ୍ତି, ସେ ଘରଛାଡ଼ି କେଉଁଆଡ଼େ ପଳେଇଗଲେ ବୋଲି ।

ନାଟ-ତାମ୍‌ସାରେ ମାତି କୁଟା ଖଣ୍ଡିକ ଦି'ଖଣ୍ଡ କରୁନାହିଁ ବୋଲି ଭାଉଜଙ୍କର ଅଭିଯୋଗ । ଭାଉଜଙ୍କୁ ସବୁବେଳେ ଡରୁଥିବା ଅଭାବଗ୍ରସ୍ତ ଭାଇ ଗାଳି ଦେଉଥିଲେ ତାଙ୍କୁ । ଘରେ ତିନି-ଚାରିଟା ଛୁଆ ସବୁବେଳେ ଭେଁ ଭାଁ ହେଉଥିଲେ ଓ ମାଡ଼ ଖାଉଥିଲେ ବାପା-ମା'ଙ୍କଠାରୁ । ଘରେ ସବୁବେଳେ ଅଶାନ୍ତ ଓ କୋଳାହଳ ଲାଗିରହିଥିଲା ।

ତାଙ୍କ ଘର ପାଖରେ ଥିବା ଶୋଭା ବୋଲି ଝିଅକୁ ପ୍ରେମ କରୁଥିଲେ ସେ । ତା' ସହିତ ଜାତିଗତ ପାର୍ଥକ୍ୟ ଯୋଗୁ ବିବାହ ସମ୍ଭବ ନ ଥିଲା । ଏଥିପାଇଁ ଦୁହେଁ ଛଟପଟ ହେଉଥିଲେ ଏବଂ ଗାଁରୁ କେଉଁଆଡ଼େ ପଳେଇଯିବା ପାଇଁ ପ୍ରସ୍ତୁତ ହେଉଥିଲେ । ଦିନେ ଶୋଭାର ନିମନ୍ତ୍ରଣ କ୍ରମେ ସେ ପଶିଥିଲେ ତା' ଘରେ ଅଧରାତି ବେଳେ । ଧରାପଡ଼ି ଯାଇଥିଲେ । ନିଜ ଦୁର୍ଦ୍ଧାନ୍ତ ଭାଇକୁ ନିଜ କୋଠରୀରେ ଦେଖିବା ମାତ୍ରେ ଶୋଭା ଆର୍ତ୍ତନାଦ କରିଉଠିଥିଲା ଏବଂ କାନ୍ଦି କାନ୍ଦି ଅଭିଯୋଗ କରିଥିଲା ଯେ,

ନାରାୟଣ ଜବରଦସ୍ତ ତା କୋଠରୀ ଭିତରେ ପଶିଲ ବାଡେ଼ଇ ଉଦ୍ଦେଶ୍ୟ ନେଇ ।

ନାରାୟଣ ସ୍ତମ୍ଭୀଭୂତ ହୋଇଯାଇ ଥିଲେ । ସେ କିଛି କହିବା ପୂର୍ବରୁ ଘର ସାମନାରେ ରୁଣ୍ଡ ହୋଇ ଯାଇଥିବା କେତେ ଜଣ ଲୋକ ତାଙ୍କୁ ଅକ୍ତିଆର କରିସାରିଥିଲେ । ଲଣ୍ଠା କରିଦିଆ ଗଲା ତାଙ୍କ ମୁଣ୍ଡକୁ । ଦୁଇ ହାତ ଓ ଗୋଡ଼ରେ ଚିଆଁ ଦିଆଗଲା ।

ସେ ପଳେଇଗଲେ ମାମୁଁଙ୍କ ଘରକୁ । କିଛି ଦିନ ପରେ ଏଠାକୁ ଚାଲିଆସିଲେ ଓ ସମ୍ମାନାସ୍ପଦ ଓସ୍ତାଦ ବନିଗଲେ ଅପେରା ପାର୍ଟି ପିଲାଙ୍କର । ଓସ୍ତାଦ ଅଭାବରେ ଗାଁ ଯାତ୍ରାଦଳ ସେତେବେଳେ ଭୋକିଲା ଓ ଦିଗହୀନ ଥିଲା ।

ଦୀର୍ଘଶ୍ୱାସ ତ୍ୟାଗ କରି ନାରଣ ଓସ୍ତାଦ ଗୋଟାଏ ବାଟ ଖୋଜୁ-ଥିଲେ ନିଜକୁ ଅଇଥାନ କରିବା ପାଇଁ । ଏ ଗାଁରେ ତାଙ୍କର ଉପସ୍ଥିତି ଅପ୍ରାସଙ୍ଗିକ ଓ ଅନାବଶ୍ୟକ ହୋଇପଡ଼ୁଛି ବୋଲି ସେ ନିଶ୍ଚିତ ଥିଲେ । କୁମରର କୌଣସି କଥା ଯାତ୍ରା ପାର୍ଟିକୁ ବଞ୍ଚାଇ ରଖିବା ପାଇଁ ତା'ର ଆସ୍ଫାଳନ କୌଣସି ରେଖାପାତ କରୁ ନ ଥିଲା ତାଙ୍କ ମନରେ ।

ସନ୍ଧ୍ୟାବେଳେ ବାରନ୍ଦା ଧାରରେ ବସି ବାଇଧର ମାଷ୍ଟ୍ରେ ଗୁଡ଼ାଖୁ ଘଷୁଥାନ୍ତି । ତାଙ୍କ ପାଖରେ ପହଞ୍ଚିବା ବେଳକୁ କୁମରର କ୍ରୋଧ ଓ ଉତ୍ତେଜନା ଅନେକଟା କମି ଯାଇଥିଲା । ଗାଁର ପ୍ରାୟ ସମସ୍ତ ଲୋକ ଦେଖି ସାରିଥାନ୍ତି ନୂଆ ମାଷ୍ଟ୍ରଙ୍କୁ । ଗଳି କନ୍ଦିରେ ଲୁଚି ରହି ତାଙ୍କୁ ଦେଖୁଥିବା କୌଣସି ଲୋକ କୁମରର ଦୃଷ୍ଟିକୁ ଆସି ନ ଥିଲେ । ଟିକିଏ ଆଗକୁ, ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦା ଭରପୂର ଥାଏ ଲୋକଙ୍କ ଦ୍ୱାରା । କିଛି ଗୋଟାଏ ସରଗରମ ଆଲୋଚନା ଚାଲିଥିଲା ସେଠାରେ । ଘନଶ୍ୟାମ ଦାଦା ଉତ୍ସାହର ସହିତ କିଛି କହୁଥାନ୍ତି ବଡ଼ ପାଟିରେ । ମଝିରେ ମଝିରେ ଅନ୍ୟମାନେ ନିଜର ବକ୍ତବ୍ୟ ଶୁଣାଇବାକୁ ଧୈର୍ଯ୍ୟହୀନ ହୋଇ ପଡ଼ୁଥିଲେ ।

କୁମର ସାହସ ସଞ୍ଚୟ କରି ଠିଆ ହେଲା ବାଇଧର ମାଷ୍ଟ୍ରଙ୍କ ପାଖରେ । ସେତେବେଳେ ସେ ମୁହଁ ଧୋଇସାରି ଗାମୁଛାରେ ପୋଛୁ

ହେଉଥାନ୍ତି । କୁମରକୁ ପ୍ରଥମଥର ପାଇଁ ଦେଖିଲେ ଏବଂ ବିରକ୍ତ ହେଲେ ଯେ, ଅନ୍ୟମାନଙ୍କ ଭଳି ସେ ତାଙ୍କୁ ନମସ୍କାର କରି ନାହିଁ । କ'ଣ ଭାବିଲା କେଜାଣି, କୁମର ଫେରି ଯାଉଥିଲା; କିନ୍ତୁ ଠିଆ ହୋଇ ପଡ଼ିଲା ତାଙ୍କ ଆଗରେ ।

—"ତୁମେ ଅନ୍ୟ କେଉଁ ଗାଁରେ ସ୍କୁଲ କରିବ ଯାଅ । ଏଠି ଆମର ସ୍କୁଲ୍‌ଫୁଲ ଦରକାର ନାହିଁ ।" ଏତିକି କହିବା ବେଳେ ପ୍ରବଳ ଉତ୍ତେଜନାରେ କୁମର ଫଁ ଫଁ ହେଉଥିଲା । ଲାଲ୍ ହୋଇ ଯାଇଥିଲା ତା'ର ଗୋରା ମୁହଁ ଓ କଣ୍ଠସ୍ୱର କମ୍ପୁଥିଲା ।

କଥାଟା ପ୍ରଥମେ ବୁଝି ପାରିଲେ ନାହିଁ ମାଷ୍ଟ୍ରେ । କୁମର ଆଡ଼େ ସେ ବେଶ୍ କିଛି ସମୟ ପାଇଁ ଚାହିଁ ରହିଲେ ଏବଂ ଟିକିଏ ଆତଙ୍କିତ ହୋଇ ପଡ଼ିଲେ—ବଦମାସ୍‌ଟା କିଛି ଗୋଟାଏ ଘଟଣା ଘଟେଇବ କି ? ଶାରୀରିକ ଦୃଷ୍ଟିରୁ ସେ ମଧ୍ୟ କିଛି କମ୍ ନ ଥିବାରୁ ଏବଂ ଟିକିଏ ଦୂରରେ ଗୁଡ଼ାଏ ଲୋକ ଜମା ହୋଇଥିବାରୁ ସେ ଗୃପି ରଖିଲେ ନିଜର ବିଚଳିତ ଭାବ ।

—"କ'ଣ କହିଲ ?" ସେ ପଚାରିଲେ ।

କୁମର ନିଜ କଥା ପୁଣି କହିଲା ଏବଂ ଚେତାବନୀ ଶୁଣେଇଲା—"ଏ ଗାଁରେ ତୁମର ଅନିଷ୍ଟ ହୋଇପାରେ । ତୁମକୁ ଏ ଗାଁରେ ରଖେଇ ଦେବେ ନାହିଁ ବୋଲି ଦଳେ ଟୋକା ଠିକ୍ କରିଚନ୍ତି । ପଳାଅ ତୁମ ଗାଁକୁ ।"

ସେ ଯଥେଷ୍ଟ ଘାବରେଇ ଗଲେ ଏ କଥା ଶୁଣି । ହସିବାକୁ ଚେଷ୍ଟା କରି ପଚାରିଲେ—"ଆମ ଦେଶର ପ୍ରଧାନମନ୍ତ୍ରୀଙ୍କ ନାଁ କ'ଣ ?"

—"କେଜାଣି ?" କୁମର ଆଦୌ ବୁଝିପାରିଲା ନାହିଁ ତାକୁ ଏକଥା ପଚରା ଯାଉଥିଲା କାହିଁକି ?

—"ଓଡ଼ିଶାର ମୁଖ୍ୟମନ୍ତ୍ରୀ କିଏ ?"

—"କିଏ ?" କୁମର ହକ୍‌ଦାର ହୋଇ ପଡ଼ିଲା ତା' ଅଜ୍ଞାତ। ଏମିତି ଦୟୁମ୍ୟାୟୁ ଭାବେ ପଦାରେ ପଡ଼ଯାଉ ଥିବାରୁ ।

ତା' ମୁହଁକୁ ଲକ୍ଷ୍ୟ କରୁଥିଲେ ବାଇଧର ମାଷ୍ଟ୍ରେ ଏବଂ ତାଙ୍କର ଆତ୍ମବିଶ୍ୱାସ ବଢ଼ି ଯାଉଥିଲା । କହିଲେ—"ଏ କଥା ବି ଜାଣି ନ ! କହିଲ ଦେଖି, ହଳଦିଘାଟ ଯୁଦ୍ଧ କାହା କାହା ମଧ୍ୟରେ, କାହିଁକି ଓ କେଉଁଠି ଘଟିଥିଲା ? ଆଚ୍ଛା ହେଉ, ଆଉଗୋଟେ ସହଜ ପ୍ରଶ୍ନ ପଚାରୁଛି । ବାଙ୍ଗାଲୋରରେ କ'ଣ ସବୁ ମିଳେ ?" ବାଇଧର ମାଷ୍ଟ୍ରଙ୍କର ହସ ଅଟ୍ଟହାସ୍ୟ ଆଡ଼କୁ ଗତି କରୁଥିଲା । ଦୟା ଦେଖାଇବା ଭଳି ସେ ନରମ ସ୍ୱରରେ କହିଲେ—"କିଛି ବି ଜାଣି ନ, ତା'ହେଲେ ? ଆଁ ? ଚଳୁଚ କମିତି ? ରେମୁଣା କମ୍ବା ପିପିଲି କାହିଁକି ପ୍ରସିଦ୍ଧ, ଜାଣିଚ ? ନା, ଜାଣି ନ ! ସହରରେ କେଉଁ ପାଖରେ ଗୁଳିବା ଦରକାର ?"

ବାଇଧର ମାଷ୍ଟ୍ରେ ଅନୁଭବ କଲେ, ସେ ଯେପରି ପ୍ରତିଦ୍ୱନ୍ଦ୍ୱୀକୁ ଭୂତଳଶାୟୀ କରି ପାରିଚନ୍ତି ଏବଂ ତା'ର ଅସହାୟ ଦେହ ଉପରେ ଗୋଟିଏ ଗୋଡ଼ ଥୋଇଚନ୍ତି । କୁମର ସେତେବେଳେ ଦେଖା ଯାଉଥିଲା ବିବ୍ରତ ଓ ଅପମାନିତ । ମୁହଁ ପାଖରେ ବିରକ୍ତ କରୁଥିବା ଗୋଟାଏ ମାଛିକୁ ହୁରୁଡ଼େଇଲା ଭଳି ମାଷ୍ଟ୍ରେ ହାତରେ ସଙ୍କେତ ଦେଲେ କୁମରକୁ ସେଠାରୁ ପଳେଇ ଯିବା ପାଇଁ ।

—"ଶୁଣ ।" କୁମର ଅଟକି ଗଲା ଏ ଆଦେଶରେ । "ପାଖକୁ ଆସ ।" କୁମର ଠିଆ ହେଲା ପାଖରେ ଗୋଟାଏ ଅପରାଧୀ ଭଳି । "ରାଜ୍ୟରେ ଗୋଟେ ସରକାର ଥିବା କଥା ତୁମେ ଜାଣିଚ ବୋଲି ମୋର ବିଶ୍ୱାସ ହେଉ ନାହିଁ । ସେହି ସରକାର ତୁମ ଗାଁକୁ ମୋତେ ପଠେଇଚନ୍ତି । ହଁ, କେଉଁମାନେ ମୋର ଅନିଷ୍ଟ କରିବେ ବୋଲି ଷଡ଼ଯନ୍ତ୍ର କରୁଚନ୍ତି ? ସେମାନଙ୍କର ନାଁ ଗୁଡ଼ାକ କୁହ । ମୁଁ କାଲି ସକାଳେ ଥାନାରେ ଏ କଥା ଜଣାଇ ଦେବି । ତୁମ ନାଁ'ଟା ବି କୁହ । ପୋଲିସ ତୁମକୁ ଆଗ ଅଣ୍ଡା କରିସାରୁ । ତା'ପରେ ଯାଇ ଯେଉଁକଥା ।"

ବାଇଧର ମାଷ୍ଟ୍ରେ ଏ କଥା କହିସାରିବା ବେଳକୁ ଦ୍ରୁତ ଗତିରେ କୁମର ପହଞ୍ଚି ସାରିଥିଲା ବଉଳଗଛ ମୂଳେ ।

ସ୍ୱତନ୍ତ୍ର ଘର ଅଭାବରୁ ପ୍ରଥମେ ସ୍କୁଲ ଆରମ୍ଭ ହେଲା ମହାଦେବଙ୍କ କୋଠାଘର ବାରନ୍ଦାରେ । ସଙ୍କର୍ଷଣ ମାଷ୍ଟ୍ରଙ୍କ ଗୃହଶାଳୀରେ ଯେଭଳି

କୋଳାହଳ ଶୁଭେ, ବର୍ତ୍ତମାନ ଶୁଭୁଥିବା କୋଳାହଳ ତା'ଠାରୁ ଥିଲା ପୃଥକ୍ । ପାଖଆଖ ଗାଁରୁ ପିଲାମାନେ ଆସିଲେ ସ୍କୁଲରେ ନାଁ ଲେଖାଇବା ପାଇଁ ।

ଗାଁ'ର ପଶ୍ଚିମ ଦିଗକୁ, ମକରଯାତ୍ରା ପଡ଼ିଆ ଆଡ଼କୁ କେନ୍ଦୁ ବୁଦା ଓ ଶାଳବୁଦାର ଯେଉଁ ବ୍ୟାପକ ଅପନ୍ତରା ଥିଲା, ତାହାକୁ ପ୍ରଥମେ ସଫା କରିବା ଦରକାର ପଡ଼ିଲା । ଗୋରୁ-ଗାଈମାନଙ୍କର ମୃତଦେହ ଫୋପାଡ଼ି ଦିଆଯାଉଥିଲା ଏଇ ସ୍ଥାନରେ । ପଚା ମାଂସର ଗନ୍ଧ ଓ କୁଆ-ଶାଗୁଣା-ମାନେ ଏହାର ପବନ ମୁଖରିତ କରୁଥିଲେ । ପର୍ଯ୍ୟାପ୍ତ ପରିମାଣର ହାଡ଼ ଓ କଙ୍କାଳ ସ୍ଥାନାନ୍ତରିତ କରିବା ସହଜ ନ ଥିଲେ ମଧ୍ୟ ବିପୁଳ ଉତ୍ସାହର ସହିତ ଗାଁର ସମସ୍ତେ ଲାଗି ପଡ଼ିଥିଲେ ନୂଆ ସ୍କୁଲ ଘର ତିଆରିବା ପାଇଁ । ଘର ଉପକରଣ ସଂଗ୍ରହ ସକାଶେ ପାଖ ଜଙ୍ଗଲରେ ଅହରହ ଠାଙ୍ଗିଆ ଚୋଟ ଶୁଭିଲା । ଜଣା ପଡ଼ିଲା, ଗାଁର ପଶ୍ଚିମ ଦିଗ୍‌ବଳୟ ସତେ ଯେପରି ଘୁଞ୍ଚି ଯାଉଛି ଦୂରକୁ ଆବଶ୍ୟକତାର ଚାପରେ ।

ଯାତ୍ରା ପାର୍ଟିର ଘର ଦିଶୁଥିଲା ଫାଙ୍କା, ଗୋଟାଏ ବିଧବାର ଲଙ୍ଗଳା ହାତ ଭଳି । ଡ୍ରମ୍, ହାର୍ମୋନିୟମ, ତବଲା ଓ ଅନ୍ୟାନ୍ୟ ସରଞ୍ଜାମ ଉପରେ ଧୂଳିର ଆସ୍ତରଣ ବହଳ ହେଉଥିଲା । କୁମର ଓ କେତେବେଳେ କପର ସେଠାକୁ ଯାଉଥିବା ତିନି-ଚାରିଜଣ ଲୋକଙ୍କ ସ୍ୱର ପ୍ରତିଧ୍ୱନି ସୃଷ୍ଟି କରୁଥିଲା ନିସାଡ଼ ହୋଇ ଯାଇଥିବା ସେହି ଘରର ପବନରେ । ଫିମେଲ ପାର୍ଟ୍ ନେବେ ବୋଲି ମାତ୍ର ଅଳ୍ପଦିନ ପୂର୍ବେ ସତର-ଅଠର ବର୍ଷର ଦୁଇଟା ଟୋକାଙ୍କର କାନ ଫୋଡ଼ା ଯାଇଥିଲା । ସେ ଦୁଇଟା ଟୋକା ବି ସ୍କୁଲରେ ବସୁଥିଲେ ଆହୁରି ଗ୍ରେଟ ପିଲାଙ୍କ ସହିତ ।

ଅଧିକୃତ ହୋଇ ସାରିଥିବା ଗୋଟିଏ ଦୁର୍ଗର ସର୍ବଶେଷ ପ୍ରହରୀ ଭଳି କୁମର ଏପାଖ ସେପାଖ ହେଉଥିଲା ଚରମ ବ୍ୟାକୁଳତାର ସହିତ । ନାରଣ ଓସ୍ତାଦଙ୍କ ପାଣ୍ଡୁର ମୁହଁ ଦେଖିବା ମାତ୍ରେ ତା'ର ତଣ୍ଟିକୁ କିଏ ଯେପରି ଚାପି ଧରୁଥିଲା, ତାର କଳିଜାକୁ କାଟି ପକାଉଥିଲା ସମସ୍ତ ନିର୍ମମତାର ସହିତ । କିନ୍ତୁ ଓସ୍ତାଦଙ୍କୁ ଆମ ଗାଁ ଛାଡ଼ିବାକୁ ପଡ଼ିଥିଲା ।

କଠଉଯୋଡ଼ ନଈର ଶୁଖିଲା ବାଲି ଅତିକ୍ରମ କରି ଆର ପାଖରେ ପହଞ୍ଚିବା ପରେ ନାରଣ ଓସ୍ତାଦ ଠିଆ ହୋଇ ପଡ଼ିଲେ । ଦୁଇ କୂଳରେ ଥିବା ବୁଦୁବୁଦୁକିଆ ଜାମୁ ଓ ଶାଳଗଛ, ମହୁଲଗଛ ଆଡ଼ୁ ଶେଷ ଦୃଷ୍ଟି ପହଁରାଇ ଆଣିବା ପରେ ପରେ ସେ ଦୀର୍ଘଶ୍ୱାସ ତ୍ୟାଗ କଲେ ।

କମ୍ପିତ ସ୍ୱରରେ କହିଲେ—"କୁମର, ତୁ ଏଥର ଫେରିଯା । ବହୁତ ବାଟ ଚାଲି ଆସିଲୁଣି ।" ସେ ହାତ ବଢ଼ାଇଲେ କୁମର ହାତରୁ ବ୍ୟାଗ୍ ନେବା ପାଇଁ । ଅନ୍ୟ କୌଣସି ଉପାୟ ନ ଥିଲା । ବ୍ୟାଗ୍ ବଢ଼ାଇ ଦେବା ବେଳେ କୁମର ଅନୁଭବ କରୁଥିଲା, କିଛି ଗୋଟାଏ ହଜି ଯାଉଛି ତା' ଜୀବନରୁ, ତା' ଗାଁରୁ ସବୁଦିନ ପାଇଁ । ନାରଣ ଓସ୍ତାଦ୍ ବ୍ୟାଗ୍ ଧରିବା ବେଳେ ନଈ କୂଳ ଅତଡ଼ାରେ ଧସକି ପଡ଼ିବା ଭଳି କୁମରର ମୁହଁ ଧସକି ପଡ଼ିଥିଲା । ତା' ଦୁଇ ଆଖିରୁ ଝରି ଆସୁଥିବା ଲୁହ ଲୁଚେଇବା ପାଇଁ ଚେଷ୍ଟା କରି ନ ଥିଲା ସେ । ଓସ୍ତାଦ୍‌ଙ୍କ ଛଳ ଛଳ ଆଖି ଦେଖିବା ମାତ୍ରେ ଶେଷହୀନ କୋହରେ ସେ ନିର୍ଯ୍ୟାତିତ ହୋଇ ପଡ଼ିଥିଲା । ନାରଣ ଓସ୍ତାଦ୍ ତରତର ହେଉଥିଲେ । କୁମର ତାଙ୍କ ଦୁଇ ପାଦ ଜାବୁଡ଼ି ଧରିଥିଲା ବେଶ୍ କିଛି ସମୟ ପାଇଁ । ତା'ପରେ ସେ ଦେଖିଲା, ଓସ୍ତାଦ୍‌ଙ୍କର ଦେହ ଶାଳବଣ ଉହାଡ଼ରେ ଅଦୃଶ୍ୟ ହୋଇ ଯାଉଛି । ବୋଧହୁଏ ମକର ଯାହାରୁ କୌଣସି ଗାଈଆଳ ଟୋକା ବଂଶୀ ତୋଟାଏ କିଣିଥିଲା । ଖୁବ୍ ପାଖରୁ ବଂଶୀର ସ୍ୱର ଭାସି ଆସୁଥିଲା ଏବଂ ନିସ୍ତବ୍ଧ ପବନକୁ ଜଡ଼ସଡ଼ କରି ପକାଉଥିଲା । ଅପେରାରେ ନାରଣ ଓସ୍ତାଦ୍ ଶିଖେଇଥିବା ଗୋଟିଏ ବିଦାୟକାଳୀନ କରୁଣ ଗୀତ ଉପରେ ଆଧାରିତ ଥିଲା ବଂଶୀର ସେହି ସ୍ୱର ।

କୁଆଡ଼େ କିଛି କରିବାର ନ ଥିଲା ବୋଲି ଉଦ୍‌ଭ୍ରାନ୍ତ ହୋଇ କୁମର ଦିନାକେତେ ବୁଲିଲା ଏଣେତେଣେ । କେଉଁଠି ଥୟ ହୋଇ ବସିପାରୁ ନ ଥିଲା ସେ । ଦିନରେ ଥରେ-ଦୁଇଥର ମା' ସାଙ୍ଗରେ ବରଷା କରେ । ନିର୍ଧୂମ ପିଟେ ଛୁଆ ଦି'ଟାକୁ ଓ ସ୍ତ୍ରୀକୁ । ତା'ର ଏଇ ଉତ୍ପାତ ଦେଖିବା ମାତ୍ରେ ରଘୁ ପଳାଏ ଡରୁ । ସମସ୍ତେ ଜାଣିଥିଲେ ଯେ କୁମରର ମୁଣ୍ଡକୁ ଯଦି ପିତ୍ତ ଉଠିଛି, ତେବେ ଭାଙ୍ଗି ପକେଇବ ହାଣ୍ଡି-ଶାଳର ହାଣ୍ଡି । ଗୋଟାଏ ଝଡ଼ ଉଠିଛି ତା' ଭିତରେ । ସେଇଟା ନ

ଥମିବା ଯାଏଁ ସେ ସେମିତି ହେଉଥିବ । ତେଣୁ ଘରେ ଲାଗି ରହିଥିଲା ଭେଁ ଭାଁ କାନ୍ଦଣା ଓ କଳଚକଗୋଳ ।

ନାରଣ ଓସ୍ତାଦ୍ ଗାଁ ଛାଡ଼ି ପଳେଇ ଯିବାର ଦୁଇ-ତିନି ଦିନ ପରେ ଠାକୁରଙ୍କ କୋଠାଘର ବାରନ୍ଦାରେ ହେଉଥିବା ସ୍କୁଲ ଉଠିଗଲା ଅଧେରା ପାଣ୍ଠି ଘରକୁ । କେହି କିଛି ଆପତ୍ତି କଲେ ନାହିଁ । ସ୍କୁଲ ଘର ତିଆରି ନ ହେବା ଯାଏଁ ଏଇ ଅସ୍ଥାୟୀ ବ୍ୟବସ୍ଥା ଚାଲୁ ରହୁ ବୋଲି ଏକମତ ହେଲେ ସମସ୍ତେ । ବହୁ ବର୍ଷ ଧରି ଗାଁର ଅପେରା ତିଷ୍ଠି ରହିଥିଲା । ଅନେକ ଓସ୍ତାଦ୍ ଆସି ଏଇ ଅନୁଷ୍ଠାନକୁ ଦିଗ୍‌ଦର୍ଶନ ଦେଇ-ଥିଲେ । ନିଜ ରୁଚି ଓ କ୍ଷମତା ଅନୁଯାୟୀ ଏହାର ରୂପ ଓ ବୈଶିଷ୍ଟ୍ୟ ଦେଇଥିଲେ । ନାରଣ ଓସ୍ତାଦ୍ ପଳେଇ ଯିବା ଦ୍ୱାରା ଅନୁଷ୍ଠାନଟି ମରିଗଲା । ସେଇ ଘରକୁ ସ୍କୁଲ ଉଠି ଯିବାଟା ଥିଲା ମୃତ ଅନୁଷ୍ଠାନର ମୁଖାଗ୍ନି ।

ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦାରେ ଘନଶ୍ୟାମଦାଦା ଗୋଟିଏ ଅଭିନବ ପ୍ରସ୍ତାବ ବାଢ଼ିଲେ—"ପଞ୍ଚାୟତକୁ ଆମ ଗାଁରୁ ଜଣେ ମେମ୍ବର ପଠେଇବା କଥା । ମୁଁ ଭାବୁଚି, ଏବର୍ଷ କୁମରକୁ ପଠେଇବା ।"

ଉପସ୍ଥିତ ଥିବା ସବୁ ଲୋକ ନୀରବ ହୋଇଗଲେ ଏଇ ନାହିଁ ନ ଥିବା ପ୍ରସ୍ତାବ ଶୁଣି । ସେମାନେ ପରସ୍ପରର ମୁହଁକୁ ଚାହିଁଲେ । ଆଶାକଲେ ଯେ, କେହି ଜଣେ ଏହାର ବିରୋଧ କରିବା ଦରକାର । ସଙ୍କର୍ଷଣ ମାଷ୍ଟ୍ରେ ଗମ୍ଭୀର ହୋଇ ପଚାରିଲେ ଦାଦାଙ୍କୁ—"ତୁ ଥଟ୍ଟା କରୁଚୁ ନା ସତରେ କହୁଚୁ ?"

—"ସତରେ କହୁଚି ।" ଦାଦା କହିଲେ ଦୃଢ଼ତାର ସହିତ ।

—"ସେଇଟା ମୂର୍ଖ, ହୁଣ୍ଡାଟାଏ ।" ମନ୍ତବ୍ୟ ପ୍ରକାଶ କଲେ ସଙ୍କର୍ଷଣ ମାଷ୍ଟ୍ରେ କଥିତ ଉତ୍ତେଜିତ ହୋଇ । ମୁଁ ତାକୁ ବର୍ଷେ ଦି'ବର୍ଷ ପାଠ ପଢ଼େଇ ନୟାନ୍ତ ହୋଇ ଯାଇଚି । ପନ୍ଦରକ ପଣିକିଆ ହେଲା ନାହିଁ ସେ କୁଳାଙ୍ଗାରର । ମୁଁ ବାଜିମାରି କହିପାରେ ଯୁକ୍ତାକ୍ଷରଗୁଡ଼ାକ ତା'ର ଆଉ ଜମା ମନେ ନ ଥିବ । ତାକୁ କଥା କହିଆସେ ନାହିଁ । ସେ ପୁଣି ହେବ ଆମ ଗାଁର ମେମ୍ବର ! ପନ୍ଦର-କୋଡ଼ିଏ ଜଣ ଭଦ୍ର-

ଲୋକଙ୍କ ସାଙ୍ଗରେ ଏକାଠି ବସିବ ? ବୁଝିଲୁ , ଗାଁର ଇଜ୍ଜତ ଗୁଲିଯିବ । ଖାଲି ଲୋକହସା ହେବା କଥା ।" ତାଙ୍କର ଏଇ ମନ୍ତବ୍ୟକୁ ଅନେକେ ସମର୍ଥନ କଲେ ।

—"ତେବେ ତୁମେ ପୁଣି ମେମ୍ବର ହୁଅ ।" ଘନଶ୍ୟାମଦାଦାଙ୍କର ଅନ୍ୟ ଏକ ପ୍ରସ୍ତାବ ।

—"ମୁ ଆଉ ମେମ୍ବର ହେବ ନାହିଁ ।" ସଙ୍କର୍ଷଣ ମାଷ୍ଟ୍ରେ ପଚେଇଲେ । ତାଙ୍କର ସ୍ୱର ଆଉ ଶୁଭିଲା ନାହିଁ ଭଲକରି । "ମୁଁ ଦୁଇ ବର୍ଷ ଥିଲି । ଯିବା ଆସିବା ତିନିକୋଶ ବାଟ । ବୁଢ଼ା ହେଲିଣି । ଏଣେ ମୋର ଦୁଃଖ ବଳେଇ ପଡ଼ୁଚି । ପଞ୍ଚାୟତ ମିଟିଙ୍ଗ୍‌ରେ ଯୋଗଦେବା ସକାଶେ ଯିବା ମୋ'ପାଇଁ କଷ୍ଟ ହେବ ।"

କେହି ମଙ୍ଗିଲେ ନାହିଁ ମେମ୍ବର ହେବାକୁ । ଖାଲିଟାରେ ସେ ବାଜେ ଧନ୍ଦା କରିବ କିଏ ? ଘନଶ୍ୟାମଦାଦା ବୁଝେଇ ଦେଲେ ସମସ୍ତଙ୍କୁ— "ପଞ୍ଚାୟତ ସହିତ ଆମର ସମ୍ପର୍କ କ'ଣ ? ଆମ ଗାଁ ପଞ୍ଚାୟତ ଯଥେଷ୍ଟ ଆମ୍ଭମାନଙ୍କ ପାଇଁ । ଆମ ଗାଁର ଭଲ ମନ୍ଦ ଆମେ ବୁଝୁଚୁ, ଭବିଷ୍ୟତକୁ ମଧ୍ୟ ବୁଝିବା । ତେଣୁ ସେଠାକୁ କିଏ ମେମ୍ବର ହୋଇଗଲା, ସେଥିରେ ଏତେ ଚିନ୍ତିତ ହେବାର କାରଣ କିଛି ନାହିଁ । ଖାଲି ନିୟମ ଅନୁସାରେ ଜଣକୁ ସେଠାକୁ ପଠେଇବା କଥା । ତୁମେ ତ କେହି ରାଜି ହେଉନ । କୁମର ଯାଉ ।"

ପୁ'ଟରେ କେହି ଆଉ ଆପତ୍ତି କଲେନାହିଁ । ଦାଦାଙ୍କ କଥାରେ ଯଥେଷ୍ଟ ଯୁକ୍ତି ଥିଲା । ସେଦିନ ସନ୍ଧ୍ୟାରେ ଗାଁର ମେମ୍ବର ହେବା କଥା ଶୁଣି କୁମର ପ୍ରଥମେ ବିଶ୍ୱାସ କଲା ନାହିଁ । ପରେ ପରେ ସେ ବିମୋହିତ ହୋଇପଡ଼ିଲା ଅପ୍ରତ୍ୟାଶିତ ଖବରରେ ତା ଉପରେ ଏତେ ବଡ଼ ସମ୍ମାନ ଲଦି ଦିଆଯାଇଚି ବୋଲି । ସେ ବେଶ୍ ଗମ୍ଭୀର ହୋଇଗଲା । ତାକୁ ଗୋଟିଏ ନୂଆ କମିଜ୍ କିଣିବାକୁ ପଡ଼ିବ ଓ ଚପଲ ହଳକ ମରାମତି କରିବାକୁ ହେବ ।

ଦେବ ଆଚାର୍ଯ୍ୟଙ୍କର ବାହାଘର ଅନୁଷ୍ଠିତ ହେଲା ନିତାନ୍ତ ସାଧାରଣ, ଆପାତତଃ ମାମୁଲି ଢଙ୍ଗରେ । ସମସ୍ତଙ୍କର ବିଶ୍ୱାସ ଥିଲା,

ଏତେ ବିନଯାଏ ଲଗାମହୀନ ହୋଇ ମୁକ୍ତ ଜୀବନଯାପନ କରୁଥିବା ଓ ନିଜକୁ ନିଜ ଇଚ୍ଛା ମୁତାବକ ଅନୁଭବ କରୁଥିବା ଆଗ୍ରହୀମାନଙ୍କର ବାହାଘର ହେବ ଗାଁ'ର ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା । କାଇଁ, ସେମିତି କିଛି ହେଲା ନାହିଁ । ବାହାଘର ଭୋଜି ମଧ୍ୟ ଥିଲା ଆଡ଼ମ୍ବରହୀନ ।

ବାହା ହୋଇ ପଡ଼ିବା ପାଇଁ ତାଙ୍କ ଉପରେ ଅନେକ ଲୋକ ଯେ ଚାପ ପ୍ରୟୋଗ ନ କରିଥିଲେ, ତାହା ନୁହେଁ । ତାଙ୍କ ବୟସର ସବୁ ଲୋକ ବାହା ହୋଇସାରିଥିଲେ, ପିଲାପିଲିଙ୍କର ବାପା ହୋଇସାରିଥିଲେ ଏବଂ କାହିଁକି କେଜାଣି ଅସନ୍ତୋଷ ମୁହଁ ନେଇ ଧାଁ ଦଉଡ଼ କରୁଥିଲେ ଗାଁ ଭିତରେ ଓ ବାହାରେ । ମୋହ-ମୁକ୍ତ ହେବା ଭଳି ସେମାନେ ପସ୍ତାଉଥିବା ଭଳି ଜଣା ପଡ଼ୁଥିଲା । ସେମାନେ ପ୍ରାୟ ସୂଚନା ଦେଉଥିଲେ ଯେ, ସବୁ କଥା ପ୍ରତାରଣାପୂର୍ଣ୍ଣ, ଧୋକାବାଜ ! ସବୁ ଗୋଟାଏ ଶଠତା !

ନିକାଞ୍ଚନ ମୁହୂର୍ତ୍ତରେ ତାଙ୍କର ଅନେକ ଅନ୍ତରଙ୍ଗ ଲୋକ ତାଙ୍କ ପାଖରେ ସାଂସାରିକ ଜୀବନ କଥା ଗପିଚନ୍ତି ନିଃସଙ୍କୋଚ ହୋଇ । ସମସ୍ତେ ପ୍ରାୟ ଏକମତ ହୋଇ ସ୍ୱୀକାର କରିଚନ୍ତି ଯେ, ଅଧିକାଂଶ କ୍ଷେତ୍ରରେ ଜୀବନ ବିଫଳ ହୋଇଯାଏ ! ଗୋଟାଏ ଅକୃତକାର୍ଯ୍ୟ ମନ ନେଇ ସାଲିସ କରିବାକୁ ପଡ଼େ ଅହରହ । ଅଇଁଠୁ ତା'ର ପ୍ରଥମ ସ୍ତ୍ରୀର ଚରିତ୍ରକୁ ସନ୍ଦେହ କଲା ପରେ ବାହା ହେଲା ଆଉ ଥରେ । ପିଲାପିଲିଙ୍କର ବାପା ହେଲା । ସବୁବେଳେ କାମରେ ବ୍ୟସ୍ତ ରହେ । ଦେବ ଆଗ୍ରହୀ ଅନେକବାର ତାସ୍ ଖେଳିବାକୁ ତାକୁ ଡାକନ୍ତି; କାରଣ ସେ ଭଲ ତାସ୍ ଖେଳୁଥିଲା । ଅଧିକାଂଶ ଥର ନିଜର ଅକ୍ଷମତା ପ୍ରକାଶ କରି ସେ ତାଙ୍କୁ ସତର୍କ କରି ଦେଇଚି—"ତୋର ଚିନ୍ତା କ'ଣ ? ବାହା ସାହା ହୋଇଚୁ ନା ପିଲାପିଲିଙ୍କର ବାପ ହୋଇଚୁ ? ସେତିକି ହୋଇସାରୁ । ତା'ପରେ ତୋର ଏ ଢଙ୍ଗ ରହିଲେ ହେଲା । ଦିନ ରାତି ଝାଳ ନାଳ ହୋଇ ଧାଉଁଥିବୁ ପୃଥିବୀ ଉପରେ । ସବୁବେଳେ ଭାବୁଥିବୁ ଯେ, କେଉଁଠି ଗୋଟାଏ ଫାଙ୍କ ରହିଯାଉଛି । ତୁ ଯେତେ ଚେଷ୍ଟା କର ! କେଉଁଠି ନା କେଉଁଠି ସେ ଫାଙ୍କ ରହିଥିବ । ତୁ ଟାଣି ଓଟାରି ହେଉଥିବୁ । ସେ ଫାଙ୍କ ବଢ଼ି ଚାଲିଥିବ ଆସ୍ତେ ଆସ୍ତେ । କାହାରିକୁ ସନ୍ତୁଷ୍ଟ କରିପାରୁ ନ ଥିବୁ ।

ମାଇପ ଖୁଣ୍ଟା ଦେଉଥିବ ସବୁବେଳେ । ଅକର୍ମଣ୍ୟ ଅପଦାର୍ଥଟେ ବୋଲି କହି ତୋ ମନରେ କଣ୍ଟା ଫୋଡ଼ୁଥିବ । ଏଣେ ପିଲାମାନେ କହୁଥିବେ, ତାଙ୍କ ସାଙ୍ଗମାନେ ଏଇଭଳି ପିନ୍ଧିଚନ୍ତି, ଏଇଭଳି ଜିନିଷ କିଣିଚନ୍ତି । ସେମାନଙ୍କର କାହିଁ ? ଗୋଟିଏ ଜୀବନ ଏଇଭଳି ବିତିଯିବ । ଦେବନାଇଁ କିଛି । ନିଜକୁ ନେଇ କିଏ ବଞ୍ଚିପାରିବ, ବାହାହେଲା ପରେ ? ତୁ ଭଲ ଅଛୁ । ଜମା ବାହା ହେବୁନି । ଖାଲି ଅନୁତାପ କରିବୁ । ଅଶାନ୍ତ କଥା ଭାବିବୁ । ମନ ହାଇଁପାଇଁ ହେବ । ମୁକ୍ତି ମିଳିବ ନାଇଁ ଆଦୌ ।"

ଏଭଳି ଚେତାବନୀ ଆସୁଥିଲା ସବୁବେଳେ । ଅଥଚ ତାଙ୍କ ଭିତରେ କିଛି ଗୋଟାଏ ଭେକିଲା ରହୁଥିଲା । ବିଶେଷତଃ ନିଃସଙ୍ଗ ମୁହୂର୍ତ୍ତରେ ସେ ଛଟପଟ ହେଉଥିଲେ । ସମୟ ଗଡ଼ିଯାଉଥିଲା ଆସ୍ତେ ଆସ୍ତେ । ସେ ବାହା ହେବା ପାଇଁ ଠିକ୍ କଲେ ।

ବାହାଘର ମାନେ କ'ଣ ହୋଇପାରେ ? ଅଇଁଠୁ ଭାଷାରେ ଖାଲି ବ୍ୟାକୁଳତାର ସହିତ ଧାଁ ଦଉଡ଼ କରିବା ? ଗୋଟାଏ ନାହିଁ ନ ଥିବା ଫାଙ୍କକୁ ପୋତେଇବା ପାଇଁ ଚେଷ୍ଟା କରିବା ? ଗୋଟାଏ ଅସଫଳ ମନ ନେଇ ଦୀର୍ଘଶ୍ୱାସ ତ୍ୟାଗ କରିବା ? କେଜାଣି ? ତେବେ ସବୁ ଲୋକ ବାହା ହେଉଚନ୍ତି କାହିଁକି ବିବାହ ଗୋଟାଏ ପ୍ରଲମ୍ବିତ ଆଲିଙ୍ଗନ ହୋଇପାରେ । ଗରମ ନିଃଶ୍ୱାସ ଓ ଝାଳ ଭରପୂର ଗୋଟାଏ ସମର୍ପିତ ଆଲିଙ୍ଗନ । ସେ ଆଲିଙ୍ଗନ ଅଣନିଃଶ୍ୱାସୀ କରିଦେଇ ପାରେ; ଅଥଚ ଇଚ୍ଛାକୃତ ଭାବରେ ଅଣନିଃଶ୍ୱାସୀ ହେବା ପାଇଁ ଆପଣାଛାଏଁ ଦୁଇ ହାତ ଲମ୍ବିଯାଇ ପାରେ ଗୋଟାଏ ବିଦ୍ୱଳୟ ଭଳି । ଏଇ ବିଦ୍‌ବଳୟ ଭିତରେ ଥିବା ବ୍ୟକ୍ତି-ସତ୍ତାଟି ସେହି ବିଦ୍‌ବଳୟର ପରିପୂର୍ଣ୍ଣତା ଏବଂ ସମସ୍ତ ସ୍ୱପ୍ନର ବାସ୍ତବ କଳେବର ।

ଦେବ ଆଚାର୍ଯ୍ୟଙ୍କର ଭାବନା ଏଇଭଳି ସମ୍ପ୍ରସାରିତ ହୋଇଯାଏ । ଏ ଭାବନା ବେଳେବେଳେ ଏମିତି ବ୍ୟାପକ ଏବଂ ହାସ୍ୟାସ୍ପଦ ହୋଇଯାଏ ଯେ, ବାହାଘର କଥା ଚିନ୍ତା କରିବା ମାନେ ସେ ବସ୍ତୁତଃ ଚିନ୍ତା କରନ୍ତି ଶ୍ରୀମତୀ ସିଦ୍ଧାଙ୍କ ସମ୍ପର୍କରେ । ଆଲିଙ୍ଗନ କଥା ଭାବିବା ମାନେ, ତାଙ୍କ ଜୀବନର ସେହି ଉନ୍ମାଦିତ ଆଲିଙ୍ଗନ କଥା ହିଁ ମନେପଡ଼େ । ତାଙ୍କୁ

କେନ୍ଦ୍ରକର ସେ ଅଜ୍ଞାତ ଓ ଭବିଷ୍ୟତ କଥା ଭାବନ୍ତି । ବେଳେବେଳେ ସେ ଅନୁଭବ କରନ୍ତି ଯେ, ସେହି ସ୍ୱପ୍ନର ନାରୀ ମୂର୍ତ୍ତି ଜଣକ ଆସିବ ତାଙ୍କ ପାଖକୁ ତାଙ୍କର ଅଲଙ୍ଘମାୟ ଆଲିଙ୍ଗନର ସ୍ନିଗ୍ଧ ଚୁମ୍ବକ ବଳରେ ।

ସେଦିନର ପରିବେଶ କିନ୍ତୁ ଥିଲା ସ୍ୱତନ୍ତ୍ର । ସେଇଟା ଗୋଟାଏ ମରି ହଜି ଯାଉଥିବା ଦୋତାଲା କୋଠାର କୋଠରି ନ ଥିଲା । ତାହା ଥିଲା ତାଙ୍କ ନିଜ ଘର; ନିତାନ୍ତ ପରିଚିତ । ତା' ଭିତରେ ସେ ଥିଲେ ସମ୍ରାଟ୍; କାହାର ଗୃକର ନ ଥିଲେ । କୋଠରି ଭିତରେ ପୋଡ଼ା ଘିଅର ମୋଟା ଗନ୍ଧଟିଏ ଆସ୍ଥାନ ଜମେଇ ରହିଥିଲା । ଗୋଟିଏ କୋଣରେ ଜଳୁଥିଲା ଘିଅ ଦୀପଟିଏ ନିବସ୍ତ୍ର ମନ ନେଇ । ସେ ଆଲିଙ୍ଗନ କରିଥିବା ନାରୀ ମୂର୍ତ୍ତିଟି ଗାଢ଼ ନାଲି ରଙ୍ଗର ଶାଢ଼ୀ ପିନ୍ଧିଥିଲା; କିନ୍ତୁ ସେହି ଶାଢ଼ୀ ନିଶ୍ଚିତ ଭାବରେ ଥିଲା ଅନେକ କମ୍ ଦାମ୍‌ର । ହାତ, ବେକ ଓ ମୁଣ୍ଡରେ ଥିଲା ସଂକ୍ଷିପ୍ତ ଗହଣା । ଅଥଚ ସେଇ ନାରୀ ମୂର୍ତ୍ତିଟି ଥିଲା ଏକାନ୍ତଭାବେ ତାଙ୍କର, ଯାହାକୁ ସ୍ପର୍ଶ କରିବା ମାନେ ସେଇ ଘର ଗ୍ଲାଣ୍ଡ଼ ଅନ୍ତର୍ଦ୍ଧରେ ବାହାରକୁ ଧାଇଁ ପଳାଇବାର ଆବଶ୍ୟକତା ନ ଥିଲା ।

ଗାଁର ସମସ୍ତେ ଏକମତ ହେଲେ ଯେ, ଇନ୍ଦୁଭଳି ଏତେ ସୁନ୍ଦର ବୋହୂ ଜଣେ ସେ ଗାଁକୁ ଆଗରୁ କେବେ ଆସି ନ ଥିଲା । ଇନ୍ଦୁ ଆପଣା-ଛାଏଁ ଗାଁର ଅନ୍ୟ ସ୍ତ୍ରୀମାନଙ୍କ ଠାରୁ ବାରି ହୋଇ ଯାଉଥିଲା । ପ୍ରଥମତଃ ସେ ସବୁବେଳେ ଶାୟା ଓ ବ୍ଲାଉଜ୍ ପିନ୍ଧୁଥିଲା; ଯାହାକି ନୂଆ ଥିଲା ଆମ ଗାଁ ପାଇଁ । ଗାଁର କେତେଜଣ ସ୍ତ୍ରୀ ଏବଂ ଝିଅପିଲାଙ୍କର ଏସବୁ ପୋଷାକ ଥିଲା; କିନ୍ତୁ ସେମାନେ ତାହାକୁ ଟ୍ରଙ୍କ୍‌ରୁ ବାହାର କରୁଥିଲେ ବିଶେଷ ଦିନମାନଙ୍କରେ । ତା'ଛଡ଼ା ତା' ମୁଣ୍ଡର ଗଣ୍ଠିଟି ଥିଲା ଗ୍ରେଟକୋଟର ଗୋଟାଏ ଫୁଟ୍‌ବଲ୍ ଭଳି । ସେ ଏତେ ବଡ଼ ସୁନ୍ଦର ଗଣ୍ଠିଟିଏ କରିପାରୁ-ଥିଲା କିପରି, ତାହା ଜଣା ନ ଥିଲା କାହାରିକୁ । ଏବଂ ସେ ପ୍ରାୟ ଓଢ଼ଣା ଦେଉ ନ ଥିଲା । କଥା କହୁଥିଲା ଟିକିଏ ବଡ଼ ପାଟିରେ । ଗାଁ ରାସ୍ତାରେ ଠିଆ ହେଲେ ତାଙ୍କ କଥା ଓ ଉଚ୍ଚ ସ୍ୱରର ହସ ଶୁଣାଯାଇ ପାରିବ ସହଜରେ । ନିଃସନ୍ଦେହରେ କୁହାଯାଇ ପାରେ ଯେ, ସେ ଥିଲା ଆମ ଗାଁ'ର ସର୍ବପ୍ରଥମ ଆଧୁନିକା ଘରଣୀ । ହାଣ୍ଡିଶାଳରେ ସବୁବେଳେ

ଲୁଚିରହି ଲାଜ କରିବା ତା' ଜାତକରେ ବୋଧହୁଏ ନ ଥିଲା । ଛୁଞ୍ଚି ଓ ବିଭିନ୍ନ ରଙ୍ଗର ସୂତା ସାହାଯ୍ୟରେ ସେ ବୁଣିପାରୁଥିଲା ଚମତ୍କାର ନକ୍ସା ପରିଷ୍କାର ଧଳା କନାର କାନ୍ଥରେ । ବାହାଘର ପରେ ଦେବ ଆଚାର୍ଯ୍ୟ ଗର୍ବର ସହିତ ନମ୍ରଭାବରେ ଘୋଷଣା କରିଥିଲେ ଯେ ଚତୁର୍ଥୀ ରାତିରେ ଇନ୍ଦୁ ତାଙ୍କୁ ଚାରୋଟି ଅତର-ଛିଞ୍ଚା ରୁମାଲ ଉପହାର ଦେଇଥିଲା । ଗୋଟିକରେ ଛୁଞ୍ଚି କାମରେ ଲେଖା ଯାଇଥିଲା—'କିସ୍ ମି' । ଆଉ ଗୋଟିକରେ—'ଲଭ୍ ମି' । ତୃତୀୟଟିରେ—'ୟୁ ଆଣ୍ଡ ଆଇ, ଟୁଗେଦର' । ସବା ଶେଷଟିରେ—'ହାପି ଡେ ଆଣ୍ଡ ନାଇଟ୍ !' ଏମାନଙ୍କର ଅର୍ଥ ସେ ଦେବ ଆଚାର୍ଯ୍ୟଙ୍କୁ ବୁଝେଇ ଦେଇଥିଲା ଠିକଏ ଲାଜଲାଜ ହୋଇ । ତେବେ ଗୋଟିଏ ବିଷୟରେ ଇନ୍ଦୁ ଦୁର୍ବଳ ଥିଲା ବୋଲି କହିବାକୁ ପଡ଼ିବ । ତା' କଣ୍ଠ ସ୍ୱରରେ ଲାଳିତ୍ୟ ନ ଥିଲା ଜମା । ଠାଇଁ ଠାଇଁ, ଶୁଖିଲା ଜଣାପଡ଼େ ସେ ସ୍ୱର । ତାହାକୁ ରୁକ୍ଷ ବୋଲି କୁହାଯାଇ ପାରେ । ଗାଁ ଲୋକେ ଆଦୌ ବୁଝିପାରୁ ନ ଥିଲେ ଏଭଳି ସୁନ୍ଦର ମହିଳାଜଣଙ୍କୁ ବିଧାତା କପରି ଏଭଳି ବିରକ୍ତିକର ସ୍ୱର ଖଞ୍ଜି ଦେଇପାରିଲା ?

ଇନ୍ଦୁ ସେ ଘରକୁ ଆସିବାର ତିନିଦିନ ପରର ଘଟଣା । ସକାଳେ ସେ ପୋଖରୀରୁ ଗାଧୋଇ ସାରି ଫେରିଥାଏ । ଖଟ ଉପରେ ପ୍ରାୟ ମୁଗ୍ଧ ହୋଇ ବସିଥାନ୍ତି ଦେବ ଆଚାର୍ଯ୍ୟ । ତାଙ୍କୁ ଜଳଖିଆ ଦେଲେ ସେ ଯାଇ ଦୋକାନ ଖୋଲିବେ । କେତେଜଣ ଗରାଖ ଅପେକ୍ଷା କରୁଥିବେ । ଦର୍ପଣ ଆଗରେ ଠିଆ ହୋଇ ମୁହଁରେ ସ୍ନୋର ପ୍ରଲେପ ଦେଉଥିଲା ଇନ୍ଦୁ । ସୁନ୍ଥା ଓ କପାଳରେ ସିନ୍ଦୂର ଲଗାଇବା ବେଳେ ସେ କହିଲା—"ତୁମେ ମୋତେ ଯାହା କୁହ ପଛକେ, ପୋଖରୀକୁ ଗାଧୋଇବା ପାଇଁ ଯିବାକୁ ମୋର ଜମା ମନ ହେଉନି ।"

—"କାହିଁକି ?" ଦେବ ଆଚାର୍ଯ୍ୟ ଚଞ୍ଚଳ ହୋଇ ପଡ଼ିଲେ କିଛି ଗୋଟାଏ ଗୁରୁତର ଘଟଣା ଘଟିଛି ବୋଲି ଆଶଙ୍କା କରି । "ଅସୁବିଧା କ'ଣ ? ଗାଁର ସମସ୍ତେ ସେଇଠି ଗାଧୁଆ ପାଧୁଆ କରନ୍ତି; ନ ହେଲେ ନଈରେ ପାଣି ଥିଲେ ସେଠିକି ଯାଆନ୍ତି ।"

ଇନ୍ଦୁ ଦୁଇ ପାପୁଲିରେ ତଥାପି ମୁହଁ ଘଷୁଥିବା ଅବସ୍ଥାରେ ଚାହିଁଲା ଦେବ ଆଚାର୍ଯ୍ୟଙ୍କୁ । କହିଲା—"ଲୁଗାପଟା ପାଲଟିବା ବେଳେ

ସମସ୍ତେ ଖାଲି ହାଁ କରି ଅନେଇଥିବେ । ଟିକିଏ ଦୂରରେ ପୁରୁଷମାନଙ୍କର ଭିଡ଼ । ଅଲକ୍ଷଣାଗୁଡ଼ାକ ଏମିତି ବିକଳ ହୋଇ ଦେଖୁଥିବେ, ସତେ ଯେମିତି ଚୋବେଇ ଖାଇଯିବେ ! ଖୋଲା ଜାଗାରେ ଗାଧୋଇବା ମୋର ଅଭ୍ୟାସ ନାହିଁ । ଆମ ଘର ପାଖରେ ଗାଧୁଆ ଘର, ପାଇଖାନା ଥିଲା ।"

ସେଇ ଦିନ ଅପରାହ୍ନ ବେଳକୁ ପ୍ରାୟ ଶଗଡ଼େ ଡାଳ କାଠ ହୋଇ ଆସିଲା । ଘର ପାଖକୁ ବାଡ଼ ଘୁଞ୍ଚ ଟ୍ରେଞ୍ଚକାଠର ଚାଳିବା ଭଳି ଗାଧୁଆଘର ତିଆରି ହେଲା । ତଳେ ବିଛେଇ ଦିଆଗଲା ଟୁକୁରା ପଥର ଓ ତା' ଉପରେ ଗାଧୁଆ ଭିତରେ ଥିବା ଚିକ୍କଣ ଭିଡ଼ ପଥର ଭଳି ପଥର ଖଣ୍ଡିଏ । ଗୋଟାଏ ବଡ଼ ଡ୍ରମ୍ ଓ ମଗ୍ ଆସିବା ଯାଏଁ, କୂଅରୁ ପାଣି ଆଣି ଯୋଗେଇ ଦେବ ରାଧାକାନ୍ତ ।

ରାଧାକାନ୍ତ ଏଇଭଳି ସାମୟିକ ଭାବରେ ଦେବ ଆଚାର୍ଯ୍ୟଙ୍କ ଘରେ କାମ କରୁଥିଲା । ପାଣି ବାଲ୍ଟି ଧରି ସେ ଅପେକ୍ଷା କରେ ଠିଆହୋଇଥିବ ଗାଧୁଆଘର ପାଖରେ । ଆଦେଶ ଶୁଣିବା ମାତ୍ରେ ପାଣି ନେଇ ଭିତରକୁ ଯାଏ । ଦଶ-ବାର ବର୍ଷର ଏଇ ପିଲାଟା ଦେଖେ, ଓଦା ଲୁଗା ଲେସି ହୋଇ ଯାଇଥିବା ଇନ୍ଦୁର ଗୋରା ବଳିଷ୍ଠ ଦେହକୁ । ସେ ବୁଝିପାରେ ନାହିଁ, କାହିଁକି ଗୋଟାଏ ମୁଗ୍ଧ, ଲୋଲୁପ ଆଖିରେ ତାଙ୍କୁ ଚାହିଁବା ବେଳେ ସେ ଅନ୍ୟମନସ୍କ ହୋଇଯାଏ ଏବଂ ବାରମ୍ବାର ତାକୁ ଛେପ ଢୋକି ତଣ୍ଟି ଓଦା କରିବାକୁ ପଡ଼େ ।

ଦିନେ ସେ କହିପକାଇଲା ନିଜର ସ୍ୱଭାବ-ସୁଲଭ ସାହସିକତା ନେଇ—"ଗୋଟେ କଥା କହିବି, ରାଗିବ ନି ?"

ଶୁଖିଲା ଲୁଗା ପିନ୍ଧୁଥିବାବେଳେ ଇନ୍ଦୁର ହାତ ଅଟକିଗଲା । ଜିଜ୍ଞାସୁ ମୁହଁ, କୁଞ୍ଚିତ ଭ୍ରୂଲତା ନେଇ ସେ ଚାହିଁଲା ରାଧାକାନ୍ତ ଆଡ଼େ ଏବଂ ପଚାରିଲା—"କ'ଣ ?"

ଟିକିଏ ଅପ୍ରତିଭ ହେବା ଭଳି ଦେଖାଗଲା ରାଧାକାନ୍ତର ମୁହଁ । କହିପକାଇଲା—"ତୁମେ ସତରେ ଭାରି ସୁନ୍ଦର ।"

ଗୋଟାଏ ବିଦ୍ୟୁତ୍ ପ୍ରବାହ ଯେପରି ସଞ୍ଚରିଗଲା ଇନ୍ଦୁର ଓଦା ଦେହ ଉପରେ । ଏ ଗାଁରେ ପହଞ୍ଚିବା ପରେ ଏଭଳି ମନ୍ତବ୍ୟ ପ୍ରକାଶ କରି ନ ଥିଲେ କେହି ତା ମୁହଁ ଉପରେ, ଦେବ ଆଚାର୍ଯ୍ୟ ବି ନୁହଁନ୍ତି । ସେ ବେଶ୍ ଆମୋଦିତ ହେଲା । ଏତେ ସାନ ପିଲାଟା ଆଡ଼କୁ ଦୃଷ୍ଟି ଫେରାଇ ସେ ଧମକ ଦେଲା—"ଯାଉରୁ ନା ଏଠୁ, ବଦ୍‌ମାସ ଟୋକା ।"

ରାଧାକାନ୍ତ ଧାଇଁ ପଳାଇ ଆସିଥିଲା ସତ; ତା'ର କିନ୍ତୁ ହୃଦ୍‌ବୋଧ ହୋଇଥିଲା ଯେ, ତା' କଥା ଇନ୍ଦୁକୁ ଖୁବ୍ ଭଲ ଲାଗିଛି ।

କିଛି ଦିନ ପରେ ଇନ୍ଦୁ ପଚାରିଲା—"ତୁମେ ଆଜ ଦୋକାନ ବାରନ୍ଦାରେ କ'ଣ ସବୁ କହୁଥିଲ କି ?"

—"କ'ଣ କହୁଥିଲି ?" ଦେବ ଆଚାର୍ଯ୍ୟ ଓଲଟା ପଚାରିଲେ ।

—"କିଛି ନ ଥିଲି, ଖଣ୍ଡା ଗୋଟେ ଧରିବାମାତ୍ରେ ଧରଣୀ ଭୂପୃଷ୍ଠିତ ହୋଇପଡ଼େ ଆଉ ସବୁ କ'ଣ କହୁଥିଲି, ମୋର ମନେ ନାହିଁ । ସେତେବେଳକୁ ମୋତେ ଘୁମ୍ପଇ ନିଦ ହୋଇ ଯାଇଥିଲା ।" ଇନ୍ଦୁ ମୁହଁରେ ଥିଲା ଗୋଟାଏ ପ୍ରସନ୍ନ ଭାବ ।

—"ଓ, ଏଥର ବୁଝିଲି ।" ଦେବ ଆଗ୍ରହୀ କହିଲେ । "ଅପେରା ଡାଇଲଗ୍ ! ବେଳେବେଳେ ମୋ ଦେହ ଆଉ ମନ ଭିତରେ କ'ଣ ହୋଇଯାଏ କେଜାଣି ? ଏମିତି ଡାଇଲଗ୍ ବାହାରି ଆସେ ମୋ ପାଟିରୁ । ତୁମକୁ ଭଲ ଲାଗିଲା ?"

—"ଅପେରା ଡାଇଲଗ୍ ? ମୁଁ ଖୁବ୍ ପିଲା ଦିନେ ଯାହା ଅପେରା ଦେଖିଥିଲି । ଟୋକାଗୁଡ଼ାକ ଝିଅ ପାର୍ଟ୍ ନେଲେ ମୋତେ କମିତି ଅଖାଡ଼ୁଆ ଲାଗେ । ଥରେ ସେମିତି ଗୋଟେ ଟୋକାର ମୁଣ୍ଡରୁ ତା'ର ନକଲି କେଶ ଖସି ପଡ଼ିଥିଲା ତଳକୁ । ଯାହା ହସିଚୁ ଆମେ ! ସହରୀ ଟୋକା ସବୁ ଯାତ୍ରା ଦେଖୁଥିଲେ ତ ! ଯାହା ସବୁ କହିଲେ, କାନ ଶୁଣିବ ନାହିଁ ।" ଇନ୍ଦୁ ଏତକ କହିବା ପରେ ଟିକିଏ ଲାଜେଇ ଗଲା ।

—"କ'ଣ ସବୁ କହିଲେ, କହୁନ ?" ଦେବ ଆଗ୍ରହୀ ରସିକତା ଆରମ୍ଭ କଲେ ।

—"ଧେତ୍, ସେଗୁଡ଼ାକ ଶୁଣିବା ପାଇଁ ତୁମର ମନ ହେଉଚି କାହିଁକି ?" କୃତ୍ରିମ ବିରକ୍ତିର ସହିତ ଇନ୍ଦୁ କହିଲା । "ତା'ପର ବର୍ଷ ସହରରେ ସିନେମା ଆରମ୍ଭ ହେଲା । ତାମ୍ବୁ ଲିନ୍ ଢଙ୍କା ହଲ୍ଟାଏ । ଆମ ଗାଁ ସହରରୁ ଦୁଇକୋଶ ଦୂର ହୋଇଥିବାରୁ ମାସରେ ଥରେ-ଦୁଇଥର ଆମେ ସିନେମା ଯାଉଥିଲୁ । ଏବେ ସିନେମା ହଲ୍ଟା ଗୋଟେ ବଡ଼ କୋଠାଘର । ତା' ଭିତରେ ଗଦି ଚେୟାର । ବିଜୁଳି ପଙ୍ଖା । ତୁମେ କେବେ ସିନେମା ଦେଖିଚ ?"

ଦେବ ଆଗୃର୍ଯ୍ୟଙ୍କର ଚେଷ୍ଟା ସତ୍ତ୍ୱେ ବାହାରି ଆସିଲା ଦସ୍ତୁମାସ୍ତୁ ଉତ୍ତରଟିଏ—"ନା ।"

ଏମିତି ବିସ୍ମିତ ଓ ହତାଶ ବୋଧହୁଏ ଆଗରୁ କେବେ ହୋଇ ନ ଥିଲା ଇନ୍ଦୁ । ପଚାରିଲା—"ଏ ମା', ତୁମେ ସିନେମା ଦେଖିନ ?"

—"ଅନେକ ଥର ଦେଖିଛି ।" ଦେବ ଆଗୃର୍ଯ୍ୟ ନିଜକୁ ସଂଶୋଧନ କରି କହିଲେ । "ଏଇ ଆମ ଗାଁରେ ସିନେମା ହେଉଛି ।"

—"ତୁମକୁ ସିନେମା ଭଲ ଲାଗେ ନାହିଁ ?" ଇନ୍ଦୁ ପଚାରିଲା ।

ଦେବ ଆଗୃର୍ଯ୍ୟ ଏଇ ପ୍ରଶ୍ନକୁ ଏଡ଼େଇ ଯିବାକୁ ଗୃହୁଥିଲେ । କହିଲେ—"ଅପେରାରେ କିନ୍ତୁ ଅସଲ ମଜା ଅଛି । ଆଜି ମୋ ଡାଇଲଗ୍ କମିତି ଲାଗିଲା କହୁନ ?"

—"ଆମ ଗାଁକୁ ଗଲେ, ଥରେ-ହ'ଥର ସିନେମା ଦେଖିବା ।" ଦୁହେଁ ଦୁହିଁଙ୍କ କଥା ଏଡ଼ାଉଥିଲେ, ଦୁହିଁଙ୍କର ରୁଚି ଭିନ୍ନାଭିମୁଖୀ ହୋଇଥିବାରୁ ।

ପାଞ୍ଚ-ଛ' ଦିନ ପରେ ଦୋକାନ ବାରନ୍ଦାରେ ଗୃଲିଥିଲା ପଶା-ଖେଳ । କୀର୍ତ୍ତନ ମଉସାଙ୍କ ଘରକୁ ଯେଉଁ ଦୁଇଜଣ କୁଣିଆ ଆସିଥିଲେ, ସେମାନେ ଥିଲେ ପୋଖତ ଗଞ୍ଜୋଡ଼ ଏବଂ ପଶାଖୋର । ଏଥିପାଇଁ ସରଗରମ ଥିଲା ଖେଳଟା । ଦୋକାନ ବାରନ୍ଦା ବେଶ୍ ଜମିଥିଲା ।

ହଠାତ୍ ଘର ଭିତରୁ ଶୁଭିଲା ଉଚ୍ଚ ସ୍ୱରର ହସ । କେହି ଜଣେ ହସି ହସି କିଛି କହିବାକୁ ଚେଷ୍ଟା କରୁଥିଲା; କିନ୍ତୁ ତା'ର କଥା ହସ ଭିତରେ ଫେଣ୍ଟି ହୋଇ ଯାଉଥିବାରୁ ସ୍ପଷ୍ଟଭାବେ ଶୁଭୁ ନ ଥିଲା । ପଶା-ଖେଳର ଆସର ନୀରବ ହୋଇଗଲା ଟିକିଏ । ସମସ୍ତେ ପରସ୍ପରର ମୁହଁକୁ ଅନାଇଲେ । ଦେବ ଆଗୃର୍ଯ୍ୟଙ୍କର କାନମୁଣ୍ଡା ନାଲି ହୋଇଯାଇଥିଲା । ନିତାନ୍ତ ଅପ୍ରସ୍ତୁତ ହେବା ଭଳି ସେ ଦିଶୁଥିଲେ ।

ସେ ପ୍ରତିଜ୍ଞାବଦ୍ଧ ଥିଲେ ସ୍ତ୍ରୀକୁ ଭଲ ଆଚରଣ ଶିଖେଇବା ପାଇଁ । ରାତି ଆଠଟାରେ ଖେଳ ଭାଙ୍ଗିଲା । ସେ ଘରକୁ ଆସି ପଚାରିଲେ—"ଆଜି ଗୃରିଟାବେଳେ କ'ଣ ଏମିତି ହସ କଥା ପଡ଼ିଥିଲା ? ତୁମେ ଏତେ ଜୋରରେ ହସୁଥିଲ ଯେ ତୁମ କଥା ଶୁଭୁ ନ ଥିଲା ଆଦୌ । ଅନ୍ୟ

ଗାଁରୁ ଦୁଇ ଜଣ ଭଦ୍ରଲୋକ ଆସିଥିଲେ । ସମସ୍ତେ ମୁହଁ ଚୁହାଁ ଚୁହିଁ ହେଲେ । ମୋତେ ଅପମାନିତ ଲାଗିଲା ।”

ଏତକ ଯଥେଷ୍ଟ ଥିଲା ଇନ୍ଦୁକୁ ଉତ୍ୟକ୍ତ କରିଦେବା ପାଇଁ । କହିଲା—“ସତେ ? ଅପମାନ ଲାଗିଲା ? ଯାଉନ ଅନ୍ୟ କେଉଁଠି ପଶା ଖେଳିବ ! ଅନ୍ୟ ଗାଁର କିଏ ଏସିଲା ବୋଲି ମଣିଷ ନିଜ ଘରେ ବି ହସିବ ନାହିଁ କି କଥା କହିବ ନାହିଁ ? ସବୁବେଳେ ଘର କୋଣରେ ବସିଥିବ ଚୂପ୍ ହୋଇ ?”

ଦେବ ଆଚାର୍ଯ୍ୟ ଖିଡିମଡି ଦବିଗଲେ ଇନ୍ଦୁ ଆଖିର ଲୁହ ଦେଖି । ତା’ ପିଠି ଆଉଁସାଇ ଆଶ୍ୱାସନା ଦେବାବେଳେ ମୁହଁ ଛୁଆଁଡ଼ ସେ କହିଲା—“ଛାଡ଼ । ମୋତେ ସେମିତି କଥା ଜମା ଭଲ ଲାଗେ ନାହିଁ । ମୁଁ କ’ଣ ଦାଣ୍ଡିଆଣୀ ହୋଇଛି ନା କ’ଣ ଯେ, ମୋ ହସ ଶୁଣି ତୁମେ ଅପମାନିତ ହୋଇଗଲ ?”

ଏହାର ଅଳ୍ପଦିନ ପରେ ଚାଲିଥାଏ ତାସ୍ ଖେଳ । କହିବା ବାହୁଲ୍ୟ, ଦେବ ଆଚାର୍ଯ୍ୟ ଟିକିଏ ସଚେତନ ହେଉଥାନ୍ତି ସବୁବେଳେ । ଆଶଙ୍କା କରୁଥାନ୍ତି, ଘର ଭିତରେ ପୁଣି ଗୋଟାଏ ହସର ବିସ୍ଫୋରଣ ସୃଷ୍ଟି ହେବ କି ? କିନ୍ତୁ ସେମିତି କିଛି ଶୁଣାଯାଉ ନ ଥାଏ । ଦେବ ଆଚାର୍ଯ୍ୟଙ୍କ ପାଖରେ ସବୁବେଳେ ଥୁଆ ହେଉଥିବା ପକେଟ୍ ଓ୍ୱାଚ୍‌ଟା ଦେଖି ନ ପାରି ଜଣେ ପଚାରିଲା—“ଆଚାର୍ଯ୍ୟ, ଟାଇମ୍ କେତେ ହେଲା ?”

—“କେଜାଣି ଚାରିଟା କି ସାଢ଼େ ଚାରିଟା ହେବ ।” ଅନୁମାନ କରି କହିଲେ ଦେବ ଆଚାର୍ଯ୍ୟ ।

—“କାହିଁକି ? ତୁମ ଘଡ଼ିଟା ଗଲା କୁଆଡ଼େ ?

—“ଘଡ଼ି ? ଘରେ ଅଛି ।” ଦେବ ଆଚାର୍ଯ୍ୟ କହିଲେ, ଅପଦସ୍ଥ ହେବା ଭଳି ମୁହଁ କେଇ—“ସିଏ ଚାରି ଘଣ୍ଟାରେ ଥରେ ଲେଖାଏଁ ଟିକିଏ ଖାଇବ । ସେଥିପାଇଁ ଘରେ ଅଛି ।”

ଆଉ ଦିନେ ରାତି ଆଠଟା ବେଳେ ପଶାଖେଳ ସରିଲା । ଅନନ୍ତ ସତରଞ୍ଜିଗୁଡ଼ାକୁ ଭଙ୍ଗାଭଙ୍ଗି କରୁଥିବାବେଳେ ମନେପକେଇ ଦେଲା ଯେ, ଠାକୁରଙ୍କ ନିତିକାମ ପାଇଁ ଜରୁରୀ ଜିନିଷ କେତେଟା ଦୋକାନରେ ନାହିଁ ।

ମହାଦେବଙ୍କ ମନ୍ଦିରରେ ଦୁଇବେଳା ବିଭିନ୍ନ ପ୍ରକାରର ଚମତ୍କାର ଭୋଗ ଲାଗେ ଓ ଧୂପ ଦିଆଯାଏ । ବିଭିନ୍ନ ସରଞ୍ଜାମ ଦେବ ଆଚାର୍ଯ୍ୟଙ୍କ ଦୋକାନରୁ ଆସେ । ମାସ ଶେଷରେ ଦାମ ପଇସା ପଇଠ କରି ଦିଆଯାଏ । ସକାଳ ଆଠଟା-ସାଢ଼େ ଆଠଟାବେଳେ ସମସ୍ତ ସରଞ୍ଜାମ ଗୋଟାଏ ବଡ଼ ଡାଲାରେ ଧରି ବ୍ରାହ୍ମଣ ଜଣେ ଯାଏ ପୂଜା କରିବା ପାଇଁ ପାହାଡ଼ ଉପରେ ଥିବା ମନ୍ଦିରକୁ । ଆଉ ଜଣେ ସହକାରୀ ଘରରେ ପାଣି ଓ କାଠ ନିଏ । ଫୁଲ ଓ ବେଲପତ୍ର ଇତ୍ୟାଦି ନେଇଯାଏ ଠାକୁରଙ୍କ ମାଳୀ । ଦିନ ଏଗାରଟା-ବାରଟା ବେଳକୁ ଭୋଗ ପ୍ରସ୍ତୁତ ହୋଇଯାଏ ମନ୍ଦିର ପାଖରେ ଥିବା ରୋଷେଇ ଘରେ । ଧୂପ ବଢ଼ିଯାଏ ତା' ପରେ ପରେ ।

ଦେବ ଆଚାର୍ଯ୍ୟ ବିରକ୍ତ ହେବାକୁ ଯାଉଥିଲେ ଅନନ୍ତ ଉପରେ, ଏତେ ଡେରିରେ ତାଙ୍କୁ ଏକଥା କହିଥିବାରୁ; କିନ୍ତୁ ତାଙ୍କର ମନେ ପଡ଼ିଲା ଯେ, ପଶାଖେଳ ହେବାର ଯଥେଷ୍ଟ ଆଗରୁ ଅନନ୍ତ ଏ ସମ୍ବନ୍ଧରେ ତାଙ୍କୁ ସତର୍କ କରିଦେଇଥିଲା । କିନ୍ତୁ ପଶାଖେଳ ହେବ ବୋଲି ଜାଣିଲେ ସେ ହିତାହିତ ଜ୍ଞାନ ପାଶୋରି ପକାନ୍ତି । ସାଇକେଲ କିଣି ନ ଥିବାବେଳେ ମନ୍ଦିରରେ ଦରକାର ହେଉଥିବା ଜିନିଷ ପ୍ରତି ସେ ସବୁଠୁ ବେଶୀ ସଚେତନ ଓ ଯତ୍ନବାନ ଥିଲେ । ସାଇକେଲ କିଣିବା ପରେ ଏ ଦିଗ ପ୍ରତି ତାଙ୍କର ଧ୍ୟାନ କୋହଳ ହୋଇଯାଇଛି । ଅନେକବାର ରାତି ଆଠଟା ବେଳେ ବାର କିଲୋମିଟର ଦୂର ବଜାରକୁ ସେ ଯାଇଛନ୍ତି ଡାଇନାମୋ ଆଲୁଅର ସଫେଦ ଆଖି ସାହାଯ୍ୟରେ । ହାତରେ ତ ସବୁବେଳେ ଗୁପ୍ତି ବାଡ଼ିଟା ରହିବା କଥା । ସକାଳେ ଯାଇ ନିର୍ଦ୍ଦିଷ୍ଟ ସମୟ ବେଳକୁ ସଉଦା ନେଇ ଫେରି ହେବ ନାହିଁ । ସେ ପହଞ୍ଚିବା ବେଳକୁ ବଜାରର ଦୋକାନ ଖୋଲି ନ ଥିବ ।

ଘର ଭିତରକୁ ଆସି ଦେବ ଆଚାର୍ଯ୍ୟ ତରତର ହୋଇ କାମିଜ ପିନ୍ଧିବା ବେଳେ ଆଶା କରୁଥିବା ପ୍ରଶ୍ନଟି ଶୁଣିଲେ—"ଏତେ ରାତିରେ କୁଆଡ଼େ ବାହାରିଲ ?"

ବୋତାମ ଲଗାଉ ଥିବା ଅବସ୍ଥାରେ ନରମ ଓ କ୍ଷମା ମାଗିବା ସ୍ୱରରେ କୈଫିୟତ ଦେଲେ—"ମୋର ମନେ ନ ଥିଲା ଯେ ଠାକୁରଙ୍କ

ସେବା ପାଇଁ କେତେଟା ଦରକାରୀ ସଉଦା ଦୋକାନରେ ନାହିଁ । ମୁଁ ଘଣ୍ଟାଏ-ଦେଢ଼ ଘଣ୍ଟା ଭିତରେ ଫେରି ଆସିବି ।"

ଇନ୍ଦୁକୁ ସେ'ଭଳି ରାଗିବାର ଦେଖିବା ଦେବ ଆଚାର୍ଯ୍ୟଙ୍କ ପାଇଁ ତାହା ଥିଲା ପ୍ରଥମ—"ମନେ ରହିବ କେମିତି ? ଦଳେ ଲୋକଙ୍କୁ ନେଇ ଚବିଶ୍ ଘଣ୍ଟା ତାସ୍-ପଶା ଖେଳୁନ ? ଚିନ୍ତା ନା ଦୁଃଖ ? ଏଣେ ଦିନ ସାରା ଚାକରାଣୀ ଭଳି ଖଟି ବିଶ୍ରାମ ଟିକିଏ ନେବି କ'ଣ, ଅଧରାତି ଯାଏଁ ଭାତ ହାଣ୍ଡି ଧରି ବସିଥିବି ସ୍ୱାମୀଙ୍କ ପାଇଁ । ତୁମେ ଯୁଆଡ଼େ ଯାଉଚ ଯାଅ । ମୁଁ ଚୁଲି ମୁଣ୍ଡରେ ଥୋଇ ଦେଇଥିବି ତୁମ ଭାତ ବେଳି । ମୋତେ ନିଦରୁ ଉଠେଇବ ନି । ନିଜେ ଆଣି ଗିଳିବ ।"

କଥାଟା ହାଲୁକା କରିବା ପାଇଁ ଚେଷ୍ଟା କରି ଦେବ ଆଚାର୍ଯ୍ୟ କହିଲେ—"ମୁଁ ସଙ୍ଗେ ସଙ୍ଗେ ଫେରି ଆସିବି । ତୁମେ ଭାଲୁ କି ଆଉ କେଉଁଥି ପାଇଁ ଡରୁଚ ତ ? ମୋର କିଛି କ୍ଷତି ହେବ ନାହିଁ ।"

—"ମୁଁ ସେସବୁ କଥା ଭାବୁ ନାହିଁ । ମୋର ଟିକିଏ ଶାନ୍ତି ଦରକାର, ବିଶ୍ରାମ ଦରକାର । ଏଠି କୋଉ ଚାକର-ଚାକରାଣୀ ଗୁଡ଼ାଏ ଅଛନ୍ତି ଯେ କାମରେ ମୋତେ ସାହାଯ୍ୟ କରିବେ ?" ଇନ୍ଦୁ କହିଲା ଏବଂ ପଳେଇଗଲା ବେଡ଼େଇ ଘର ଭିତରକୁ ।

ଦେବ ଆଚାର୍ଯ୍ୟଙ୍କ ଡାଇନାମୋ ଆଲୁଅ ଝଗଝଗା ଅନ୍ଧାରର ମରୁଭୂମି ଭିତରେ ଗତି କରୁଥିଲା ଗୋଟାଏ ସ୍ରୋତ ଭଳି । ଅଥଚ ତାଙ୍କ ଭାବନା ଜଖମ ହୋଇ ଯାଇଥିଲା ସେପରି । ସେ ବାସ୍ତବିକ୍ ଦେଖିପାରୁ ନ ଥିଲେ କିଛି । ଏତେ ରାତିରେ ବାହାରକୁ ଗଲେ ତାଙ୍କର କିଛି ଅଘଟଣ ଘଟିପାରେ ବୋଲି ଆଶଙ୍କା କରି ଇନ୍ଦୁ ଯଦି ତାଙ୍କୁ ଘରେ ଅଟକାଇ ରଖିପାରିଥାନ୍ତା, ତେବେ ସେ ଏଭଳି ଆହତ ହୋଇ ନ ଥାନ୍ତେ । ତାଙ୍କୁ ଜଣା ପଡ଼ୁଥିଲା, ତାଙ୍କ ଗତିଶୀଳତାକୁ କେହି ପଛରୁ ଅଟକେଇବା ପାଇଁ ଚେଷ୍ଟା କରୁଚି । ତାଙ୍କର ମୁକ୍ତ ଓ ଚଞ୍ଚଳ ମନ ଉପରକୁ ଓହ୍ଲେଇ ଆସୁଚି ଗୋଟାଏ ଅଦୃଶ୍ୟ ଓଜନ ।

ସେ'ଦିନ ରାତିରେ ଏଇ ମାମୁଲି ଘଟଣା ଅଯଥା କ୍ଷତ ସୃଷ୍ଟି କରିଥିଲା ତାଙ୍କ ମନରେ । ରାତି ପ୍ରାୟ ଦଶଟାବେଳେ ଫେରି ଆସି ସେ

ଧୂଆଧୋଇ ହେଲେ ପୋଷାକ ବଦଳାଇବା ପରେ । ଇନ୍ଦୁ ଠିକ୍ ମନଦରେ ଶୋଇ ନ ଥିଲି; ଅଥଚ ତାଙ୍କ ପାଇଁ ବାଡ଼ିନେବା ସକାଶେ କୌଣସି ତତ୍ପରତା ନ ଥିଲା ତା' ପାଖରେ । କିଛି ସମୟ ଅପେକ୍ଷା କରିବା ପରେ ସେ ଆସିଲେ ବେଷ୍ଟେଇ ଘରକୁ । ଚୂଲି ପାଖରେ ଥୁଆ ହୋଇଥିଲା ଘିଅ ବେଲି ଓ ଡାଲି । ଦେବ ଆଗ୍ରହୀ ହାତ ବଢ଼ାଉ ଥିଲେ ଏବଂ ଅନୁଭବ କରୁଥିଲେ, ତାଙ୍କୁ ଆହୁରି ଚେଷ୍ଟା କରିବାକୁ ପଡ଼ିବ ବେଲିକୁ ସ୍ପର୍ଶ କରିବା ପାଇଁ । ତାଙ୍କ ହାତ ଓ ବେଲି ମଧ୍ୟରେ ତଥାପି ରହିଥିଲା ଅନେକ ବ୍ୟବଧାନ । ଅନେକ ହା-ହୁତାଶମୟ ଦୂରତା ।

ଗୋବିନ୍ଦ ଘର ପାଖରେ ପହଞ୍ଚିବା ବେଳକୁ ସକାଳ ଦଶଟା ପାଖାପାଖି । ବାଡ଼ରେ ଲାଗିଥିବା ତାଟି ଖୋଲିଲେ ଷ୍ଟ୍ରିଟ ବାହାର । ଡାହାଣ ପାଖକୁ ବେଷ୍ଟେଇ ଘର । ସାମନାରେ ଲମ୍ବ ହୋଇ ତିନି ବଖରା ଘର । ତାଟି ଖୋଲି ଭିତରକୁ ଆସିବା ପାଇଁ ଇତସ୍ତତଃ ହେବାକୁ ପଡ଼ିଲା ନାହିଁ । ତିନି ବର୍ଷ ପରେ ସେ ଜେଲରୁ ଖଲାସ ହୋଇ ଆସିଛି ବୋଲି କଥାଟା ସ୍ପଷ୍ଟ ହୋଇଗଲା କେମିତି କେଜାଣି । କଠଉ ଯୋଡ଼ି ନଈ ପାଖରୁ ଦଳେ ଅନୁସନ୍ଧିତ୍ସୁ ପିଲା ଓ ବୟସ୍କ ଲୋକ ଅନୁସରଣ କରି ଆସୁଥିଲେ ତାକୁ । ଘର ପାଖରେ ପହଞ୍ଚିବାବେଳକୁ ସେମାନଙ୍କର ସଂଖ୍ୟା ଢେର ବଢ଼ି ଯାଇଥିଲା । ତା' ଦେହରେ ଥିବା ଗୋଟାଏ ପଚମାନ ଘା'କୁ ବେଢ଼ିଯିବା ପାଇଁ ସତେ ଯେପରି ବିରକ୍ତିକର ମାଛି ଦଳେ ଗୋଡ଼ାଇ ଥିଲେ ତାକୁ ।

ବାହାରଟା ଶୂନ୍ ଶାନ୍ । ସ୍କୁଟଶାଳୀ କେବେଠୁ ବନ୍ଦ ହୋଇ-ଗଲାଣି ବୋଲି ସେ ବା ଜାଣିଥାନ୍ତା କିପରି ? ପିଣ୍ଡା ଉପରେ ବାପା ବସି ପୂଜାପାଠ କରୁଚନ୍ତି । ଗାଧୋଇ ସାରିବା ପରେ ଅଧଘଣ୍ଟାଏ ତାଙ୍କର ବିତେ ଏଇଥିରେ । ସାନଭାଇ ହାଡ଼ବନ୍ଧୁ ଓରଫ ହାଡ଼ଆ କିମ୍ବା ମା' ଦେଖାଯାଉ ନାହାନ୍ତି ।

ସେ ଚୂପ୍‌ଚାପ୍ ଗୋଟିଏ କୋଠରୀ ଭିତରେ ପଶିଗଲାବେଳେ ଘର ପଛରେ ଥିବା ପ୍ରକାଣ୍ଡ ବାଡ଼ିଆଡ଼ୁ ମା' ଆସୁଥିଲା । ପ୍ରଥମେ ତା'ର ଭ୍ରୂକୁଞ୍ଚନ ହେଲା; କିନ୍ତୁ ପରେ ତାକୁ ଚହ୍ନିପାରିବା ମାତ୍ରେ ମୁହଁ ତା'ର ଉଜ୍ଜ୍ୱଳ ହୋଇପଡ଼ିଲା ଅଦ୍ଭୁତ ଏକ ସ୍ମିତ ହସ ଓ ଆଖିର ଲୁହରେ ।

କେତେବେଳେ ଆସିଲୁରେ ବାପ ବୋଲି କହିବା ମାତ୍ରେ ସେ ସମ୍ଭାଳି ପାରିଲା ନାହିଁ କ୍ରୋଧ ଓ ଲୁହ । ସେ ଗୋବିନ୍ଦର ସର୍ବାଙ୍ଗରେ ହାତ ବୁଲାଇ ଆଣିଲା ନିଶ୍ଚିତ ହେବା ପାଇଁ ଯେ, ତିନି ବର୍ଷର ଜେଲ-ରହଣୀ ତା' ଦେହର କୌଣସି କ୍ଷତି କରିନାହିଁ । ତା'ର ଗହଳିଆ କେଶ ଉପରେ ହାତ ବୁଲାଇ ଆଣି ସେ ଗୋଟିଏ ଦୀର୍ଘ ଚୁମ୍ବା ଦେଲା ତା'ର କପାଳରେ ।

ସଙ୍କର୍ଷଣ ମାଷ୍ଟ୍ରେ କୌଣସିମତେ ପୂଜାପାଠ ଶେଷକରି ଉଠି ଆସିଲେ ବସିବା ଜାଗାରୁ । ତାଙ୍କ ମୁହଁରେ କୌଣସି ଆବେଗର ଭାଷା ନ ଥିଲା । ଗୋବିନ୍ଦ ଲକ୍ଷ୍ୟ କଲା, ଏତିକ ଦିନ ଭିତରେ ବାପାଙ୍କର ପ୍ରାୟ ସବୁ କେଶ ପାଚି ଯାଇଚି । ଦେହ ଦିଶୁଚି ହାଡ଼ମୟ, ମୁହଁ ଝାଙ୍କୁଆ, ପାଟି ଦାନ୍ତହୀନ । ମାଷ୍ଟ୍ରେ କହିଲେ—"ତାକୁ ପାଣି ଦିଅ । ସେ ଧୋଇ ହେଉ । ପଚାରିଲ, ସେ ଗାଧୋଇଚି ନା ନାହିଁ ?"

ସେଇଭଳି ପିଣ୍ଡା ଉପରେ ଠିଆ ହୋଇ ମାଷ୍ଟ୍ରେ ଚାହିଁଲେ ରାସ୍ତା ଉପରକୁ । ବେଶ୍ କିଛି ସଂଖ୍ୟକ ଆଗ୍ରହୀ ମୁହଁ ଦିଶିଯାଉଚି ବାଡ଼ର ଛିଣ୍ଡା ପର୍ଦ୍ଦା ମଧ୍ୟ ଦେଇ । ସେ କିଛି କହିଲେ ନାହିଁ । ଗାଁର ସର୍ବପ୍ରଥମ ଜେଲ ଫେରନ୍ତା କଇଦି କିଭଳି ଦେଖାଯାଏ, ତାହା ଜାଣିବା ପାଇଁ ଉତ୍କଣ୍ଠା ହେବା ସ୍ୱାଭାବିକ ।

କିଛି ଦିନ ପରେ ଗୋବିନ୍ଦ ଅନୁଭବ କଲା ଯେ, ଗୋଟିଏ ଜେଲ୍‌ରୁ ମୁକ୍ତ ହେବା ପରେ ସେ ଆବଦ୍ଧ ହୋଇ ରହିଚି ଆଉ ଗୋଟିଏ ଜେଲ୍‌ରେ । ଏ ଜେଲ୍‌ରେ ଅବଶ୍ୟ ପ୍ରଥମ ଜେଲ୍ ଭଳି ଉଚ ପାଚେରି ନ ଥିଲା, ସମୟ ଅନୁସାରେ ବିଭିନ୍ନ କାମ କରିବାକୁ ହେଉ ନ ଥିଲା, କିନ୍ତୁ ନିଜ ଘର ଭିତରେ ସେ ଅଣନିଃଶ୍ୱାସୀ ହୋଇଯାଉଥିଲା ଆସ୍ତେ ଆସ୍ତେ । ଖୁବ୍ ସକାଳେ, ତାକୁ କେହି ଦେଖି ନ ପାରିବା ଭଳି ନିତ୍ୟକର୍ମ ଶେଷ କରୁଥିଲା ସେ, ଏବଂ ଘର ଭିତରେ ବସି ରହୁଥିଲା । ବାହାରକୁ ବାହାରି ପାରୁ ନ ଥିଲା ଜମା, କୌଣସି ଲୋକ ସହିତ ମିଳାମିଶା କରିବା ତ ଦୂରର କଥା । ଗୋଟାଏ ଅହେତୁକ କ୍ରୋଧ ଘନୀଭୂତ ହେଉଥିଲା ତା ଭିତରେ । ନିଜ ମନ ଭିତରେ ସୃଷ୍ଟି ହୋଇଯାଇଥିବା ଅଦୃଶ୍ୟ ପାଚେରି

ଉପରେ ନିଜକୁ ମୁକ୍ତ କରିବାର ଇଚ୍ଛା ବାରମ୍ବାର ମୁଣ୍ଡ ପିଟୁଥିଲା । ଅଥଚ ଅଦୃଶ୍ୟ ପାଚେରୀ ଠିଆ ହୋଇ ରହିଥିଲା ଆଗଭଳି ତା ପ୍ରତି ବିଦ୍ରୂପ ଓ ତିରସ୍କାରର ଅନୁଚାରିତ ଭାଷା ହୋଇ ।

ବାପା ଆଗଭଳି ବ୍ୟସ୍ତ ରହୁଥିଲେ । ତାଳପତ୍ର ଉପରେ ଲେଖି ଦେଉଥିଲେ ପୃଥିବୀକୁ ଆସିଥିବା ନୂଆ ମଣିଷର ଭାଗ୍ୟ । କଳା ଓ ଧଳା କନା ପଡ଼ିଥିବା ଛତା କାଖ ତଳେ ଜାକି ବାହାରି ଯାଉଥିଲେ ଅନ୍ୟ ଗାଁ'କୁ କୌଣସି ଲୋକର ଗ୍ରହମାନଙ୍କର କ୍ରୋଧ ଶାନ୍ତ କରିବା ପାଇଁ । ଆଗଭଳି ସେ ନିଶ୍ଚୟ ଭୂଇଁ ଉପରେ ଗାର କାଟୁଥିବେ ଏବଂ ପୂଜାର ଆୟୋଜନ କରୁଥିବେ । କେଉଁ ତିଥିରେ ବାହାଘର କଲେ ସ୍ୱାମୀ-ସ୍ତ୍ରୀ ନିର୍ଜଞ୍ଜାଳ ଜୀବନ ଯାପନ କରିବେ ଏବଂ ଧନ-ଜନ-ଗୋପ-ଲକ୍ଷ୍ମୀରେ ସେମାନଙ୍କର ସଂସାର ଭରପୂର ହୋଇଯିବ, ତାହା ତାଙ୍କୁ ନିର୍ଣ୍ଣୟ କରିବାକୁ ପଡ଼ୁଥିଲା ଜାତକ ମିଳାଇ ଓ ପାଞ୍ଜିର ସାହାଯ୍ୟ ନେଇ । ପାଠ-ଶାଠ ଭଲ ହେଲା ନାହିଁ ବୋଲି ହାଡ଼ିଆ ଏବେ ଶିଖୁଛି ବଂଶର ଏଇ ପାଠକୁ ।

କ'ଣ ତେବେ କରାଯାଇପାରେ ଜ୍ୟୋତିଷ ବିଦ୍ୟା ଆୟତ୍ତ କରିବ ? କେଉଁ ଲୋକ କ'ଣ ଆସିବେ ତା ପାଖକୁ ? ଚାଷ ? ବେଶୀ-ଗୁଡ଼ାଏ ଜମି ନାହିଁ । ଧାନ ଫସଲ ଉଠିଗଲା ପରେ ଜମି ଆକାଶକୁ ଚାହିଁ ହାଁ କରି ପଡ଼ି ରହେ । ଦୋକାନ ? ନ ହେଲେ ଆଉ କିଛି ବ୍ୟବସାୟ ? ଗୋବିନ୍ଦ ସଙ୍କୁଚିତ ହୋଇଯାଉଥିଲା ଏବଂ ମନ ଭିତରେ ଉଦୟ ହେଉଥିବା ସମସ୍ତ ଉପାୟ ଅସ୍ତ ହୋଇ ଯାଉଥିଲା ସଙ୍ଗେ ସଙ୍ଗେ ତା ମନରେ ସଙ୍କୋଚ ଓ ଲାଜ ଦିଗ୍‌ବଳୟରେ । କେତେ ଦିନ ଘରେ ବସି ରହିବ ସେ ଗୋଟାଏ ହାସ୍ୟାସ୍ପଦ ବୋଝ ହୋଇ ?

ଅଥଚ କିଛି ଗୋଟାଏ କରିବା ପାଇଁ ଅସ୍ଥିର ହୋଇପଡ଼ୁଥିଲା ସେ । କିଛି ଗୋଟାଏ କରିବା ଦରକାର, ଯାହା ଫଳରେ ସେ ଘରକୁ ସଜାଡ଼ି ପାରିବ । କାମଟା ଏମିତି ହେବା ଦରକାର ଯେ ବାହାରର ଲୋକ ସହିତ ସମ୍ପର୍କ ସ୍ଥାପନ କରିବା ଆବଶ୍ୟକ ହେଉ ନ ଥିବ । ଜେଲ୍‌ର ପ୍ରକାଣ୍ଡ ପରିସର ସବୁଜିମାର ଏକ ସଂକ୍ଷିପ୍ତ ସମୁଦ୍ର ଥିଲା ।

ଗଛପତ୍ର ଇତ୍ୟାଦି ପବନରେ ହଲୁଥିଲେ ମହୋତ୍ସବର ଲହରୀ ଭଳି । ଏଇ ମହୋତ୍ସବ ଆପାତତଃ ପଥୁରିଆ ଅନୁର୍ବର ମାଟିର ଗର୍ଭରୁ ଉଠି ଆସୁଥିଲା ଉପରକୁ । କଇଁଆମାନଙ୍କର ପରିଶ୍ରମ ମନ୍ତ୍ର ଭଳି ମଞ୍ଜିକୁ ଆହ୍ୱାନ କରୁଥିଲା ସବୁଜ ଗଛରେ ରୂପାନ୍ତରିତ ହେବାପାଇଁ ଏବଂ ଫୁଲ ଓ ଫଳ ଧରି ଜୀବନର ସ୍ପନ୍ଦିତ ପତାକା ହେବାପାଇଁ । ଜଣା ପଡ଼ୁଥିବା ସେହି ଅଥବା ମାଟି ଭିତରେ ମଧ୍ୟ ରହିଥିଲା ରସ—ଗଛମାନଙ୍କ ପାଇଁ ସ୍ତନର କ୍ଷୀର ଭଳି । ସେଇ କ୍ଷୀର ସଞ୍ଚରି ଯାଉଥିଲା ମଞ୍ଜି ଓ ଗଛର ଦେହରେ । ଉଚ୍ଛୁରି ଆସୁଥିଲା ସବୁଜ ରଙ୍ଗର ମହାନ୍ ସ୍ରୋତ ।

ଘର ପଛରେ ଥିବା ଏଇ ପ୍ରକାଣ୍ଡ ବାରିକୁ ସେଇଭଳି ମନ୍ତ୍ର ଧ୍ୱନି ଜରିଆରେ ଜୀବନ୍ତ କରାଯାଇପାରେ । ଆକାରହୀନ ହୋଇ ମାଟି ପିଣ୍ଡୁଳାଟିଏ ଭଳି ପଡ଼ି ରହିଥିବା ଏଇ ବାରିକୁ ରୂପାନ୍ତରିତ କରାଯାଇ ପାରେ ଗୋଟିଏ ମୃଣ୍ମୟ କମନୀୟ ମୂର୍ତ୍ତିରେ । କିନ୍ତୁ ଏଥିପାଇଁ ଦରକାର ହେବ ପାଣି । ତାହା ଆସିବ କେଉଁଠୁ ... ଦେବ ଆଗୃହଁୟଙ୍କ ଦୋକାନ ପାଖରେ ଥିବା ମହାଦେବଙ୍କ କୂଅରୁ ପାଣି ଆଣିବାକୁ ପଡ଼େ ପିଇବା ପାଇଁ । ଗାଧୁଆ-ପାଧୁଆ ହୁଏ ପୋଖରୀରେ । ଗ୍ରୀଷ୍ମ ଦିନରେ ପାଣି ପାଇବା ଆହୁରି କଷ୍ଟ ହୁଏ । କ'ଣ କରାଯାଇପାରେ ତା ହେଲେ ? ଗୋବିନ୍ଦ ହତୋତ୍ସାହ ଓ ନୈରାଶ୍ୟରେ କେବଳ ଦୀର୍ଘଶ୍ୱାସ ତ୍ୟାଗ କଲା ।

—"ତୁ ତ ଘରୁ ଜମା ପଦାକୁ ବାହାରିବୁ ନାହିଁ । ଜାଣିବୁ କେମିତି କେଉଁଠି କ'ଣ ହେଉଛି ?" କୁମର ଉତ୍ସାହିତ କରିବା ଭଙ୍ଗୀରେ ଗୋବିନ୍ଦକୁ କହିଲା । ଗୋବିନ୍ଦ ଆଦୌ ବିଶ୍ୱାସ କରି ନ ଥିଲା, ଗାଁ ଅପେରା ପାଇଁ ପାଗଳ ହେଉଥିବା କୁମର ଧ୍ୟା' ମଧ୍ୟରେ ଏତେ ବଦଳି-ଗଲାଣି ବୋଲି । ବାବୁରି କେଶ ସେ କାଟି ଦେଇଥାଏ । ପିନ୍ଧିଥାଏ ସଫା ଖଦଡ଼ ଧୋତି ଓ ହାଫ୍ କମିଜ । ଗୋଡ଼ରେ କଳା ରଙ୍ଗର ଚମଡ଼ା ଜୋତା । ତା' ମୁହଁରୁ ଆତ୍ମ ବିଶ୍ୱାସ ଓ ଦାମ୍ଭିକତା ବିଚ୍ଛୁରିତ ହେଉଥାଏ । ସେତେବେଳଯାଏଁ ସାଇକେଲ ଉପରେ ବସିଥିବା କୁମର ଓହ୍ଲାଇଲା ତଳକୁ । ପିଣ୍ଡା କଡ଼ରେ ସେଇଟାକୁ ଡେରିଦେଲା ଏବଂ ଆଠ-ଦଶ ପାହୁଣ୍ଡ ଚାଲିଲା । ଗୋବିନ୍ଦ କାହିଁକି କେଜାଣି ଅଭିଭୂତ ହୋଇଗଲା ଲୋକଟାର ଚାଲିବା ଢଙ୍ଗ ଦେଖି । ସେ ଯେପରି ଅଯଥା ଦୃଢ଼ତାର

ସହିତ ଜୋତା-ମଣ୍ଡିତ ପାଦ ପକାଉଥିଲା ଧରଣୀକୁ ଖିତବିସ୍ତ କରିବା ପାଇଁ ଓ ତା'ଠାରୁ ଆର୍ତ୍ତନାଦ ଶୁଣିବା ପାଇଁ ।

—"ତୁ ଗୋଟାଏ କାମ କର ।" ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ଉପାୟ ବତାଇବାକୁ ଚେଷ୍ଟା କଲା କୁମର । "ଯଦି ଘର ପାଖରେ ରହିବୁ ବୋଲି ଭାବୁଚୁ, ତେବେ ଲୋନ୍ ଆଣି ବାରିରେ କୂଅ କର । ମୋ ମତରେ ପୋଖରୀ ଗୋଟେ କଲେ ଆହୁରି ଲାଭ । ମାଛ ଚାଷ ସହିତ ପରିବା ଚାଷ । ଯାହା ତୁ କରିପାରିବୁ ।"

ଗୋବିନ୍ଦ ପ୍ରଲୁବ୍ଧ ହୋଇପଡ଼ୁଥିଲା କୁମର ଭିତରେ ଭରସା ଆବିଷ୍କାର କରି । ସେ ଆପତ୍ତି କଲା—"ପୋଖରୀ ପାଇଁ ଏତେ ବଡ଼ ଜାଗା କାହିଁ ? ତା'ଛଡ଼ା ବହୁତ ଟଙ୍କା ଦରକାର ହେବ ।"

କୁମର ହସିଲା, ତା' ଜୀବନରେ ସବୁଠାରୁ ତୁଚ୍ଛ, ମାମୁଲି ସମସ୍ୟାଟିଏ ଶୁଣିବା ଭଳି । କହିଲା—"ପଞ୍ଚାୟତରେ ମୁଁ ହେଉଚି ନାଏବ ସରପଞ୍ଚ । ମୋର କାମ ଦରକାର । ଏ ମୁତୁଫର୍କା ବି. ଡ଼ି. ଓ., କଲେକ୍ଟର ସାମନାରେ ଗୋଡ଼ଭାଙ୍ଗି ଠିଆ ହେବ କାହିଁକି ? ସିଧା ଯିବ ମିନିଷ୍ଟର ପାଖକୁ । ସିଏ କାମ କରିବ, ମୁଁ ଆସିବ ।"

ଟିକିଏ ଦମ୍ ନେଇ କହିଲା—"ପୋଖରୀ ଯଦି କରିବାକୁ ଇଚ୍ଛା, ମୋତେ କହ । ତୋ ବାରିକୁ ଲାଗିଚି ସରକାରୀ ଜମି । ସେ ଦାୟିତ୍ୱ ମୁଁ ନେବି । ଲୋନ୍ କରାଇ ଦେବି । ଯେତେ ତୋର ଦରକାର । କ'ଣ କହୁଚୁ ?"

ଗୋବିନ୍ଦର ଭାବନା ଗଣ୍ଡଗୋଳିଆ ହୋଇ ଯାଉଥିଲା । କୁମରର ବ୍ୟକ୍ତିତ୍ୱ ଏତେ ବିଶାଳ ଓ ଶକ୍ତିଶାଳୀ ଜଣା ପଡ଼ିଲା ଯେ, ସେ ନିତାନ୍ତ ଅକିଞ୍ଚନ ଓ ଦୁର୍ବଳ ହୋଇଗଲା ତା' ପାଖରେ । କହିଲା—"ମୁଁ ଟିକିଏ ଭାବି ତୋତେ କହିବି ।"

—"ଗାଁର ଦକ୍ଷିଣ ଦିଗରେ କ'ଣ ସବୁ ହେଲାଣି, ଦେଖିଚୁ ?" ପଚାରିଲା କୁମର ।

—"ନା । କ'ଣ ସବୁ ହେଲାଣି ?"

—"ସେଇଟା ଥିଲା ଖମଣ ଜଙ୍ଗଲ । ପିଲାଦିନେ ଆମେ ତା' ଭିତରେ ଅନେକ ଠେକୁଆ ଶିକାର କରିଚେ । ଗୁରୁ ପାଞ୍ଚଟା ମିରିଗ ମାରିଚେ । ଭାଲୁ କଥା ପଗ୍ଚରେ କଏ, ବାଘ ଅନେକ ଥର ସେଇଠି ଗାଈ-ବାଛୁରି ମାରିଚି ।"

ଗୋବର୍ଦ୍ଧନ ଫେରିଯାଉଥିଲା ଅତୀତ ଭିତରକୁ । ସବୁଜ ଘଞ୍ଚ ବନାନୀର ଚ୍ଛାୟାଚ୍ଛନ୍ନ ଦାମ୍ଭାଭିଜା ଅଞ୍ଚଳକୁ । ତା' ଭାବନାରେ ବାଧା ସୃଷ୍ଟି କରି କୁମର କହିଲା—"ଯା, ଦେଖିବୁ । କ'ଣ ହେଲାଣି ସେଠାରେ ।"

—"କ'ଣ ହେଲାଣି ?"

"—ଖଣ୍ଡିଏ ଦାନ୍ତକାଠି, ଗୋଟାଏ ଶାଳପତ୍ର ମିଳିବ ନାହିଁ ସେଠାରେ । ଖମଣ ସାହି ବୋଲି ଆମେ ଡାକୁଚୁ ତାହାକୁ । ଦଶ-ବାରଟା ପରିବାର ଉଠିଗଲେଣି ସେଠାକୁ । ଚାଷ ଜମି କରିବା ପାଇଁ ଗୁରିଆଡ଼େ ହାଡ଼ ।" କୁମର କହିଲା ।

ଗୋବର୍ଦ୍ଧନ ବୁଝିପାରୁ ନ ଥିଲା, ଏସବୁ ତାକୁ କୁହାଯାଉଚି କାହିଁକି । ବସ୍ ଷ୍ଟାପ୍‌ରେ ଓହ୍ଲାଇ ଗାଁକୁ ଆସିବା ବେଳେ ସେ ମଧ୍ୟ ଦେଖିଥିଲା କଠଉଯୋଡ଼ ନଈ ସେପାଖରେ ତିଆରି ହେଉଥିବା ଘରର ଗୁଞ୍ଚ । ଶାଳବୁଦା ସଫା ହେଉଥିଲା; ଯଦିଓ ମଝିରେ ମଝିରେ କଟା ଯାଇଥିବା ଗଛର ଅବଶିଷ୍ଟାଂଶ ଠିଆ ହୋଇଥିଲା ଶୁଖିଲା ହାଡ଼ ଭଳି, ମାଟି ସେପର୍ଯ୍ୟନ୍ତ ତାହାକୁ ହଜମ କରିପାରି ନ ଥିବା ଯୋଗୁ ।

—"ଏଥିପାଇଁ ଗାଁରେ ଘୋଟଣ ପାଚିଲୁଣ୍ଡି । କେତେଟା ବୁଢ଼ା ଲୋକ ଆପତ୍ତି କରୁଥିଲେ ଏମିତି ଜଙ୍ଗଲ ସଫା ନ କରିବା ପାଇଁ । ଗାଈ-ଛେଳି ଚରିବେ କେଉଁଠି, ସବୁ ଯଦି ଚାଷ ଜମି ହୁଏ ? ଘର ତିଆରି ପାଇଁ, ଜାଳିବା ପାଇଁ କାଠ ମିଳିବ କେଉଁଠୁ ? ଜଙ୍ଗଲ ସଫା ହୋଇଗଲେ ବର୍ଷା କୁଆଡ଼େ ଭଲ ହେବ ନାହିଁ ।' ତାଚ୍ଛଲ୍ୟ ହସ ହସିଲା କୁମର ଏବଂ ଯୋଗକଲା—"ଘନଶ୍ୟାମ ଦାଦା ଏ ବାବଦରେ ସବୁଠୁ ବେଶି ଅଭିଯୋଗ ଉଠାଉଥିଲେ । ଜଙ୍ଗଲ ସଫା କରି ଘର ଆଉ ଜମି କରୁଥିବା ଲୋକମାନଙ୍କୁ ଗାଁ ଦାଣ୍ଡକୁ ଡକା ଯାଇଥିଲା । କହିଲେ, ଦାଦା,

ତୁମର ବହୁତ ଜମି ଅଛି, କେତେ ବଖରା ସିମେଣ୍ଟ ଟାଇଲ୍ ଛାତ ଘର କରି ସାରିଲଣି ବୋଲି ତୁମେ ଏଥର ଜଙ୍ଗଲ ପାଇଁ ଏତେ ବ୍ୟସ୍ତ ହେଉଛ । କିନ୍ତୁ ଅନ୍ୟ ଲୋକମାନେ ତ ପୁଣି କିଛି କରିବେ । ନ ହେଲେ ତାଙ୍କ ପିଲାଛୁଆ ଚଳିବେ କେମିତି ?"

"ଦାଦାଙ୍କୁ ତୁ ଏମିତି କହି ପାରିଲୁ ?" ବିସ୍ମିତ ହେଲା ନିଶାବନ୍ଧ । "ସିଏ କହିଲେ କ'ଣ ?"

—"କହିବେ ପୁଣି ଗୋଟେ କ'ଣ ? ମୁଁ କ'ଣ ଅନ୍ୟାୟ କଥା କହିଥିଲି ନା କ'ଣ ? ତା'ଛଡ଼ା, ମୁଁ ଜଣେ ନାଏବ ସରପଞ୍ଚ । ମୁଁ ଡରିବ କାହିଁକି କାହାକୁ ? ଘନଶ୍ୟାମ ଦାଦା ଚୁପ୍ ଏତିକ କଥାରେ । ଯୁଗ ବଦଳି ଗଲାଣି । ଗାଁ କ'ଣ ଥିବ ଆଗଭଳି ? ଦେଖୁନୁ, କୋହ୍ଲି ସାହି ଛିନଛତ୍ର ହୋଇଗଲାଣି କେବେଠୁ । ସେ ସାହିରେ ଗୋଟେ ବି ଘର ନାହିଁ । ମୋ କହିବା କଥା ହେଉଛି, ପୋଖରୀ କରିବୁ ଯଦି କର । ଜଳା କି ସରକାରୀ ଜମି ବେ ? ସରକାର ହେଉଚୁ ଆମେ । ଜମି ଗାଣ୍ଠି କଣିପାରୁ । ସିଲେଇ ମେସିନ୍ । କୁକୁଡ଼ା ଗୃହ । ଯାହା ତୋର ଇଚ୍ଛା । ତୁ ଲୋନ୍ ପାଇବା ଦାୟିତ୍ୱ ମୋର । ଆମ ସରକାର ଦେବ ବଦଳାଇ ଏ ଦେଶକୁ ।"

ପ୍ରବଳ ପ୍ରଲୋଭନଟିଏ ହୋଇ କୁମର ସାଇକେଲ ଚଢ଼ିଲା । ପଞ୍ଚାୟତ ମିଟିଙ୍ଗ୍‌ରେ ଯୋଗ ଦେବା ପାଇଁ ସେ ତରତର ହେଉଥାଏ ।

ଦିନ ଗୋଟାଏ-ଦୁଇଟା ବେଳେ ଜିପ୍ ଗୋଟାଏ ଠିଆ ହେଲା ବଉଳ ଗଛ ମୂଳ ଦାଣ୍ଡ ଉପରେ । ଓହ୍ଲାଇ ଆସିଲେ ତିନିଜଣ ଲୋକ । ଜିପ୍‌କୁ ଘେରିଥିବା ଗୋଟିଏ ପିଲାକୁ ଆଦେଶ ଦେଲେ ସେମାନଙ୍କ ମଧ୍ୟରୁ ଜଣେ—"ଗଲୁ, କୁଳମଣିବାବୁଙ୍କୁ ଟିକିଏ ଡାକଦେବୁ । ତାଙ୍କ ଘର କେଉଁଟା ?"

ପିଲାଟା ବୁଲିପଡ଼ି ଯାଉଥିଲା, କିନ୍ତୁ ଠିଆହୋଇ ପଡ଼ିଲା ନିର୍ବୋଧଙ୍କ ଭଳି । କୁଳମଣି ବାବୁ କିଏ ? ସେମିତି ଜଣେ ଲୋକ ଗାଁରେ ଅଛନ୍ତି ବୋଲି ସେ ଜାଣି ନ ଥିଲା ।

—"କିରେ, ଗଲୁ ନାହିଁ ?" ବାବୁ ଜଣକ ପଚାରିଲେ ।

—"କାହାକୁ ଡାକିବ ବୋଲି କହୁଚ ପିଲାଟା ଟିକେ ସାହସ ସଂଗ୍ରହ କରି ପଚାରିଲା ।

—"କୁଳମଣି ବାବୁ ।" ସେ ଉତ୍ତର ଦେଲେ, "ନାଏବ ସରପଞ୍ଚ କୁଳମଣିବାବୁଙ୍କୁ ଟିକିଏ ଡାକିଦେ ।"

ସ୍ତ୍ରୀ' ମଧ୍ୟରେ କୁମର କୁଳମଣି ବାବୁ ହୋଇ ସାରିଲାଣି ବୋଲି ଗାଁର ଅନେକ ଲୋକ ଜାଣି ନ ଥିଲେ । ଅନ୍ୟ ଜଣେ ବାବୁ ପଚାରିଲେ— "କୁଳମଣି ବାବୁ କ'ଣ ଠାକୁରଙ୍କ ସେବା କାମ ବୁଝନ୍ତି ?"

—"କେଜାଣି ?" ପ୍ରଥମ ବାବୁ ଜଣକ କହିଲେ । "ଏ ଗାଁର କୌଣସି ଲୋକଙ୍କୁ ମୁଁ ଚିହ୍ନେ ନାହିଁ । କେବଳ କୁଳମଣି ବାବୁ ପ୍ରାୟ ସବୁଦିନ ବ୍ଳକ୍ ଅଫିସ୍‌କୁ ଯାଉଥିବାରୁ ତାଙ୍କ ସହିତ ଟିକିଏ ପରିଚୟ ଅଛି । ସେ ଆସିଲେ ସବୁ କଥା ଜଣା ପଡ଼ିଯିବ ।"

ମସ୍ ମସ୍ ଜୋତା ଚାଲି । ଖଦଡ଼ ଧୋତି ଆଉ ହାଫ୍ କମିଜ୍ । କୁମର ଆସୁଥିଲା ଅନ୍ୟ ଦିଗରୁ । ବେଶ୍ କିଛି ଦୂରରୁ କୃଷି ସଂପ୍ରସାରଣ ଅଫିସରଙ୍କୁ ଦେଖି ନମସ୍କାର କଲା ଉଦାର ଭାବରେ ହସି ହସି । ସେ ପାଖରେ ପହଞ୍ଚିବା ମାତ୍ରେ ଅଫିସର ଜଣକ ଚିହ୍ନେଇ ଦେଲେ—"ସାର୍ ହେଉଚନ୍ତି ଦେବୋତ୍ତର ବିଭାଗର ଏକ୍‌ଜିକ୍ୟୁଟିଭ ଅଫିସର ! ଅନ୍ୟମାନେ ସେଇ ଅଫିସର କର୍ମକର୍ତ୍ତା । ପଞ୍ଚାୟତ ଅଫିସ୍‌ରେ ମୋର କାମ ଥିବାରୁ ତାଙ୍କ ସହିତ ଜିପ୍‌ରେ ଚାଲି ଆସିଲି ।"

ତାଙ୍କ କୈଫିୟତ ସରିବା ମାତ୍ରେ କୁମର ଯଥେଷ୍ଟ ନମ୍ରତାର ସହିତ ନମସ୍କାର କଲା ଅନ୍ୟମାନଙ୍କୁ । ଏକ୍‌ଜିକ୍ୟୁଟିଭ୍ ଅଫିସର ଯଥେଷ୍ଟ ବୟସ୍କ ଲୋକ । ତାଙ୍କ ମୁହଁରେ ରହିଥାଏ ସମସ୍ତ ପୃଥିବୀ ପ୍ରତି ସେ ଅସନ୍ତୁଷ୍ଟ ଥିବାର ଭାବ । କୌଣସି ଜିନିଷ ସତେ ଯେପରି ସନ୍ତୋଷଜନକ ନ ଥିଲା ତାଙ୍କ ଦୃଷ୍ଟିରେ । ସେ ପଚାରିଲେ—"ତୁମ ଗାଁର ଏଇ ଯେଉଁ ଠାକୁର ଅଛନ୍ତି, ତାଙ୍କ ସେବା କାମ ବୁଝାବୁଝି କରନ୍ତି କିଏ ?"

—"ଘନଶ୍ୟାମ ଦାଦା ।" କୁମର ଉତ୍ତର ଦେଲା ।

—"ହଁ, ହଁ, ସେଇ ନାମଟା ମୋର ମନେପଡ଼ୁ ନ ଥିଲା ।" ବୃଦ୍ଧ ଅଫିସର କହିଲେ—"ତାଙ୍କ ଘରଟା କେଉଁଠି ?"

ବଉଳ ଗଛ ମୂଳେ ଘନଶ୍ୟାମ ଦାଦାଙ୍କର ଗୁହାଳ ଅନେକ ଦିନ ଆଗରୁ ସ୍ଥାନାନ୍ତରିତ ହୋଇସାରିଥିଲା । ତା' ସ୍ଥାନରେ ଠିଆ ହେଉଥିଲା ଇଟା ତିଆରି ଘରଟେ । ନିର୍ମାଣାଧୀନ ଥିଲା ସେଇଟା । ତା' ପଛକୁ ତାଙ୍କର ସିମେଣ୍ଟ ଟାଇଲ୍ ଛଙ୍କା ଘର । କୁମର ସେଇ ଦିଗକୁ ହାତ ବଢ଼େଇ କହିଲା—"ଏଇଠି ।"

—"ତାଙ୍କ ସହିତ କାମ ଅଛି ।" ଦେବୋତ୍ତର ଅଫିସର କହିଲେ ।

କୁମର ନିଜେ ଯାଉଥିଲା ଦାଦାଙ୍କୁ ଡାକିବା ପାଇଁ । ହଠାତ୍ ମନେ ପଡ଼ିଗଲା ଯେ, ସେ ଅଞ୍ଚଳର ସେ ହେଉଛି ଜଣେ ନେତା । ଠିଆ ହୋଇଥିବା ଗୋଟେ ପିଲାକୁ କହିଲା—"ଗଲୁ, ଘନଶ୍ୟାମ ଦାଦାଙ୍କୁ ଡାକି ଆଣିବୁ । କହିବୁ ଅଫିସରମାନେ ତାଙ୍କ ସହିତ ମଧ କ'ଣ କଥାବାର୍ତ୍ତା ହେବେ ।"

ଦାଦା ସେଠାରେ ପହଞ୍ଚି ଠିଆ ହେଲେ, କାହାରିକୁ ନମସ୍କାର ନ କରି । ଦେବୋତ୍ତର ଅଫିସରଙ୍କର ଭ୍ରୂକୁଞ୍ଚନ ହେଲା । ଗମ୍ଭୀର ହୋଇ ପଚାରିଲେ—"ତୁମ ନାଁ ଘନଶ୍ୟାମ ?"

—"ତୁମେ ନୁହଁ; ଆପଣ କହନ୍ତୁ ।" ଦାଦା ନିର୍ଭୀକତାର ସହିତ ଉତ୍ତର ଦେଲେ ।

ଏତିକ ଯଥେଷ୍ଟ ଥିଲା ଜିପ୍‌ରେ ଆସିଥିବା ବାବୁମାନଙ୍କୁ ନିର୍ବୋଧ କରିବା ପାଇଁ । ଗୋଟାଏ ମଫସଲ ଲୋକର ଏଭଳି ଅହଙ୍କାର ଅନ୍ତତଃ ଦେବୋତ୍ତର ଅଫିସର ଦେଖି ନ ଥିଲେ । ଇଂରେଜ ଅମଳରୁ କିରାଣୀ ଗୁକିରି ଆରମ୍ଭ କରି ସେକେଣ୍ଡ ଅଫିସର ପର୍ଯ୍ୟନ୍ତ ପହଞ୍ଚିଥିବା ସେହି ଅଫିସର ସଙ୍କୁଚିତ ହୋଇ ପଡ଼ିଲେ ଅପମାନବୋଧରେ । ତାଙ୍କୁ ଅବଶ୍ୟ ଜଣା ନ ଥିଲା ଯେ, ସେ ଅଞ୍ଚଳରେ ପ୍ରତିଷ୍ଠିତ ପରିବାର, ଘନଶ୍ୟାମ ଦାଦାଙ୍କର ବାପା, ଇଂରାଜୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ଏବଂ ଗୋଟାଏ ମିଟିଂରେ ବାରମ୍ବାର ମହାତ୍ମା ଗାନ୍ଧି କି ଜୟ ବୋଲି ସ୍ଲୋଗାନ ଦେଇଥିବାରୁ ପୋଲିସ ହାତରୁ ଦଶ-ବାର ଧାହାର ଅର୍ଜନ କରିଥିଲେ । ନିତାନ୍ତ ଭଦ୍ର ଓ ଅତିଥିପରାୟଣ ଘନଶ୍ୟାମ ଦାଦା ଅନ୍ତତଃ ଅଭଦ୍ର ଆଚରଣ ସହ୍ୟ କରିପାରୁ ନ ଥିଲେ ଆଦୌ ।

—"ଆପଣ ଠାକୁରଙ୍କ ସେବା କାମ ବୁଝନ୍ତି ?" ଦେବୋତ୍ତର ଅଫିସରଙ୍କର ସ୍ୱର ଯଥେଷ୍ଟ ନରମ ହୋଇ ଯାଇଥିଲା ।

—"ହଁ ।"

—"ଜିଲ୍ଲାରେ ଯେତେ ସବୁ ଠାକୁର ଅଛନ୍ତି, ସମସ୍ତଙ୍କର ସମ୍ପତ୍ତି ଏଥର ଦେବୋତ୍ତର ବିଭାଗ ବୁଝାବୁଝି କରିବ ।" ସେ ଘୋଷଣା କଲେ । "ମୋର ପ୍ରଥମ କାମ ହେବ, ଏଇ ଠାକୁରଙ୍କର ଯେତେ ସବୁ ଧାନ ଅମାର ଅଛି, ସେସବୁକୁ ସିଲ ପକାଇ ରଖିବା ।"

—"ସିଲ ପକେଇବେ ?" କଥାଟା ବୁଝିପାରିଲେ ନାହିଁ ଘନଶ୍ୟାମ ଦାଦା । କହିଲେ—"ଠାକୁରଙ୍କର ପନ୍ଦରଟା ଗାଁରେ ଏଇଭଳି ବଡ଼ ବଡ଼ ଅମାର ଅଛି ।"

"ଆପଣ ମୋତେ କ'ଣ ନୂଆ କଥା କହୁଚନ୍ତି ?" ଅଫିସର ଆଗଭଳି ଗମ୍ଭୀର ହୋଇ, ମୋଟେ ନ ହସି କହିଲେ, "ଧାନ ଆଦାୟ ସରିଯାଇଚି । ଏ ଧାନ ସବୁ ବିକ୍ରି ହେବ । ଟଙ୍କା ଡିପୋଜିଟ୍ ହେବ ବ୍ୟାଙ୍କରେ । ସେଇଥିରୁ ଯେଉଁ ସୁଧ ମିଳିବ, ସେଇଥିରେ ମନ୍ଦିରର ସେବା କାମ ଚାଲିବ ।"

ଅଫିସରଙ୍କ ପ୍ରସ୍ତାବ ଖାଲି ଘନଶ୍ୟାମ ଦାଦାଙ୍କୁ ନୁହଁ, ପାଖରେ ଠିଆ ହୋଇ ଶୁଣୁଥିବା ସମସ୍ତଙ୍କ ମନରେ ଚହଳ ସୃଷ୍ଟିକଲା । ସେମାନେ ବୋଧକଲେ, ସତେ ଯେପରି ତାଙ୍କ ନିଜ ଘରର ଅମାର କୋର ଜବରଦସ୍ତ ଦଖଲ କରି ନେଉଛି ବାହାରର ଗୋଟାଏ ଦୁର୍ଦ୍ଦାନ୍ତ ଲକ୍ଷ୍ମୀଛଡ଼ା ଶତ୍ରୁ ।

ଦାଦା କହିଲେ—"ଏସବୁ ଧାନ କ'ଣ ଠାକୁରଙ୍କର

—"କାହାର ତେବେ ? ଆପଣଙ୍କର ?" ଅଫିସରିଙ୍କ ସ୍ୱରରେ ଥିଲା ନିର୍ମମ ତିରସ୍କାର ।

—"ମୋର ନୁହେଁ । ଯେଉଁ ଅଭାବଗ୍ରସ୍ତ ଲୋକମାନେ ଏଠାରୁ ଦରକାର ବେଳେ ଧାନ କରଜ କରନ୍ତି, ସେଇମାନଙ୍କର ମୂଳ ଆଉ ସୁଧ ଧାନରେ ଏ ଅମାର ଏତେ ବଡ଼ ହୋଇଚି । ରଜ ପୂର୍ବରୁ ଅମାରରୁ ଧାନ କରଜ ଦେବାବେଳେ ଆମ ଗାଁର ଦୃଶ୍ୟ ଦେଖିବା କଥା । ଶହ

ଶହ ଲୋକ ଘର ନେଇଁ ଧାନ ପାଇଁ ଅପେକ୍ଷା କରନ୍ତି । ଧାନ କରଜ ଦେବା ପାଇଁ ଯେଉଁ କରଣ ଆସନ୍ତି, ତାଙ୍କୁ ଦିନସାରା ଫୁରୁସତ ମିଳେ ନାହିଁ । ଏ କାମ ଚାଲେ ଦିନ ଦିନ ଧରି ।" କାହିଁକି କେଜାଣି ଗୋଟାଏ ଆବେଗରେ ଘନଶ୍ୟାମ ଦାଦାଙ୍କର ସ୍ୱର ବାଷ୍ପାକୁଳ ହୋଇ ପଡ଼ିଲା । ହାତରୁ ପ୍ରାୟ ଖସିଯାଉଥିବା ଗୋଟାଏ ସମ୍ପଦକୁ ଧରି ରଖିବା ପାଇଁ ଆବେଗ ଓ ବ୍ୟାକୁଳତା ଆଚ୍ଛନ୍ନ କଲା ତାଙ୍କ ମୁହଁକୁ ଓ କଣ୍ଠସ୍ୱରକୁ ।

--"ସେ କଥା ଆମେ ଜାଣିଛୁ ।" କହିଲେ ଦେବୋତ୍ତର ଅଫିସର । "ଲୋକମାନେ ଧାନ କରଜ କରିବେ; କିନ୍ତୁ ଶୁଝିବେ ନାହିଁ । ସବୁ ରେକର୍ଡ଼ପତ୍ର ଦେଖିସାରିବା ପରେ ମୁଁ ଠିକ୍ କରିଛି, ଏ ଧାନ ବିକାଯିବ । ଟଙ୍କା ଜମା ହୋଇ ରହିବ ବ୍ୟାଙ୍କରେ ।"

ଘନଶ୍ୟାମ ଦାଦା ନିରସ୍ତ ହୋଇ ପଡ଼ିଲେ, ଲୋକମାନେ କରଜ କରୁଥିବା ଧାନ ଠିକ୍ ଭାବରେ ପରିଶୋଧ କରିପାରୁ ନ ଥିବା କଥା ଶୁଣି । ଏ ବ୍ୟାପାରରେ କିନ୍ତୁ କ'ଣ କରିଯାଇ ପାରନ୍ତା ? ମରୁଡ଼ି ଅବସ୍ଥା ସୃଷ୍ଟି ହୁଏ । ବାହାଘର, ବଳଦ କଣା ଇତ୍ୟାଦି ଖର୍ଚ୍ଚକୁ ଏଡ଼େଇ ଦିଆଯାଇ ପାରେନା । କେତେକ ଲୋକ ପରିଶୋଧ କରିପାରନ୍ତି ନାହିଁ ସବୁ ଧାନ; କିନ୍ତୁ ଠାକୁରଙ୍କ ସମ୍ପତ୍ତି ବୋଲି ଗୋଟାଏ ଭୟ ରହିଥାଏ ସେମାନଙ୍କ ମନରେ । କିଛି ପରିମାଣରେ ଅନ୍ତତଃ ସମସ୍ତେ ଋଣମୁକ୍ତ ହେବାକୁ ଚେଷ୍ଟା କରନ୍ତି । ଧାନ ଆଦାୟ ଠିକ୍ ଭାବରେ ହୋଇ ପାରୁନି ବୋଲି ସମସ୍ତ ଧାନ ବିକି ଦେବାଟା କେଡ଼େ ଅନ୍ୟାୟ; କେଡ଼େ ନିର୍ମମ ପ୍ରତିଶୋଧ ! ଘନଶ୍ୟାମ ଦାଦା ନିରୁପାୟ ହୋଇ ବଉଳ ଗଛ ମୂଳେ ଥିବା ପଥର ଉପରେ ବସି ପଡ଼ିଲେ ।

କିଛି ସମୟ ନୀରବତା ପରେ ଚେତାବନୀ ଦେଲେ—"ଆପଣ କିନ୍ତୁ କଥାଟାକୁ ଯେତେ ସହଜରେ କରିପାରିବେ ବୋଲି ଭାବୁଛନ୍ତି, ସେତେଟା ସହଜ ହେବ ନାହିଁ । ଲୋକମାନେ ପ୍ରତିରୋଧ କରିପାରନ୍ତି । ସତ କଥା, ଅଭାବ ସମୟରେ ସେମାନେ ଯିବେ କେଉଁଠିକି ?"

ଦେବୋତ୍ତର ଅଫିସରଙ୍କ ମୁହଁ କଠୋର ଦିଶିଲା ଏଇ କଥାରେ । ଗୋଟାଏ ଚ୍ୟାଲେଞ୍ଜ ଗ୍ରହଣ କଲା ଭଳି ସେ ଉତ୍ତର ଦେଲେ—"ସତେ ?

ଲୋକମାନେ ପ୍ରତିରୋଧ କରିବେ ? ଆପଣ ସେମାନଙ୍କର ନେତା ବନିବେ, ନାଇଁ ? ଦେବ ସମସ୍ତଙ୍କୁ ଥଣ୍ଡା କରି । ପୋଲିସ ଆସିବ । ତାଙ୍କ ଉପସ୍ଥିତିରେ ଟ୍ରକ୍‌ରେ ବୁହା ହୋଇଯିବ ଧାନ । ଯଦି କିଛି ଗଣ୍ଡଗୋଳ ହୁଏ, ଆପଣଙ୍କୁ ଆଗ ଆରେଷ୍ଟ କରାଯିବ । ଦରକାର ହେଲେ ଗୁଳିଚାଳନା ହେବ ଏ ଗାଁରେ ।"

ଶୁଖିଲା ମୁହଁ ଓ ଫଁ ଫଁ ନିଃଶ୍ୱାସ ନେଇ ସେମାନେ ଜିପ୍‌ରେ ଫେରିଗଲେ । ଏହାର କିଛିଦିନ ପରେ ତିନି-ଚାରିଟା ଟ୍ରକ୍‌ରେ ଆମର ଧାନ ବୁହା ହେବାକୁ ଲାଗିଲା । ଏ ପ୍ରକ୍ରିୟା ଚାଲିଲା କିଛି ଦିନ ଧରି; କାରଣ ଆମ ଗାଁରେ ବହୁ ବର୍ଷ ଧରି ପର୍ଯ୍ୟାପ୍ତ ପରିମାଣର ଧାନ ଠୁଳ ହୋଇ ରହିଥିଲା ।

ଘନଶ୍ୟାମ ଦାଦାଙ୍କର ସେଇ ଅମାରରୁ ଧାନ କରଜ କରିବାର କୌଣସି ଆବଶ୍ୟକତା ନ ଥିଲା; କାରଣ, ସେ ନିଜର ଯଥେଷ୍ଟ ବଳକା ଧାନ କରଜ ଲଗାଉଥିଲେ; କିନ୍ତୁ ଠାକୁରଙ୍କର ଅମାର ଗାଁରେ ଗୋଟାଏ ମହାନ୍ ଅନୁଷ୍ଠାନ ହୋଇ ରହିଥିଲା ମନ୍ଦିର ଭଳି । କରଜ ଦେବାବେଳେ ଅମାର ଧାନରୁ ବାହାରୁଥିଲା ଗୋଟାଏ ଗନ୍ଧ ଏବଂ ଏହି ଗନ୍ଧ ସହିତ ଯେପରି ସମ୍ପର୍କିତ ଥିଲା ମଣିଷର ଜୀବନ ସହିତ, ତା'ର ଅଭାବଗ୍ରସ୍ତ ସଂସାର ସହିତ । ଏ ଗନ୍ଧ ଥିଲା ଅନ୍ୟ ପର୍ଯ୍ୟାୟର ଗୋଟାଏ ଧୂପ ଗନ୍ଧ ଭଳି—ଆଶା ଉଦ୍ଦୀପକ ଏବଂ ଆଧ୍ୟାତ୍ମିକ । ଟ୍ରକର ଘର୍ଘର ଶବ୍ଦ ଗାଁକୁ ଏକ ରକମ ଯେ ଧର୍ଷଣ କଲା, ତା ନୁହେଁ; ପରନ୍ତୁ ଏଇ ଜୀବନଧର୍ମୀ ଆଶା ଓ ଭରସାର ଗନ୍ଧକୁ ପୋଛି ଦେଲା ସବୁଦିନ ପାଇଁ ପେଟ୍ରୋଲ ଧୂଆଁର ଦୂଷିତ ଗନ୍ଧ ତଳେ ।

ପରିସ୍ଥିତି ଥିଲା ଠିକ୍ ଏଇଭଳି । ଗୋଟାଏ ମସ୍ତବଡ଼ ଉଇ ହୁଙ୍କା ଉପରେ ସତେ ଅବା ଭୁଷି ହୋଇଗଲା ଦୁର୍ଦ୍ଦାନ୍ତ ଶାବଳଟିଏ । ଏତେ ଦିନଯାଏ ନିରାପଦ ଓ ସନ୍ତୁଷ୍ଟ ହୋଇ ରହିଥିବା ଉଇମାନେ ଦିଗହୀନ ଓ ତ୍ରସ୍ତ ହୋଇ ଦଉଡ଼ି ପକାଇଲେ ସେହି ସ୍ଥାନ ପୁଣି ନିରାପତ୍ତା ଓ ପ୍ରତିରକ୍ଷା ସକାଶେ । ପାଖ ପାଖ ଗାଁର ଶହ ଶହ ଲୋକ କେବଳ ନୀରବ ପ୍ରତିବାଦ ଓ ଆହତ ଆବେଗର ସହିତ ଶୁଣିଲେ ଏଇ କଥା, ଶୁଣିଲେ ଟ୍ରକ୍ ଧ୍ୱନି । କିଛି କରିପାରିଲେ ନାଇଁ । ଘନଶ୍ୟାମ ଦାଦା ଜାଣିଥିଲେ, କେବଳ

ଟିକିଏ ନେତୃତ୍ୱ ଦରକାର । ଏ ଲୋକମାନେ ଅସାଧ୍ୟ ସାଧନ କରି-ପାରିବେ; କିନ୍ତୁ ଗୋଟାଏ ନାହିଁ ନ ଥିବା ଘଣ୍ଟଣା ଘଟାଇ ପାରିବେ । ଅନେକେ ଏଇ ଆଶା ନେଇ ପହଞ୍ଚି ଥିଲେ ତାଙ୍କ ପାଖରେ । ସେ କିନ୍ତୁ ନୀରବ ରହିଲେ । ଦେବୋତ୍ତର ଅଫିସରଙ୍କ ଧମକ ଯୋଗୁ ନୁହେଁ । ସେ ଭାବୁଥିଲେ ଏବଂ ଉଦାସ ହୋଇ ତାଙ୍କ ପାଖକୁ ଆସୁଥିବା ଲୋକଙ୍କୁ କହୁଥିଲେ ଯେ, ଠାକୁର ପାହାଡ଼ ଉପରେ ଥାଇ ଦେଖୁଛି । ଏ କାମ ସେ ନିଜେ ଭିଆଉଛି । ତା'ର ଇଚ୍ଛା ପୂରଣ ହେଉ ।

ଅନେକେ କିନ୍ତୁ ଆଶା କରୁଥିଲେ କିଛି ଗୋଟାଏ ଘଟିବ । ମନ୍ଦିରରେ ବାଜୁଥିବା ଘଣ୍ଟଧ୍ୱନି ଚେତାବନୀରେ ପରିଣତ ହେବ । ମନ୍ଦିର ଚୂଡ଼ାରେ ଥିବା ଜଙ୍କ୍ ଲଗା ତ୍ରିଶୂଳ ସଂହାର କରିଦେବ ନାରକୀୟ କାଣ୍ଡ କରୁଥିବା ଲୋକମାନଙ୍କୁ । କିଛି ବି ଘଟିଲା ନାହିଁ । ଅନ୍ତତଃ ଘନଶ୍ୟାମ ଦାଦା ବୁଝିଥିଲେ ଯେ, ଟ୍ରକ୍‌ର ଯାନ୍ତ୍ରିକ ଶବ୍ଦ ଗାଁ ମାଟିକୁ ପ୍ରକମ୍ପିତ କରୁଛି । ମାଟି ତଳେ ରହିଥିବା ଅଦୃଶ୍ୟ ସ୍ୱଚ୍ଛ ଧାରାକୁ ଶୁଖେଇ ଦେଉଛି । ଗାଁ ଦାଣ୍ଡରେ ଅବସ୍ଥିତ ପ୍ରାୟ ଚାଳିଶ ମିଟର ଲମ୍ବ ଓ ଆଠ ମିଟର ଓସାରର ଧାନ ଭରପୂର ବିଶାଳ ଅମାର ଧ୍ୱଂସପ୍ରାପ୍ତ ଭଇ ହୁଙ୍କାରେ ପରିଣତ ହେଲା । ଖାଲି ସେତିକ ନୁହେଁ । କେଉଁ ମାନ୍ଧାତା ଅମଳରୁ ଅମାର ନିର୍ମାଣ ପାଇଁ ବ୍ୟବହୃତ ହୋଇଥିବା ଇସ୍ପାତ ଭଳି ଅତୁଳନୀୟ କାଠ ଯତ୍ନର ସହିତ ଠୁଳ କରାଗଲା ଗୋଟିଏ ଜାଗାରେ । ନିଲାମ ହେବ । ସେ କାଠ ପଡ଼ି ରହିଥିଲା ସେଇଭଳି ହତ୍ୟା କରାଯାଇଥିବା ଗୋଟାଏ ବିଶାଳ ଗୌରବମୟ ଜୀବନର ଗୋଚ୍ଛାଏ ଶୁଖିଲା ହାଡ଼ ଭଳି । ଗାଁ ଦାଣ୍ଡର ଗୋଟାଏ ପାଖ ଶୂନ୍ୟ ହୋଇଗଲା । ଗୋଟାଏ ବଳିଷ୍ଠ ଅଙ୍ଗ କଟିଗଲା ।

ଏଇଥିପାଇଁ କି କ'ଣ କେଜାଣି, ଘନଶ୍ୟାମ ଦାଦା ଦୀର୍ଘଦିନ ଧରି ଶଯ୍ୟାଶାୟୀ ହୋଇଗଲେ । ସେ ଏତେ ଦୁର୍ବଳ ହୋଇ ଯାଇଥିଲେ ଯେ, କାନ୍ଥରେ ଡେରି ହୋଇ ବସିବାକୁ ପଡ଼ୁଥିଲା । ଭଲଭାବରେ ନିବା ଆସିବା କରିପାରୁ ନ ଥିଲେ ସେ । ପନ୍ଦର-କୋଡ଼ିଏ ଦିନର ଅସୁସ୍ଥତା ତାଙ୍କ ବୟସକୁ କୋଡ଼ିଏ ବର୍ଷ ଆଗକୁ ଠେଲି ଦେଇଥିଲା ।

ନିମାଇଁ ତାଙ୍କ ପାଖରେ ଠିଆ ହେଲା । ଦାଦା ତାକୁ ଡକାଇ-ଥିଲେ । ଦୁଇଥର ମାଟ୍ରିକ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ପରେ

ନିମାଇଁ ଲୁଙ୍ଗୀ ପିନ୍ଧି ଓ କାନ୍ଧରେ ଗାମୁଛା ପକାଇ ଗାଁରେ ବୁଲୁଥିଲା । ତା'ପରେ କେଉଁଠୁ ଟ୍ରେନିଙ୍ଗ ନେଲା କେଜାଣି, ଇଞ୍ଜେକ୍‌ସନ ଦେବା ଶିଖିଲା, ଔଷଧ ବ୍ୟବସାୟ କଲା । ବ୍ୟସ୍ତ ରହିଲା ଏଇ କାମରେ । ଅଳ୍ପଦିନ ତଳେ ସାଇକେଲ କିଣିଛି । ତାକୁ ଦେଖିଲେ ଜଣାପଡ଼େ, କିଛି ଗୋଟାଏ ବଡ଼ ଧରଣର କାମ ସମ୍ଭବ ତା ଦ୍ୱାରା । ଦାଦାଙ୍କୁ ଭାଇ ବୋଲି ସେ ଡାକେ । ତାକୁ ଡକେଇବାର କାରଣ ଜାଣି ନ ଥିଲେ ମଧ୍ୟ ସେ ସିରିଞ୍ଜ ଧରି ଆସିଥିଲା, କାଳେ ଇଞ୍ଜେକ୍‌ସନ ଦେବାକୁ କୁହାଯିବ ବୋଲି ।

ଦାଦା ନିଷ୍ପ୍ରଭ ଆଖିରେ ତାକୁ ଚାହିଁ ବସିବାକୁ କହିଲେ । ସେ ଗମ୍ଭୀର ଥିଲେ ଏବଂ ପୁଣିଥରେ ନିମାଇଁକୁ ଚାହିଁ, ତାକୁ କଳନା କରିବାକୁ ଚେଷ୍ଟା କଲେ । ପିଲାଟା ନିର୍ଭରଯୋଗ୍ୟ ଓ ବିଶ୍ୱାସୀ । ତାଙ୍କୁ ଯଥେଷ୍ଟ ସମ୍ମାନ ଦିଏ ଅନ୍ୟମାନଙ୍କ ଭଳି । ତେବେ ଗାଁର କେତୋଟି ଝିଅଙ୍କ ସହିତ ତା'ର ଆପତ୍ତିଜନକ ସମ୍ପର୍କ ଥିବା କଥା ସେ ଜାଣିଥିଲେ, ଏମିତିକି ଗୋଟେ ଝିଅ ସହିତ କୁଆଡ଼େ ପଳେଇଯିବା ପାଇଁ ସେ ପ୍ରସ୍ତୁତ ଥିବା କଥା ଧରାପଡ଼ି ଯାଇଥିବା ତା ଶରିରୁ ଜଣାପଡ଼ୁଥିଲା ।

—"ମୁଁ ଠାକୁରଙ୍କ କାମରୁ ଇସ୍ତଫା ଦେଉଛି ।" ଦାଦା ଅନେକ ଦୁଃଖର ସହିତ କହିଲେ ନିରୁପାୟ ହୋଇ । ଅନେକ ପୁରୁଷ ଧରି ତାଙ୍କର ବଂଶ ଏଇ କଥା ବୁଝି ଆସୁଥିଲେ ।

ନିମାଇଁ ବୁଝିପାରିଲା ନାହିଁ କଥାଟା ଭଲ କରି । ସେ କିଛି କହିବାକୁ ଯିବା ପୂର୍ବରୁ ଦାଦା କହିଲେ—"ତୁ ଏଥର ଏକଥା ବୁଝ । ଅଫିସ୍‌ରେ ଆମେ ଏ ବ୍ୟବସ୍ଥା କରିଦେବା । ମୋର ଉଦ୍ଦେଶ୍ୟ, କୁମର ହାତକୁ ଏ କାମ ଯେମିତି ନ ଯାଏ । ମୁଁ ଶୁଣୁଛି ଏଥିପାଇଁ ସେ ଚେଷ୍ଟା କରୁଛି । ସେଇଟା ଗୋଟେ ଅମଣିଷ ଧପ୍‌ପାବାଜ ଟାଉଟର ହୋଇଯିବ ବୋଲି କିଏ ବା ଭାବିଥିଲା ? ସେ କେବଳ ଠାକୁର କ'ଣ, ଖଟୁଲିକୁ ବି ଚାଲୁ କରିଦେବ । ବହୁତ ଚିନ୍ତା କରିବା ପରେ, ତୋ ଉପରେ ବିଶ୍ୱାସ ରଖୁଛି । ମନେରଖ, ଏଇଟା ଠାକୁରଙ୍କ କାମ ।"

—"ମୋତେ ତ କାଗଜପତ୍ର କାମ କିଛି ଆସିବ ନାହିଁ ।" ନିଜର ଅସହାୟତା ପ୍ରକାଶ କଲା ନିମାଇଁ ।

—"ମୁଁ ଶିଖେଇ ଦେବି ।" ଆଶ୍ୱାସନା ଦେଲେ ଦାଦା । "ଦିନେ-ଦୁଇଦିନ ଲାଗିବ ଶିଖିବା ପାଇଁ ।" ଦୀର୍ଘଶ୍ୱାସ ତ୍ୟାଗକରି ଯୋଗକଲେ—"ତୋତେ ଖାଲି ଖର୍ଚ୍ଚ ସମ୍ବନ୍ଧୀୟ ଷ୍ଟେଟ୍‌ମେଣ୍ଟ୍ ପ୍ରସ୍ତୁତ କରିବାକୁ ହେବ । ଆୟ ତ ସେମିତି ନାହିଁ । ଠାକୁରଙ୍କ ବଗିଚାର ଶାଗ ଓ ପଣସ ବି ବିକ୍ରି ହେବ । ଭୋଗ ବିକ୍ରି ହେବ । ଏଇ ତ ଆୟ ।"

ଏହାର ଅଳ୍ପଦିନ ପରେ ନିମାଇଁ ଠାକୁରଙ୍କର ହିସାବ ଦାୟିତ୍ୱ ଗ୍ରହଣ କଲା । ତାକୁ କାମରେ ସାହାଯ୍ୟ କରିବାପାଇଁ ନିଯୁକ୍ତ ହେଲା ହାଡ଼ିଆ, ସଙ୍କର୍ଷଣ ମାଷ୍ଟ୍ରଙ୍କ ସାନପୁଅ ।

ଏ ଘଟଣାର ଅନେକ ଦିନ ପୂର୍ବରୁ ରାଧାକାନ୍ତ ଗାଁ ଛାଡ଼ି ସାରିଥିଲା ଅନନ୍ତଠୁ ପ୍ରଚୁର ମାଡ଼ ଖାଇବା ପରେ । କୌଣସି କାମକୁ ଯୋଗ୍ୟ ନ ଥିଲା ସେ ଛତରା ଟୋକା । ଗାଁ ପିଲାଙ୍କ ସହିତ କେବଳ ଦୁଷ୍ଟାମୀ କରିବାରେ ସମୟ କଟୁଥିଲା ତା'ର । ଗାଁରେ ସ୍କୁଲ ଖୋଲିବା ପରେ, ସିଲଟ-ଖଡ଼ି ଧରି ବିଦ୍ୟାର୍ଜନ କରିବା ପାଇଁ ସେ ସ୍କୁଲ ଗଲା ଅନ୍ୟମାନଙ୍କ ସହିତ । ତା'ଠୁ ବୟସରେ ସାନ ଅନେକ ପିଲାଙ୍କ ସହିତ ଏକାଠି ବସିବା ପାଇଁ କୌଣସି ସଙ୍କୋଚ ନ ଥିଲା ତା' ପାଖରେ । ଅନ୍ୟ କଠିନ କାମରୁ ରକ୍ଷା ପାଇବା ସକାଶେ ସ୍କୁଲକୁ ଯିବା ସହଜ ଥିଲା ତା' ପାଇଁ ।

କିନ୍ତୁ ପାଠ ହେଲା ନାହିଁ ତା'ର ବାଇଧର ମାଷ୍ଟ୍ରଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ । ଅପେରାରେ ମିଶିବ ବୋଲି ନାରଣ ଓସ୍ତାଦଙ୍କଠୁ ଦୁଇ ପାହାର ଖାଇବା ପରେ ସେ ପେଣ୍ଡରେ ମୁଣ୍ଡ ପକାଇଥିଲା ଏବଂ ଓସ୍ତାଦ୍‌ଙ୍କୁ ଶଳା ବେଧୁଆ ବୋଲି ବର୍ଣ୍ଣନା କରି ସେଠାରୁ ପଳାଇ ଯାଇଥିଲା । ସ୍କୁଲରେ କିନ୍ତୁ ସେ କୌଣସିମତେ ସହି ଯାଉଥିଲା ଶିକ୍ଷକଙ୍କର ଶାସ୍ତି । ପ୍ରଥମତଃ ଏଇ ଶାସ୍ତି ସେଭଳି ଯନ୍ତ୍ରଣାଦାୟକ ନ ଥିଲା । ଦ୍ୱିତୀୟତଃ ସ୍କୁଲ ଛାଡ଼ିବାମାନେ ହିଁ କଠିନ କାମ କରିବା । ଏଥିପାଇଁ ସେ ଅଟକି ରହି ଯାଇଥିଲା ସ୍କୁଲରେ ସମୟ ଅତିବାହିତ କରିବା ପାଇଁ ଅନ୍ୟ କୌଣସି ବିକଳ୍ପ ନ ଥିଲା ବୋଲି ।

ସ୍କୁଲରେ ସେ ଥିଲା ଅନ୍ୟ ପିଲାମାନଙ୍କର ଗୁରୁ । ବାଇଧର ମାଷ୍ଟ୍ରେ ଏଣେତେଣେ ଫୋପାଡ଼ି ଦେଇଥିବା ଖଣ୍ଡିଆ ଖଡ଼ି ସଂଗ୍ରହ କରି

ଗୋପନରେ ତାହା ଉପଭୋଗ କରିବା, ତାଙ୍କ ଗୁଡ଼ାଖୁ ଚୋରି କରିବାରେ ସେ ଅନେକ ଆନନ୍ଦ ପାଉଥିଲା । ଥରେ ତାଙ୍କ ଅନୁପସ୍ଥିତରେ ତାଙ୍କର ରେଜର୍‌ରେ ବ୍ଲେଡ୍ ଖଞ୍ଜି ଦଶ-ପନ୍ଦର ଜଣ ପିଲାଙ୍କର କାନ ଉପରୁ କେଶ କାଟି ଦେଇଥିଲା । ଏଥିପାଇଁ ସେ ମାଡ଼ ଖାଉଥିଲା । ଦିନେ ମାଡ଼ର ପରିମାଣ ବିପଜ୍ଜନକ ସ୍ତରରେ ପହଞ୍ଚ ଯାଇଥିବାରୁ ଶିକ୍ଷକଙ୍କର ପଟେ ଚପଲ୍ ଫୋପାଡ଼ ଦେଇଥିଲା ପାହାଡ ଉପରକୁ । ଛୁଞ୍ଚ ସାହାଯ୍ୟରେ ସାଇକେଲ ପଛ ଚକ ଲିକ୍ କରି ଦେଉଥିଲା ।

ବେନିୟମ ଉଚ୍ଛୃଙ୍ଖଳ କାମ ସାହସିକତାର ସହିତ କରିପାରୁଥିବାରୁ ସହପାଠୀମାନେ ତାକୁ ଭଲ ପାଉଥିଲେ । କାରଣ ସେମାନେ ମଧ୍ୟ ସେଇଭଳି କାମ କରିବାକୁ ଚାହୁଁଥିଲେ; କିନ୍ତୁ ଜବତ ହୋଇ ରହୁଥିଲେ ନିଜ ନିଜ ଭିତରେ, ଭୀରୁତାର ସୀମା ଟପିପାରୁ ନ ଥିଲେ ବୋଲି । ମିଛ କହିବା ଏବଂ ନିଜକୁ ନିରୀହ ବୋଲି ସାବ୍ୟସ୍ତ କରିବାରେ ରାଧାକାନ୍ତ ଆଦର୍ଶ ଥିଲା ଅନ୍ୟମାନଙ୍କ ଦୃଷ୍ଟିରେ ।

ସ୍କୁଲକୁ ନ ଆସିବା ପାଇଁ ଥରେ-ଦୁଇଥର ବାଇଧର ମାଷ୍ଟ୍ରେ ରାଧାକାନ୍ତକୁ କହିଥିଲେ; କିନ୍ତୁ ସେ ଟୋକା ନିଜର ଅପକର୍ମ ପାଇଁ ଖୁବ୍ ଅନୁତପ୍ତ ଥିବା ଭଳି ଦେଖାଯାଏ । ପୁଣି ଆସେ ସ୍କୁଲକୁ ଏବଂ କିଛିଦିନ ପାଇଁ ସଂଯତ ଓ ଭଦ୍ର ବ୍ୟବହାର ଦେଖାଏ । ଏମିତି ଚାଲିଥାନ୍ତା ବା କେତେ ଦିନ ? ଗୋଟିଏ ଶ୍ରେଣୀରେ ଦୁଇ ବର୍ଷ ରହିବା ପରେ ସେ ଥକିଗଲା ଏବଂ ଭାବିଲା ଯେ, ଏଥର ଅନ୍ୟ କିଛି ଉପାୟ ବାହାର କରିବା ଦରକାର ସମୟ କଟେଇବା ପାଇଁ ।

ଏକ ବଖୁରିଆ ଘର । ବାଡ଼ ବୁଜା ହୋଇ ଘର ସାମନାରେ ଟିକେଟାକର ବଗିଚାଟେ । କୁନ୍ଦୁରି ଓ ପୋଇଡ଼ଙ୍କ, ସଜନା, ଭେଣ୍ଡି, ଲଙ୍କା ଗଛ ଇତ୍ୟାଦି । ଶାଗ କିଆରି । ଅଣଓସାରିଆ ପିଣ୍ଡା ମୁଣ୍ଡରେ କୁକୁଡ଼ା ଘର । ଅନନ୍ତ ଅଧିକାଂଶ ସମୟ ଥାଏ ଦେବ ଆଚାର୍ଯ୍ୟଙ୍କ ପାଖରେ । ସେ ବାହା ହେବା ପୂର୍ବରୁ ତାଙ୍କ ପାଇଁ ରୋଷେଇ କରି ଦେଉଥିଲା, ନିଜେ ଖାଉଥିଲା ଏବଂ ରାଧାକାନ୍ତ ପାଇଁ ଆଣୁଥିଲା କିମ୍ବା ରାଧାକାନ୍ତ ନିଜେ ସେଠାରେ ଖାଉଥିଲା । ଦେବ ଆଚାର୍ଯ୍ୟଙ୍କର ଜମିବାଡ଼ି କଥା ବୁଝୁଥିଲା ।

ବଦଳେ ରାଧାକାନ୍ତ ଆବିଷ୍କାର କଲା ଯେ, କିଛିଦିନ ହେବ ସେ ଆଉ ସ୍କୁଲ ଯାଉ ନାହିଁ । ସକାଳେ ଇନ୍ଦୁ ଗାଧୋଇବେ ବୋଲି କୂଅରୁ ପାଣି ବୋହୁଚି । ସବୁଦିନ ଭଳି ବାଡ଼ ପାଖରେ ଠିଆହୋଇ ସେ ଗାଧୋଇବା ଦୃଶ୍ୟ ଦେଖୁଚି । ତାଙ୍କ ଆଦେଶମତେ ତାଙ୍କର ଲୁଗାପଟା ସଫା କରିଦେଉଚି ଏବଂ ତା'ପରେ ଘରେ ବସି ରହୁଚି ଚୁପ୍‌ଚାପ୍ । ଅନ୍ୟମନସ୍କ ଭାବରେ ଖାତ କଅଁଳ କମ୍ବା ପିଜୁଳି ଗଛର ଡାଳ ଉପରେ ହାତ ବୁଲାଇ ଆଣୁଚି । ଶେଷରେ ସେ ଯାହା ଆଶଙ୍କା କରୁଥିଲା, ତାହାହିଁ ଘଟିଲା । ଗାଈ-ଛେଳି ଚରେଇବା ପାଇଁ ଅନନ୍ତ ଆଦେଶ ଦେଲା ତାକୁ । ରାଧାକାନ୍ତ ବୟସର ଅନେକ ପିଲାଙ୍କୁ ଏଇକାମ କରିବାକୁ ପଡ଼େ । ବିଲରେ ହଳ ଧରିବା କମ୍ବା ଧାନ କାଟି ଘରରେ କଳେଇ ବୋହିବା ପାଇଁ ଉପଯୁକ୍ତ ନ ହେବା ଯାଏଁ ସେମାନଙ୍କୁ ଗାଈଆଳ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼େ ।

—"ମୁଁ ପାରିବି ନାହିଁ ଗାଈ-ଛେଳି ଚରେଇ ।" ଟେକ୍‌ଟୋକ୍ ମନା କଲା ରାଧାକାନ୍ତ, ଅନନ୍ତର ଆଦେଶ ଶୁଣି ।

—"କ'ଣ ତେବେ କରିବୁ ?" ଅନନ୍ତର ଏଇ ପ୍ରଶ୍ନ ରାଧାକାନ୍ତକୁ ନୀରବ କରିଦେଲା । "ମୁଁ ପଚାରୁଚି, କ'ଣ କରିବୁ ତୁ ! ପାଠ ତ ଏତେ ପଢ଼ିଲୁ ଯେ ହାକିମ ବି ତୋ ପାଖରେ ପଢ଼ିବ ନାହିଁ । ଘରେ ଏତେ ସମ୍ପତ୍ତି ବାଡ଼ ଅଛି ଯେ ବସି ଖାଇଲେ ବି ସରିବ ନାହିଁ । ଗାଈ ନ ଚରେଇବୁ ଯଦି ହାକିମ ଗୋଟେ ହୋଇ ଯା—ନ' ହେଲେ ଘରେ ବସି ଅଇଁଠି କର ।"

ପ୍ରଚଣ୍ଡ କ୍ରୋଧ ଓ ବିରକ୍ତିରେ ଅନନ୍ତର ସର୍ବାଙ୍ଗ କମ୍ପୁଥିଲା । ରାଧାକାନ୍ତ ବେଶି ସମୟ ରହିଁ ପାରିଲା ନାହିଁ ବାପା ଆଡ଼େ । ତମ୍ବାଟିଆ ଦେହର ରଙ୍ଗ । ବେଶ୍ ଡେଙ୍ଗା ଓ ସ୍ୱାସ୍ଥ୍ୟବାନ । କିନ୍ତୁ ଏବେ ତା' ମୁଣ୍ଡର କେଶ ଦ୍ରୁତଗତିରେ ଉପୁଡ଼ି ଯାଉଚି ଓ ଧଳା ହୋଇ ଯାଉଚି । ଦୁଇଟା ଆଗ ଦାନ୍ତ ଭାଙ୍ଗି ଗଲାଣି । ଆଣ୍ଠୁ ଉପର ଯାଏଁ ଧୋତି ପିନ୍ଧେ ସବୁବେଳେ । କାନ୍ଧରେ ଗାମୁଛା । କେଉଁ ବର୍ଷରୁ କେଜାଣି, ବେକରେ ମାଳି ଗୋଟେ ପିନ୍ଧିଚି ଯେ କଳା ହୋଇଗଲାଣି ସେଇଟା । ଏବେ ଆଉ

ଭଲ କରି ଶୁଣିପାରୁ ନାହିଁ । ମାଛଆଖିଆ ଗୋଡ଼, ଫଟା ଗୋଇଠି ଯୋଗୁ ଗୋଟେଉଚ ସବୁବେଳେ ।

—''କ'ଣ କହୁଚୁ ?'' ଉତ୍ତର ଦାବି କଲା ଅନନ୍ତ ।

ରାଧାକାନ୍ତ ବାପାକୁ ଦେଖିଲା ଆଉଥରେ, ବହୁ ବର୍ଷ ପରେ ଦେଖିବା ଭଳି । ଅନୁଭବ କଲା, ତା' ଭିତରେ କିଛି ଗୋଟାଏ କୋମଳ ଓ ଓଦା ହୋଇଯାଉଚି । ଘର ପାଇଁ କିଛି ହେଲେ କରିବାକୁ ପଡ଼ିବ । ବାପା ତା' ପ୍ରତି ଶାସ୍ତି ବିଧାନ କରୁନାହିଁ; ତାହାର ପରିଶ୍ରମ ଘର ପାଇଁ ଏକ ଆବଶ୍ୟକତା । ଯେଉଁ ତେଜରେ ଗାଈ ଛେଳି ଚରେଇ ପାରିବ ନାହିଁ ବୋଲି ସେ କହି ଦେଇଥିଲା, ସେ ତେଜ ମଉଳିଗଲା ଅଳ୍ପ କେତୋଟି ମୂହୂର୍ତ୍ତ ପରେ ।

ଅଥଚ ସହଜ ବ୍ୟାପାର ନ ଥିଲା ଜମା ଗାଈ-ଛେଳିମାନଙ୍କୁ ଆୟତ୍ତ କରିବା । ଗାଁ ଜଙ୍ଗଲ ନଷ୍ଟ ହୋଇ ଯାଉଥିଲା ଖୁବ୍ ଶୀଘ୍ର । ଚାରିଆଡ଼େ ଦେଖା ଯାଉଥିଲା ନୂଆ ତିଆରି ହେଉଥିବା ବିଲ ବାଡ଼ି ଓ ଘର ଡିହ । ଅନେକ ଦୂର ଯିବାକୁ ପଡ଼ୁଥିଲା ଚରେଇବା ପାଇଁ । ଟିକିଏ ଅସାବଧାନ ହେଲେ ଗାଈ-ଛେଳି ଛିନ୍ନଛତ୍ର ହୋଇ ଯାଉଥିଲେ । କେଉଁଠି ଯଦି ଫସଲ ନଷ୍ଟ କରି ଦଅନ୍ତି ତ ସରିଲା କଥା ।

ରାଧାକାନ୍ତ ସେଭଳି ଦକ୍ଷ୍ୟାର ହୋଇ ନ ଥିଲା ତା' ଆଗରୁ । ଘଣ୍ଟାଏ-ଦୁଇଘଣ୍ଟା ପରେ ସେ କ୍ଳାନ୍ତ ହୋଇ ଯାଉଥିଲା । ବିରକ୍ତି ଓ ଅସହାୟବୋଧରେ ଗାଳି ଦେଉଥିଲା ଏବଂ ମାଡ଼ ଦେଉଥିଲା ଅବାଧ୍ୟ ପଶୁମାନଙ୍କୁ । ବେଳେବେଳେ 'ଯାଅ ସବୁ ଯୁଆଡ଼େ ଯାଉଚ' ବୋଲି କହି ଠିଆ ହୋଇ ରହୁଥିଲା, ଭୋକିଲା ପେଟକୁ ଜାବୁଡ଼ି ଧରି । ଭାବୁଥିଲା, ଏ ଦାୟିତ୍ୱ ଛାଡ଼ି ଦେଇ କେଉଁଆଡ଼େ ପଳାନ୍ତା ଭଲା ।

କେତେବେଳେ କମିତି ସେ ଚଢ଼ୁଥିଲା ଜାମୁଗଛରେ, ବିଲରେ ମାଛ ଏବଂ କଙ୍କଡ଼ା ମାରୁଥିଲା, ଛତୁ ସଂଗ୍ରହ କରୁଥିଲା । ଏଇ କାମ କରିବା ବେଳେ ସେ ଏତେ ମନୋଯୋଗୀ ହୋଇ ପଡ଼ୁଥିଲା ଯେ, ଏଣେ-ତେଣେ ପଳେଇ ଯାଇଥିବା ଗାଈ ଛେଳିମାନଙ୍କୁ ଏକାଠି କରିବା ଆଦୌ

ସହଜ ନ ଥିଲା । କେଉଁ ଝରଣା ଆରପାରିରୁ ଶୁଭୁଥିଲା ଢମ୍ପାରଢ଼ି, କେଉଁ ଦୂର ପଥର ଆଡ଼ୁ ଆଳରେ ଥାଇ ଛେଳି ମେଁ ମେଁ ହେଉଥିଲା ।

ଦଶ-ବାର ଦିନ ପରେ ରାଧାକାନ୍ତ ବିରୁଦ୍ଧରେ ଯାବତୀୟ ଅଭିଯୋଗ ପହଞ୍ଚିବା ଆରମ୍ଭ କଲା । ଅନନ୍ତ ଶାନ୍ତ ସ୍ୱରରେ ରାଧାକାନ୍ତକୁ ପରାମର୍ଶ ଦେଲା ସତର୍କ ହେବା ପାଇଁ । ଅଥଚ ସମସ୍ତ ସତର୍କତା ଧସକି ଯାଏ,ଆଉ କିଛି କରିବାର ଆହ୍ୱାନରେ ! କୌଣସି କାମରେ ମନୋଯୋଗୀ ହୋଇପାରୁ ନ ଥିବା, ଗୋଟିଏ ସ୍ଥାନରେ ଥୟ ହୋଇ ରହିବାକୁ ଅକ୍ଷମ ଥିବା ରାଧାକାନ୍ତର ସବୁ ଭୁଲ ଭାଲ୍ ହୋଇଯାଏ । ପ୍ରାୟ ପ୍ରତିଦିନ ସଞ୍ଜ-ବେଳେ ରାଧାକାନ୍ତର ବଚସା ହୁଏ ତା' ବିରୁଦ୍ଧରେ ଅଭିଯୋଗ ଆଣିଥିବା ଲୋକ ସହିତ । ଅନନ୍ତ ପୁଅ ସପକ୍ଷରେ ଯୁକ୍ତି ବାଢ଼ିବାକୁ ଚେଷ୍ଟାକରେ, ବିଫଳ ହୁଏ ଏବଂ ପରେ ପରେ ବଚସା ସୀମିତ ରହେ ବାପ-ପୁଅ ମଧ୍ୟରେ ।

ଅନନ୍ତର ଧୈର୍ଯ୍ୟଚ୍ୟୁତି ଘଟିଥିଲା । ଦିନେ ସଞ୍ଜବେଳେ ରାଧାକାନ୍ତ ଘରେ ପହଞ୍ଚିବାକ୍ଷଣି ଅନନ୍ତ କୈଫିୟତ ଦାବୀ କଲା—"ତୋ ଗାଈମାନେ ତା'ର ଧାନ ଫସଲ ଚରିଗଲା ବେଳେ ତୁ କରୁଥିଲୁ କ'ଣ ?"

ବାପାର ସ୍ୱର ଅଲଗା ଶୁଭୁଥିଲେ ମଧ୍ୟ, ରାଧାକାନ୍ତ ଖୁବ୍ ଭୋକିଲା ଓ କ୍ଳାନ୍ତ ଥିଲା । କହିଲା—"ମୁଁ ଆଗ ଖାଇସାରେ । ତା'ପରେ ଯାଇ ଯେଉଁ କଥା ।"

ରାଧାକାନ୍ତର ହାତ ଜାବୁଡ଼ି ଧରି ପଚାରିଲା ଅନନ୍ତ—"ମୋ କଥାର ଜବାବ ଆଗ ଦେଇସାର । ତା'ପରେ କ'ଣ ଖାଇବୁ ସେ'କଥା ମୁଁ ବିଚାର କରିବି ।"

ରାଧାକାନ୍ତ ଡରିଗଲା ବାପାର ସେଇ ଭୟଙ୍କର କ୍ରୋଧ ଜର୍ଜରିତ ମୁହଁ ଦେଖି । ସେ ଦେଖିଲା, ତାଙ୍କ ଘର ସାମନାରେ ଠିଆ ହୋଇଚନ୍ତି ଦୁଇ-ତିନି ଜଣ ଲୋକ । ସେଇମାନଙ୍କର ଧାନକିଆରି ତା ଦାୟିତ୍ୱରେ ଥିବା ଗାଈମାନେ ନଷ୍ଟ କରିଥିଲେ । ସେମାନେ କିଛି କହିବା ପୂର୍ବରୁ ଅନନ୍ତର ଶକ୍ତଗୃପୁଡ଼ା ବସି ଯାଇଥିଲା ରାଧାକାନ୍ତର ଗାଲ ଉପରେ । ସେ ପ୍ରତିବାଦ କରିବାକୁ ସମୟ ମଧ୍ୟ ପାଇ ନ ଥିଲା; ଏତେ ଅଗ୍ରନକ ଓ ନିର୍ଦ୍ଦୟ ଥିଲା ଅନନ୍ତର ଶାସ୍ତିବିଧାନ । ଅନ୍ୟମାନେ ହସ୍ତକ୍ଷେପ କରି ନ ଥିଲେ କଥାଟା ଆହୁରି ଆଗକୁ ଗତି କରିଥାଆନ୍ତା । ଅନନ୍ତ ନିଜେ ଜାଣିପାରୁ ନ ଥିଲା, କ'ଣ ସେ କରୁଚି । ରାଧାକାନ୍ତର ବେହୋସ ଦେହ ତଳେ ପଡ଼ି ଛଟପଟ ହେଉଥିବାର ଦେଖି ସେ ଚିତ୍କାର କରି ପକାଇଲା —"ମୁଁ ତାକୁ ମୁହଁ ଦେଇଚି, ନାହିଁ ? ଏଇ ଦେଖ, କେମିତି ମୁହଁ ଦେଇଚି ତାକୁ । ଏଥର ହେଲା ତ ? ମନ ଖୁସି ହେଲା ସମସ୍ତଙ୍କର ?" କଥା ଶେଷ ହେବା ବେଳକୁ ଅନନ୍ତର କଣ୍ଠସ୍ୱର ବାଷ୍ପାକୁଳ ଓ ଅଶ୍ରୁଳ ହୋଇ ଯାଇଥିଲା ।

ଜଣେ-ଦୁଇଜଣ ଲୋକ ତାକୁ ଶାନ୍ତ କରିବାକୁ ଯାଇ କହୁଥିଲେ —"ତୁ ବାପ, ନା କଂସେଇ ? ଯେତେ ଯାହା ହେଲା ବୋଲି ଚେତା ବୁଡ଼ିବା ଯାଏଁ ପିଲାଟାକୁ ପିଟିବୁ ?"

ପରଦିନ ସକାଳେ ଅନନ୍ତ ଦେଖିଲା, ରାଧାକାନ୍ତ ନାହିଁ । କୁଆଡ଼େ ଯାଇଥିବ ବୋଲି ଭାବି ଅପେକ୍ଷା କଲା । ଦିନ ଦଶଟା ବେଳେ ଶୁଭିଲା ଗୋଟାଏ ଆର୍ତ୍ତନାଦ—"ରାଧା" !

ଏ ଡାକ ପହଁରିଗଲା ଗାଁ ଉପରେ ଓ ନିବାଁକ୍ ଧାନକ୍ଷେତ ଉପରେ । ଗାଁ ପାହାଡ଼ ଉପରେ ଧକ୍କା ଖାଇ ଏ ଡାକ ଅନନ୍ତ ପାଖକୁ ଫେରି ଆସିବା ପୂର୍ବରୁ ଶୁଭିଲା—"ରାଧା ରେ ! ଏ ରାଧା !" ଠିକଏ

ମାରିବତା ପରେ—"କୁଆଡ଼େ ଗଲୁରେ, ରାଧା !" ତା'ପରେ ଆଉ ଡାକିବା ପାଇଁ ତା'ର ଧୈର୍ଯ୍ୟ କିମ୍ବା ଶକ୍ତି ନ ଥିଲା । ଘର ପିଣ୍ଡା ଉପରେ ବସି ଖୁବ୍ ନିମ୍ନସ୍ୱରରେ ମନକୁ ମନ କହିଲା—"କୁଆଡ଼େ ଗଲୁରେ ବାପ ? କେଉଁଠି ତୋତେ ମୁଁ ଖୋଜିବି ଏଇ ଫଟା ପାଦରେ ?" ଆଖିର ଲୁହ ପୋଛିବା ପାଇଁ କୌଣସି ଆଗ୍ରହ ନ ଥିଲା ଅନନ୍ତର । କେତେ ବର୍ଷ ପରେ ଗୋଟାଏ ଅବୁଝା ଅସହଂ ପିଲା ଭଳି ସେ କାନ୍ଦୁଥିଲା, ତାହା ତା'ର ମନେ ନ ଥିଲା ।

ଯା'ପରେ ଅନନ୍ତ ରୂପାନ୍ତରିତ ହୋଇ ଯାଇଥିଲା ଗୋଟାଏ ଅଶ୍ରାନ୍ତ ଅନୁତପ୍ତ ଆତୁରତାରେ । ଗାଁର ଗୋଟିଏ ପାଖରୁ ଆ ଉ ଗୋଟିଏ ପାଖ, ସ୍କୁଲ, ପୋଖରୀ, କଠଉଯୋଡ଼ ନଈ, ପାହାଡ଼ ତଳ— ସବୁ ସ୍ଥାନରେ ଶୁଭିଲା ମର୍ମନ୍ତୁଦ ଡାକ—"ରାଧା, ଏଇଠି ଅଛୁକିରେ, ରାଧା !" ଗାଁର କେହି କୁଆଡ଼େ ଯାଉଥିବାର ଦେଖିଲେ ଅନନ୍ତ ଅନୁନୟ କରେ— "ଟିକିଏ ଦେଖିବ ତ ଆମ ରାଧା କାଳେ ସେଇଠି ଥିବ ।" ସ୍କୁଲକୁ ଆସୁଥିବା ଅନ୍ୟ ଗାଁର ପିଲା, ମନ୍ଦିରକୁ ଦର୍ଶନ ପାଇଁ ଆସୁଥିବା ଯାତ୍ରୀ, କାହା ଘରକୁ ଆସିଥିବା କୁଣିଆ—ସମସ୍ତଙ୍କ ପ୍ରତି ଅନନ୍ତର ସେଇ ଗୋଟିଏ ପ୍ରଶ୍ନ—"ଆମ ରାଧା ଅଛି କି ତୁମ ଗାଁରେ ?" ଏବଂ ତା'ପରେ ମନକୁ ମନ ନିମ୍ନ ସ୍ୱରରେ—"କୁଆଡ଼େ ଗଲା ତେବେ ପିଲାଟା ? ଏତେ ଦିନ ଯାଏଁ ଭୋକ-ଉପାସରେ ରହିଲା କେଉଁଠି ?"

ଝାଳୁଆ ଦେହ, ଅସହାୟ ମୁହଁ ନେଇ ସେ ବସେ ଦୋକାନ ବାରନ୍ଦାରେ । ରାଧାର ଖବର କିଛି ମିଳିଲା କି ବୋଲି ତାକୁ ପଚାରିବା ଦରକାର ହୁଏ ନାହିଁ । ସେ ଚୁପ୍‌ଚାପ୍ ଗୋଟିଏ କୋଣରେ ବସିବା ମାତ୍ରେ ତାସ ଖେଳାଳୀମାନଙ୍କର ଖେଳପ୍ରତି ଏକାଗ୍ରତା ବ୍ୟାହତ ହୁଏ କେତୋଟି ମୁହୂର୍ତ୍ତ ପାଇଁ । ଦର୍ଶକମାନଙ୍କର ଦୃଷ୍ଟି ତା'ଆଡ଼େ ସ୍ଥାନାନ୍ତରିତ ହୁଏ । ଧଇଁସଇଁ ହୋଇ ସେ କେବଳ ଚାହିଁ ରହେ ଗାଁ ରାସ୍ତାଆଡ଼େ । କୌଣସି ଲୋକକୁ ଆସୁଥିବାର ଦେଖିଲେ କ୍ଷଣକ ପାଇଁ ଚଞ୍ଚଳ ହୋଇପଡ଼େ । ପରକ୍ଷଣରେ ପୁଣି ହତାଶ ଓ ନିରୁପାୟ ହୋଇ ବସି ରହେ ।

ଅନେକ ଦିନ ହେଲାଣି ବାରନ୍ଦା ତଳରୁ ନଡ଼ଆକତା ଅନ୍ତର୍ଦ୍ଧାନ ହୋଇ ଯାଇଛି । ଚିଲମ ରେଡ଼ି କରିବା ପାଇଁ ଦେବ ଆଚାର୍ଯ୍ୟଙ୍କୁ କେହି

କିଛି ନ ଥିଲେ । ଖେଳ ଚାଲିଥିବା ବେଳେ ସହସା ତାଙ୍କ ଭିତରୁ ଉଙ୍କିମାରି ଆସୁଥିଲା ଏକ ଶକ୍ତିଶାଳୀ ପ୍ରାଣ-ପ୍ରାଚୁର୍ଯ୍ୟ । ସେଇ କେତୋଟି ମୁହୂର୍ତ୍ତ ପାଇଁ ଦେବ ଆଗ୍ରହିଁ ଗୋଟାଏ ବୃହତ୍ତର, ଅଫୁରନ୍ତ ସତ୍ତାରେ ପରିଣତ ହୋଇ ଯାଉଥିଲେ । ତାଙ୍କର ରାଜକୀୟ ଢାଞ୍ଚା ସୂଚେଇ ଦେଉଥିଲା ଯେ, ସେ ନିଜ ପରିସ୍ଥିତିର ଏକଛତ୍ରବାଦୀ, ସର୍ବଶକ୍ତିମାନ ସମ୍ରାଟ । ସେଇ ମନୋଭାବ ନେଇ ସେ ଆଦେଶ ଦେଉଥିଲେ—"ଅନନ୍ତ, ଏଥର ରେଡ଼ି କର ଚିଲମ । ସିଗାରେଟର ତମାଖୁ ମିଶେଇବୁ ।"

ପୁଣି, ଆଉ କେତେବେଳେ ତାଙ୍କ ଭିତରର ସମସ୍ତ ସଚେତନତା ପୋଛି ହୋଇ ଯାଉଥିଲା । ତାଙ୍କ ଭିତରେ ଝଙ୍କୃତ ହେଉଥିଲା ମହାନ୍ ଆବେଗ ଓ ସ୍ପର୍ଦ୍ଧାର ସଙ୍ଗୀତ । ସତରଞ୍ଜି ଉପରେ ଠିଆହୋଇ ସେ ଉଚ୍ଚାରଣ କରୁଥିଲେ ଅପେରା ଡାଇଲଗ୍ ।

ହଠାତ୍ କ'ଣ ହେଲା କେଜାଣି ? ବହୁଦିନ ତଳେ ବାଧ ହୋଇ ଜଣେ ପଶା ଖେଳାଳୀ କହି ପକାଇଥିଲେ—"ଆଗ୍ରହିଁ, ଆଜି ଖେଳଟା ଜମୁ ନାହିଁ ଭଲ କରି । କେମିତି ଫିକା, ପାଣିଚିଆ ଲାଗୁଚି । ତୁମ ହନୁମାନଙ୍କୁ ଆଦେଶ ଦିଅ, ଚିଲମ ରେଡ଼ି କରିବା ପାଇଁ ।"

ଅପଦସ୍ଥ ଅପ୍ରସ୍ତୁତ ହେଲେ ଦେବ ଆଗ୍ରହିଁଙ୍କ ମୁହଁ ସେମିତି ଦେଖାଯାଏ ବୋଲି ଜାଣି ନ ଥିଲେ କେହି । ଗୋଟେ ଅପମାନ ବୋଧରେ ତାଙ୍କ ମୁହଁ ନାଲି ଦେଖାଗଲା । କହିଲେ—"ସରି ଯାଇଚି । ଏଇ ହାଟପାଳିରୁ ନେଇ ଆସିବ । ଆଜି ଦିନଟା ଏମିତି ସାଦାରେ ଚଳେଇ ନେବା ।"

ତା'ପରେ ଅନେକ ହାଟପାଳି ଗଡ଼ି ଯାଇଚି ଆପଣା ବାଟରେ । ଆଗ୍ରହିଁଙ୍କୁ କେହି ମନେ ପକେଇ ନାହାନ୍ତି ଚିଲମ କଥା । ଆଗ୍ରହିଁ ନିଶ୍ଚିତ ଭାବରେ ଗୁହାରି ନ ଥିଲେ କେହି ତାଙ୍କୁ ଏ କଥା ମନେପକେଇ ତାଙ୍କର ନପାରିଲା ପଣିଆ ପ୍ରକାଶ କରିଦେଉ ବୋଲି । ଏଇ କାରଣରୁ ଅନନ୍ତର ଉପସ୍ଥିତି ଗୌଣ ନୁହେଁ,—ଅନାବଶ୍ୟକ ହୋଇ ପଡ଼ିଥିଲା ଖେଳ ଆସରରେ । ଅପେରା ଡାଇଲଗ୍ ଉଚ୍ଚାରିତ ହୋଇ ଯାଉଥିଲା ଆପଣାଛାଏଁ, ଗଛରେ ଫୁଲ ଫୁଟିବା ଭଳି । ତାଙ୍କ ଭିତରେ ଯେଉଁ

ସ୍ଫୂର୍ତ୍ତି ଓ ଆବେଗ ଖିଦ୍ର ହୋଇ ପଡ଼ୁଥିଲା, ତାହା ସତେ ଯେପରି ଉଚ୍ଛଳ ପଡ଼ୁଥିଲା ତାଙ୍କ ଶରୀର ଭୂଗୋଳକୁ ଅମାନ୍ୟ କରି । ବେଶି କଷ୍ଟୁ ଦନ ହେଲା ସେହି ସ୍ଫୂର୍ତ୍ତି ଓ ପ୍ରାଣପ୍ରାଚୁର୍ଯ୍ୟ ମଳନ ଓ ଦୁର୍ବଳ ହୋଇ ପଡ଼ିଥିଲା । କେବେ କପରି ଏକ ଆଲୋକିତ ରଙ୍ଗୀନ ମୁହୂର୍ତ୍ତରେ ତାଙ୍କ ଭିତରୁ ସେହିଭଳି ସ୍ପନ୍ଦନ ଯେ ପ୍ରକାଶିତ ହେବା ପାଇଁ ଉଠି ନ ଆସୁଥିଲା, ତାହା ନୁହେଁ; କିନ୍ତୁ ସେହି ସ୍ପନ୍ଦନ ସତେ ଯେପରି ସମ୍ମୁଖୀନ ହୁଏ ଅସଂଖ୍ୟ ପ୍ରତିବନ୍ଧକର । ତାହା ପୁଣି ଅସ୍ତ ହୋଇଯାଏ ତାଙ୍କ ଭିତରେ । ଗୋଟାଏ ଚିନ୍ତାଶୀଳତା ଓ ଅନ୍ୟମନସ୍କଭାବ ଆସ୍ତେ ଆସ୍ତେ ତାଙ୍କୁ ଢାଙ୍କି ପକାଉଥିଲି ଅବଶ୍ୟମ୍ଭାବୀ କଳା ମେଘଖଣ୍ଡ ଭଳି ।

ଅନେକ ସମୟରେ ଗରାଖମାନଙ୍କୁ କହିବାକୁ ପଡ଼ୁଥିଲି—"ଏଇ ଜିନଷଟା ସରି ଯାଇଚି । ଅମୁକ ଜିନଷ ? ସେଇଟା ପରା ବର୍ତ୍ତମାନ କାହିଁ ମିଳୁ ନାଇଁ । ଆରେ ଆରେ, ମୁଁ ବିଲ୍‌କୁଲ୍ ଭୁଲି ଯାଇଚି । ତୁ କହୁଥିବା ଜିନଷଟା ନିଶ୍ଚୟ କାଲି ମିଳିଯିବ ।"

ଗରାଖମାନେ ଅସନ୍ତୁଷ୍ଟ ହୋଇ କେତେକ ଜିନଷ ନ ପାଇ ଚାଲିଗଲି ପରେ ଦେବ ଆଚାର୍ଯ୍ୟ ଦୋକାନରେ ନିର୍ବାକ ହୋଇ ବସି ରହନ୍ତି । ନୀରବତା ଭିତରେ ମଧ ଗୋଟାଏ ଝାଁ ଝାଁ ଶବ୍ଦ ଅନେକ ଦୂରରୁ ପାଖେଇ ଆସେ । ତାଙ୍କୁ ଜଣାପଡ଼େ, କାନ ପର୍ଦ୍ଦା ବୋଧହୁଏ ସହ୍ୟ କରି ପାରିବ ନାଇଁ ସେହି ଶବ୍ଦକୁ । ଦୋକାନ ଥାକଗୁଡ଼ାକ ଆସ୍ତେ ଆସ୍ତେ ଉଲଗ୍ନ ହୋଇ ପଡ଼ୁଚନ୍ତି । ଅନେକ ଗ୍ଲେଟ ବଡ଼ ଟିଣ ଫମ୍ପା ହୋଇ ଯାଉଚନ୍ତି । ଗୋଟାଏ ଅସମ୍ଭବ ଝାଳ ନିଗିଡ଼ି ପଡ଼େ ତାଙ୍କ ଦେହରୁ । ଗାମୁଛାରେ ମୁହଁ ଓ ଦେହ ପୋଛି ହେବା ପରେ ତାଙ୍କ ଭିତରୁ କେହି ଜଣେ ପାଟି କରି ଉଠେ —ଶୋଷ । ମୋର ପାଣି ଦରକାର । ଶୋଷ ।

ଦେବ ଆଚାର୍ଯ୍ୟ ପାଣି ପିଇବା ସତ୍ତ୍ୱେ ଭିତରର ସେହି ସ୍ୱର ନୀରବ ହୁଏ ନାଇଁ । ତଣ୍ଟି ତଥାପି ଶୁଖିଲି ଜଣାପଡ଼େ । ଏସବୁ କ'ଣ ହେଉଚି ? ମୋ ଦୋକାନ ଏମିତି ହୋଇଯାଉଚି କାହିଁକି ?

କୌଣସି ଉତ୍ତର ମିଳେ ନାଇଁ । ଦୋକାନ ଥାକ ଆଡ଼େ ଚାହିଁବା ପାଇଁ ସାହସ କୁଳାଏ ନାଇଁ ଜମା । ସେ ଉଠି ଆସନ୍ତି । ପ୍ରଶସ୍ତ ଫାଙ୍କା

ବାରନ୍ଦାରେ ଠିଆ ହୋଇ କହନ୍ତି ନିଜକୁ—କୁଆଡ଼େ ଗଲେ ତାସ୍-ପଶା ଖେଳାଳୀମାନେ ? ମୁଁ ଖେଳିବାକୁ ଚାହେଁ । ଏକୁଟିଆ ହୋଇଯିବା ଘୋର କଷ୍ଟ ।

ବାରଟା-ସାଢ଼େବାରଟା ବେଳେ ଖିଆପିଆ ସରିଲା । ସବୁଦିନ ଭଳି ଅନନ୍ତ ପିଣ୍ଡାରେ ବସି ଖାଉଥାଏ । ଦେବ ଆଚାର୍ଯ୍ୟ ହାତ ଧୋଇସାରି ଠିଆ ହେଲେ ଅନନ୍ତ ସାମନାରେ । ଅନନ୍ତ ନିଜ ବାସନ ଧୋଇବା ପାଇଁ ପାଣି ଡାଳ ଧରି ଉଠିବା ବେଳେ ଇନ୍ଦୁ ସେ' ଦିନର ସମସ୍ତ ଅଇଁଠା ବାସନ, ଡେକ୍‌ଚି, କଡ଼େଇ ଇତ୍ୟାଦି ଗଦା କରିଦେଲା ଅନନ୍ତ ସାମନାରେ ଏବଂ କହିଲା—"ମୋ ଦେହ ଆଜି ଭଲ ଲାଗୁନାହିଁ । ବାସନଗୁଡ଼ାକ ମାଜି ଦେବ ।"

ଇନ୍ଦୁର ପ୍ରସ୍ତାବ ଥିଲା ନିତାନ୍ତ ଅପ୍ରତ୍ୟାଶିତ ଓ ଅସୌଜନ୍ୟ-ମୂଳକ । ପ୍ରଥମେ କଥାଟା ଭଲ କରି ନା ବୁଝିପାରିଲେ ଦେବ ଆଚାର୍ଯ୍ୟ, ନା ଅନନ୍ତ । ସେମାନେ ପରସ୍ପରର ମୁହଁ ଚାହିଁଲେ । ଅନନ୍ତ ପ୍ରାୟ ସବୁଦିନ ଦେବ ଆଚାର୍ଯ୍ୟଙ୍କ ଘରେ ଖାଉଥିଲା ସତ୍ତ୍ୱେ ଅନ୍ୟ ଜାତିର ହୋଇଥିବାରୁ ତା ପାଇଁ ଘର ପିଣ୍ଡାରେ ବ୍ୟବସ୍ଥା କରି ଦିଆ ଯାଉଥିଲା । ଦେବ ଆଚାର୍ଯ୍ୟ ବାହାରେ ଚାରି ବର୍ଷ କଟେଇ ଗାଁକୁ ଆସିବା ପରଠାରୁ ଅନନ୍ତ ତାଙ୍କର ଅବିଚ୍ଛେଦ୍ୟ ଅଙ୍ଗ ଭଳି ରହିଥିଲା । ତାଙ୍କ ପାଇଁ କାମ କରୁଥିଲା ଏବଂ ଖାଉଥିଲା । କୌଣସି ଦିନ ଅନନ୍ତ ନ୍ୟୂନବୋଧ କରି ନ ଥିଲା ଏ ସମ୍ପର୍କରେ । ଦେବ ଆଚାର୍ଯ୍ୟ କୌଣସି ପରିସ୍ଥିତି ସୃଷ୍ଟି କରି ନ ଥିଲେ, ଯାହା ଫଳରେ ଅନନ୍ତ ମନରେ କଷ୍ଟ ହୋଇପାରେ । ଏତେ ବର୍ଷର ଏଇ ଅଭ୍ୟାସ ଆକସ୍ମିକ ଭାବରେ ଆଘାତ ପ୍ରାପ୍ତ ହେଲା ।

ଦେବ ଆଚାର୍ଯ୍ୟ ଅପମାନବୋଧ ସହିତ ଆପତ୍ତି ଉଠାଇଲେ—"ଆଚ୍ଛା କଥା, ସେ କାହିଁକି ଆମ ଅଇଁଠା ବାସନ ମାଜିବ ?"

ଇନ୍ଦୁ ପ୍ରସ୍ତୁତ ଥିଲା ଏପରି ବିରୋଧର ମୁକାବିଲା କରିବାକୁ । ହାତ ଧୋଉଥିବା ବେଳେ କହିଲା—"ମାଜିଲେ ଅସୁବିଧାଟା କ'ଣ ହେବ ? ମୁଁ କହୁଚି, ମୋ ଦେହ ଭଲ ନାହିଁ । ତା' ଛଡ଼ା ସେ ଆମ ଘରେ ଖାଇବେ । କାମ ଟିକିଏ କରିଦେବେ ନାହିଁ କାହିଁକି ? ଏ ଘରର ଭାତ କ'ଣ ଶସ୍ତା ହୋଇଚି ?"

ଦେବ ଆଗୃର୍ଯ୍ୟଙ୍କ ଦୁଇ ଗାଲରେ ଠୋ ଠୋ ଚଟକଣା ଗୁଡ଼ାଏ ବସିଗଲା ଯେପରି । ତାଙ୍କ ସାମନାରେ ଅନନ୍ତକୁ ଅପମାନ ଦିଆଯାଉଚି; ଅଥଚ ସେ କିଛି କରିପାରୁ ନାହାନ୍ତି । ଗୋଟାଏ ଭୟଙ୍କର କ୍ରୋଧରେ କମ୍ପି ଉଠିଲେ ସେ । ଦୃଢ଼ତାର ସହିତ କହିଲେ—"ସେ ଏ କାମ କରିବ ନାହିଁ ! ସେ ମୋର ସାଙ୍ଗ ।"

ବିଦ୍ରୂପର ସହିତ ଦେବ ଆଗୃର୍ଯ୍ୟଙ୍କ କ୍ରୋଧକୁ ବେଖାତିର କରି ଜବାବ ଦେଲା ଇନ୍ଦୁ—"ତୁମ ସାଙ୍ଗ ପାଇଁ ଏତେ ଯଦି ମୁଣ୍ଡ ବିଥଉଚ, ନିଜେ ଯାଇ ମାଜିଆଣ ।" କହିଲା ଏବଂ ଘର ଭିତରକୁ ପଶିଗଲା ।

କ୍ଷଣକ ମଧ୍ୟରେ ପରିସ୍ଥିତି ଏତେ ତିକ୍ତ ହୋଇଯିବ ବୋଲି କେହି ବିଶ୍ୱାସ କରି ନ ଥିଲେ । କଥାକୁ ସହଜ କରିବା ପାଇଁ ଅନନ୍ତ କହିଲା —"କାହିଁକି ? ମୁଁ ଏତକ ମାଜିଦେଲେ କ୍ଷତି କ'ଣ ? ମୋ ହାତରେ ଅବିକା କିଛି କାମ ନାହିଁ । ସାଙ୍ଗେ ସାଙ୍ଗେ ମାଜି ଆଣୁଚି ।"

ବାସନ ନେଇଯିବା ପରେ ଦେବ ଆଗୃର୍ଯ୍ୟ କେବଳ ଗୃହିଁ ରହିଲେ ଇନ୍ଦୁ ଆଡ଼େ । ତାଙ୍କର ଦୁଇହାତ ମୁଠା ହୋଇ ଯାଉଥିଲା । ପୁଣି ଶୁଭିଲା ଦାମ୍ଭିକ ସ୍ୱର—"ଦେଖିଚ ସେମିତି ଚେହେରା । ଅନ୍ୟ କାହାକୁ ଦେଖେଇବ ଯେ ସେ ପ୍ରଶଂସା କରିବ । ମାଇପ ଏଣେ ଦୁଇ ଦୁଇଟା ପିଲା ଧରି କାମ କରି ମରୁ ପଛେ, ସାଙ୍ଗର ଚର୍ଚ୍ଚା ହେଉଥାଉ ଦୁଇଓଳି । କୋଉଦିନ ବସି ସୁଖ-ଦୁଃଖ ହେବା କି ଦେହମୁଣ୍ଡ କଥା ବୁଝିବା ତ ନାହିଁ । ଗୃଲିଥିବ ତାସ୍-ପଶା ଖେଳ ଚବିଶ ଘଣ୍ଟା । ଯା' ଦେଖିବୁ, ଘଇତାମାନେ ମାଇପମାନଙ୍କ ପାଇଁ କ'ଣ ସବୁ କରୁଚନ୍ତି । ମୋ ଆଡ଼େ ଆଖି ନାଲି କରି ଅନେଇଲେ ମୁଁ ଡରିଯାଇଚି ! ହୁଁଃ ।"

ଦେବ ଆଗୃର୍ଯ୍ୟଙ୍କର କ୍ରୋଧ ଯନ୍ତ୍ରଣାରେ ପରିଣତ ହୋଇଗଲା ଓ ତାଙ୍କର ମୁଠା ହୋଇଥିବା ହାତ ହୁଗୁଳା ହୋଇ ଝୁଲି ରହିଲା ଦେହର ଦୁଇ ପାଖରେ ଦୁଇ ଖଣ୍ଡ ନିର୍ଜୀବ ଡାଙ୍ଗ ଭଳି । ସେ ବସି ରହିଲେ ପିଣ୍ଡା ଉପରେ ସ୍ଥିର ଏତେଗୁଡ଼ାଏ ଅଭିଯୋଗର ଉତ୍ତର ନ ଦେଇ । ଇନ୍ଦୁ ଯେତେବେଳେ ରାଗ ତମତମ ଅବସ୍ଥାରେ ଥାଏ, ସେତେବେଳେ ତାକୁ କିଛି କହିବା ପାଇଁ ଭାଷା ନ ଥାଏ ଦେବ ଆଗୃର୍ଯ୍ୟଙ୍କର ।

ଅନେକ ଦିନ ତଳେ ପ୍ରଚଣ୍ଡ ରାଗ ସମ୍ଭାଳି ନ ପାରି ସେ ବାଡ଼େଇଥିଲେ ଇନ୍ଦୁକୁ । ସେ ଉଚ୍ଚସ୍ୱରରେ କାନ୍ଦି ଗାଁ ପ୍ରକମ୍ପିତ କରିଥିଲା । ପଡ଼ଶା ଘରମାନଙ୍କୁ ଯାଇ ଦେବ ଆଚାର୍ଯ୍ୟଙ୍କ ସମ୍ପର୍କରେ ଏମିତି କଥାସବୁ କହିଲା, ସତେ ଯେପରି ଗୋଟାଏ ନଗ୍ନ ନର୍ଦ୍ଦୋଷ ମଣିଷ ପଶୁ ହାବୁଡ଼ରେ ପଡ଼ି ଯାଇଚି । ଘଟଣାଟା ଥିଲା ନିତାନ୍ତ ଲଜ୍ଜାକର । ଦେବ ଆଚାର୍ଯ୍ୟ କାହାକୁ ମୁହଁ ଦେଖାଇବା ପାଇଁ ମଧ ଗୃହ୍ୟ ନ ଥିଲେ ଏ ଘଟଣା ପରେ ।

ସ୍ତ୍ରୀ'ପରେ ଯେତେଥର ଘରେ ଅଶାନ୍ତି ସୃଷ୍ଟି ହୋଇଚି, ଇନ୍ଦୁ ଚ୍ୟାଲେଞ୍ଜ କଲା ଭଳି କହିଚି—"ମାରିଥିଲୁ ଥରେ । ଆଉ ଥରେ ମାରିଲୁ ଦେଖି ! ତୋ ଘରେ ନିଆଁ ନ ଲଗେଇ ଦେଇଚି ଯଦି !"

ଦେବ ଆଚାର୍ଯ୍ୟ ସେମିତି ବସି ରହିଥିଲେ ପିଣ୍ଡାରେ ଏବଂ ଗୋଟାଏ ନୂଆ କ୍ଷତର ଜ୍ୱଳନ ସହିଯିବାକୁ ଚେଷ୍ଟା କରୁଥିଲେ । ପ୍ରାୟ ହସ ହସ ମୁହଁରେ ବାସନ ଧରି ଅନନ୍ତ ପହଞ୍ଚିଗଲା । କହିଲା—"ଦେଖିଲ ? ଦଶ ମିନିଟ୍‌ର କାମ । କ'ଣ ଅଛି ଏଥିରେ ?"

ପ୍ରତ୍ୟେକ ବାସନ ପରୀକ୍ଷା କରି ଇନ୍ଦୁ ଭିତରକୁ ନେଉଥିଲା । ଡେକ୍‌ଚିଟା ଅନନ୍ତ ସାମନାକୁ ଏକରକମ ଫୋପାଡ଼ି ଦେଇ କହିଲା—"କ'ଣ ଅଛି ଏଥିରେ ? କଳା ଦାଗ ଗୁଡ଼ି ନାହିଁ ଭଲ କରି । ଆଉ ଥରେ ମାଜି ଆଣ !

ଅନନ୍ତ ଏତେବେଳଯାଏ ନିଜ ଯନ୍ତ୍ରଣାକୁ ଲୁଚେଇ ରଖିଥିଲା ହସ ହସ ମୁହଁରେ । ଇନ୍ଦୁର ଏଇ ଆଚରଣ, ତା'ର ହସକୁ ଛିନ୍ନଭିନ୍ନ କରିଦେଲା । କୌଣସି ଆପତ୍ତି ନ କରି ସେ ପୁଣି ଡେକ୍‌ଚି ଧରି ଗଲା-ବେଳେ ତାକୁ ଶୁଣାଗଲା ଭଳି ସ୍ୱରରେ ଇନ୍ଦୁ ମନ୍ତବ୍ୟ ବାଡ଼ିଲା—"ମୋଫତରେ ଖାଇଦେବା ସହଜ । କାମ ଟିକିଏ ଭଲ ଭାବରେ କଲା-ବେଳକୁ ସମସ୍ତଙ୍କର ଜୀବନ ଗୁଡ଼ିଯାଏ ।"

ସେଦିନ ଅପରାହ୍ଣରେ ଅନନ୍ତ ଆସିଲା ନାହିଁ ଦୋକାନକୁ । ରାତିରେ ମଧ ଦେଖା ନ ଥିଲା ତା'ର । ଦେବ ଆଚାର୍ଯ୍ୟ ଭାବିଲେ, ତାକୁ ଡକେଇ ଆଣିବା ପାଇଁ, ତା ଭଲମନ୍ଦ କଥା ବୁଝିବା ପାଇଁ । ମାତ୍ର

ତାଙ୍କର ଏଇ ଇଚ୍ଛା ଯେତିକ ଦୃଢ଼ ହେଉଥାଏ, ତାଙ୍କ ମନରେ ସେଇଭଳି ଅସହାୟ ନିରୁପାୟତା ହୃଷ୍ଟପୁଷ୍ଟ ହେଉଥାଏ । ଚାଲିଥିଲି ଏମିତି ଗୋଟାଏ ଟଣାଓଟରା ତାଙ୍କ ଭିତରେ । କିଛି ସମୟ ପାଇଁ ତାସ୍ ଖେଳ ହେଲି । ଗାଁର ଭଲମନ୍ଦ କଥା, ଗୃହବାସ ସଂକ୍ରାନ୍ତୀୟ ଆଲୋଚନା ହେଲି କିଛି ସମୟ ପାଇଁ । ଚାରିଟା-ପାଞ୍ଚଟା ବେଳକୁ ଅନ୍ୟମାନେ ଚାଲିଆସିଲେ ବୁଲି ଯିବା ସକାଶେ ଦୋକାନ ବାରନ୍ଦା ଛାଡ଼ିଲେ । ଗରାଖମାନେ ଆସିଲେ । ଅଧାଅଧି ଜିନିଷ ନ ପାଇ ଫେରିଲେ ବିରକ୍ତ ଓ ଅସନ୍ତୁଷ୍ଟ ହୋଇ ।

ଦୋକାନରେ ଲଣ୍ଠନ ଜଳିଲି । ଧୂପ ଦିଆଗଲି ତା ଭିତରେ । ଅନ୍ୟମନସ୍କ ହୋଇ ଦେବ ଆଚାର୍ଯ୍ୟ ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆ ମାରିଲେ ବେପାର ଭଲ ଭାବରେ ଚାଲୁ—ଘରେ ଶାନ୍ତି ଓ ପ୍ରାଚୁର୍ଯ୍ୟ ରହୁ ବୋଲି । ବାହାରେ ରାତି ମଜ୍‌ବୁତ୍ ହେଉଥିଲି । ବହଳ ନୀରବତା ଭିତରେ ଅନେକ ଦୂରରେ କେଉଁ କଅଁଳା ଛୁଆର କାନ୍ଦଣା ଶୁଭି ଯାଉଥିଲି ମଝିରେ ମଝିରେ । ଆହୁରି ମଧ୍ୟ ଶୁଭୁଥିଲି ରହି ରହି ଗୋଟାଏ ବାଛୁରୀର ବ୍ୟାକୁଳ ହମ୍ବାରଡ଼ି । ଗାଁ ଶୂନ୍‌ଶାନ୍ ହୋଇ ଯାଉଥିଲି ଏବଂ ରାତିର ନିସ୍ତବ୍‌ଧତା ଭିତରେ ନିଜକୁ ସମର୍ପଣ କରିବା ପାଇଁ ପ୍ରସ୍ତୁତ ହେଉଥିଲି ।

ଏମିତି ଗୋଟାଏ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିପାରେ ବୋଲି ଅନନ୍ତ କଳ୍ପନା କରିପାରି ନ ଥିଲି । ଜୀବନ ଗଡ଼ି ଚାଲିଥିଲି ପ୍ରାୟ ନିର୍ଜଞ୍ଜାଳ ଓ ଦାୟିତ୍ୱମୁକ୍ତ ହୋଇ । ବର୍ତ୍ତମାନ, ଏଇ ବୟସରେ ତାଙ୍କୁ ପୁଣି ଥରେ ବଞ୍ଚିବା ଶିଖିବାକୁ ପଡ଼ିବ । ଏତେ ଦିନ ଯାଏ ନିର୍ଭର କରି ଆସିଥିବା ଅବଲମ୍ବନ ଖସି ଯାଇଥିଲି ତା ହାତରୁ । ଦେବ ଆଚାର୍ଯ୍ୟ ଓ ତାଙ୍କ ସଂସାରକୁ ଅନ୍ୟ ଦୃଷ୍ଟିକୋଣରୁ କିମିତି ଦେଖାଯାଇ ପାରିବ, ତାହା ସେ ଜାଣିପାରୁ ନ ଥିଲି ଆଦୌ । ସେ ନିଜକୁ ମନେକଲି ସମ୍ପୂର୍ଣ୍ଣ ଆଶ୍ରୟହୀନ ।

ଅଥଚ ଇନ୍ଦୁର ବ୍ୟବହାର ନିତାନ୍ତ ଅବାସ୍ତବ ଓ ରୁକ୍ଷ ବୋଲି କିଏ ଜାଣିବ ବା କାହିଁକି ? ସେ କାହିଁକି ଦୁଇଓଳି ବାଢ଼ିଦେବ ତା'ପାଇଁ ଅଯଥାରେ ? ବାସ୍ତବରେ ସେ ବାସ୍ତବିକ ତାଙ୍କ ପାଇଁ କରୁଚି ବା

କ'ଣ ? କେବେ କପଡ଼ ଦୋକାନ ବାକି ଟଙ୍କା ଅସୁଲ ପାଇଁ ସେ ପାଖ ଗାଁମାନଙ୍କୁ ଯାଉଥିଲା । ଦେବ ଆଚାର୍ଯ୍ୟ ସାଇକେଲ କିଣିବା ପରେ ସେ ନିଜେ ଏ କାମ କରୁଚନ୍ତି । ବିଲବାଡ଼ି କଥା ସେ ବା ବୁଝୁଚି କ'ଣ ? ସବୁ କାମ ଆସ୍ତେ ଆସ୍ତେ ତା ହାତରୁ ଚାଲି ଯାଇଚି ଦେବ ଆଚାର୍ଯ୍ୟଙ୍କ ହାତକୁ । ତାଙ୍କ ସଂସାରରେ ତା'ର ଭୂମିକା ଅଯଥା ଓ ଗୁରୁତ୍ୱହୀନ ହୋଇ ପଡ଼ିଚି । ତେଣୁ କିଏ କାହିଁକି ତା ପାଇଁ ଦୁଇଓଳି ପରଷି ଦେବ ? ତା ଠାରୁ କାମ ଆଦାୟ ନ କରି ସେ ଲୋକ ଛାଡ଼ିଦେବ ବା କାହିଁକି ?

କେବଳ ଅଭ୍ୟାସଟା ଯାହା ବଦଳି ଯାଉଚି । ଦେବ ଆଚାର୍ଯ୍ୟଙ୍କ ସହିତ ଅତୀତରେ ଥିବା ତା'ର ଘନିଷ୍ଠ ଅନ୍ତରଙ୍ଗତା କେବଳ ଗୋଟାଏ ମଧୁର ସ୍ମୃତି ହୋଇ ପଡ଼ୁଚି ଯାହା । ତାକୁ ମନେ ପକେଇବା ମାତ୍ରେ ତାଙ୍କର ଅଇଁଠା ବାସନ ମାଜିବା ଏବଂ ଡେକ୍‌ଚିରୁ ଭଲ ଭାବରେ କଳା ଛଡ଼େଇବା କାମଟା ଏତେ ଯନ୍ତ୍ରଣାଦାୟକ ଜଣା ପଡ଼ୁଚି ସିନା ! କିନ୍ତୁ ତା'ର ଏସବୁ କାମ କରିବାରେ ସେମିତି କିଛି ଅଯୌକ୍ତିକତା ରହିଚି କେଉଁଠି ?

ରାତିସାରା ଅନନ୍ତ ଛଟପଟ ହେଉଥିଲା ବିଛଣା ଉପରେ ଭୋକିଲା ପେଟକୁ ଆଶ୍ୱାସନା ଶୁଣାଇ । ପେଟ କିନ୍ତୁ ରାତିମତ ବିଦ୍ରୋହ ଆରମ୍ଭ କରିଥିଲା, ସମସ୍ତ ସାନ୍ତ୍ୱନା ଏବଂ ଆଶ୍ୱାସନାକୁ ନାକଚ୍ କରୁଥିଲା । ଅନନ୍ତକୁ ଜମା ଶାନ୍ତିରେ ଶୁଆଇ ଦେଲା ନାହିଁ । ପରିସ୍ଥିତି ଏମିତି ହେଲା ଯେ, ଅନନ୍ତ ଉଠି ପଡ଼ିଲା ବିଛଣାରୁ ଏବଂ ବଖୁରିକିଆ ଘରର ତାଟି ବନ୍ଦ କଲା । ଅଥଚ କେଉଁଆଡ଼େ ଯିବ ଏଇ ନିର୍ଜନ ପ୍ରହରରେ, ତାହା ନିର୍ଣ୍ଣୟ କରି ନ ପାରି ବସିଲା ପିଣ୍ଡା ଉପରେ । ତାକୁ ଜଣା ପଡ଼ୁଥିଲା ଯେ, ଅନେକ ବର୍ଷ ହେଲା ସୂର୍ଯ୍ୟୋଦୟ ହୋଇନାହିଁ । ଏଇଭଳି ନିସ୍ତବ୍ଧ ରାତିଟେ ଲମ୍ବି ଆସିଚି ବର୍ଷ ବର୍ଷ ହେଇ । ବର୍ଷ ବର୍ଷ ଧରି ଏ ରାତି ଲମ୍ବି ରହିଥିବ ଏବଂ ସେ ପେଟର ସ୍ଲୋଗାନ ସମ୍ଭାଳି ନ ପାରି ବସିଥିବ ପିଣ୍ଡାରେ ନିରୁପାୟ ହୋଇ ଘରୁ ବାହାରି ଆସି ।

ଗୋଟାଏ ଗୁମ୍‌ସୁମ୍ ବାତାବରଣ ଆଚ୍ଛନ୍ନ କରି ରହିଥିଲା ଘରକୁ । ଦେବ ଆଚାର୍ଯ୍ୟ ନୀରବରେ ରୁଟି ଚାରିପଟ ଚୋବେଇଲେ । ଗତ ବର୍ଷେ ଦୁଇବର୍ଷ ହେଲା ରାତିରେ ରୁଟି ହେଉଥିଲେ ମଧ୍ୟ ଇନ୍ଦୁ ଏ ପର୍ଯ୍ୟନ୍ତ ଭଲ

ରୁଟି ତିଆରି କରିପାରୁ ନାହିଁ । ପାଞ୍ଚ-ଛ' ବର୍ଷର ବଡ଼ ଝିଅ ଏ ବାବଦରେ କିଛି କହିଲେ ମାଡ଼ ଖାଏ; ନ ହେଲେ ଶୁଣେ—"ଏ ଘରେ ଜୀବନ ଯାଉଣୁ ଖଟୁଥିଲେ ବି ତୋର କି ତୋର ବାପର ମୋ କାମ ମନକୁ ପାଏ ନାହିଁ । ମୋତେ ଯେମିତି ରୁଟି ବନେଇ ଆସେ, ସେମିତି କରୁଚି । ଭଲ ଯଦି ନ ଲାଗୁଚି, ଶୋଇବୁ ଯା । ତୋ ବାପକୁ କହ ଯେ, ସେ ରୁଟି ତିଆରିବେ, ନ ହେଲେ ଭଲ ରୁଟି ତିଆରିବା ପାଇଁ ଘରେ କାହାକୁ ରଖିବେ ।"

ମା'ର ଭାଷା ବୁଝିପାରେ ନାହିଁ ଚନ୍ଦା । ସେ କେବଳ ଭୟ ଓ ନବୋଧତାର ସହିତ ତା ମୁହଁକୁ ଚାହିଁ ରହେ । ପରେ ପରେ ଆଦେଶ ଶୁଭେ—"ଖାଇ ସାରିବା ମାନେ ବିଛଣାକୁ ଧାଉଁଚୁ କ'ଣ ? ବୁଲି ଉଠିଲାଣି । ତାକୁ ଖେଳଉ ଥା । ମୁଁ ଘର କାମ ସାରେ । ତେଣିକି ଖାଏଁ କି ନ ଖାଏ ।"

ଦେବ ଆଗୁଆଁ ସେଇଭଳି ନୀରବରେ ହାତ ଧୋଇଲେ । କିଛି ଗୋଟାଏ ଅଭାବ ରହିଯାଇଥିଲା । ଗୋଟାଏ ଶୂନ୍ୟତା । ଗୋଟାଏ ବିକଳ ଦହଗଞ୍ଜ ଭାବ । ଅନନ୍ତ ଆସିନାହିଁ । ତା କଥା ସେ ଜାଣିଶୁଣି ଉଠେଇଲେ ନାହିଁ ଅଯଥା ପାଟିତୁଣ୍ଡ ହେବ ବୋଲି । ଇନ୍ଦୁ ପଚାରିଲା ନାହିଁ କିଛି ସେ ସମ୍ବନ୍ଧରେ । ଅନନ୍ତ ପାଖକୁ ଯିବାପାଇଁ ମନ ହେଉଥିଲା । ଗଲେ ନାହିଁ । ତଣ୍ଡି ପାଖରେ ଯନ୍ତ୍ରଣାଟେ ବଢ଼ୁଥିଲା କ୍ରମଶଃ । ସଚେତନ ହେବାବେଳେ ଦେଖିଲେ, ସେ ଶୋଇଚନ୍ତି ଖଟରେ । ଲଣ୍ଠନଟେ ଜଳୁଥିଲା ପାଣ୍ଡୁର ଆଖି ନେଇ । ଇନ୍ଦୁ ଶୋଇଚି ଡାହାଣ ହାତ ପାପୁଲି ଉପରେ ମୁଣ୍ଡ ଥୋଇ । ତା' ପାଖକୁ ଉପରକୁ ମୁହଁକରି ଶୋଇଚି ବୁଲି । ଏ ପାଖକୁ ତାଙ୍କ ଆଡ଼କୁ ମୁହଁକରି ଶୋଇଚି ଚନ୍ଦା । ବୁଲି ଜନ୍ମ ହେବା ପରେ ପରେ ଅନ୍ୟ କାଠ ଖଟ ସ୍ଥାନାନ୍ତରିତ ହୋଇ ଯାଇଚି ପାଖ କୋଠରିକୁ । ଏମାନେ ସମସ୍ତେ ତଳେ ଶୁଅନ୍ତି ।

ଲଣ୍ଠନ ଆଲୁଅ ଏତେ ମ୍ଳାନ ଥିଲା ଯେ, କୋଠରିର ଅନ୍ଧକାର ଆଉ ନୀରବତା ସେଥିରେ କେବଳ ଗଭୀର ହେଉଥିଲା । ଭଲକରି ଦେଖାଯାଉ ନାହିଁ କିଛି । ସମସ୍ତେ ଜଣା ପଡ଼ୁଚନ୍ତି ଅପରିଚିତ ଗୋଟିଏ ଗୋଟିଏ ରହସ୍ୟମୟ ଆକାର ଭଳି । ଟର୍ଚ୍ଚ ଜାଳିବା ପାଇଁ ତକିଆ ପାଖ

ଅଣ୍ଡାଳିଲେ ଦେବ ଆଚାର୍ଯ୍ୟ । ମନେ ପଡ଼ିଲା ଯେ ବୁଲା ସେଇଟାକୁ ଖେଳନା ଭାବରେ ବ୍ୟବହାର କରୁଥିଲା ଗତକାଲି । ଆଉ ଜଳ୍ପନା ନାହିଁ ।

ଦେବ ଆଚାର୍ଯ୍ୟ ଇତସ୍ତତଃ ହେଉଥିଲେ ଏବଂ ଶୋଇବାକୁ ଚେଷ୍ଟା କରୁଥିଲେ । ଏଇଭଳି ମଝିରେ ମଝିରେ ହୁଏ । ନିଦ ହୁଏ ନାହିଁ । ନୀରବତାର ଭାଷା ଭୟାନକ ଜଣାପଡ଼େ । ବିଛଣାରୁ ଉଠନ୍ତି । ବାହାରକୁ ଯାଆନ୍ତି । ଗଛବୃଛ, ଘରଦ୍ୱାର, ରାସ୍ତାଘାଟ, ସବୁ ଅଚେତନ । ନିର୍ଜୀବ ଜଣାପଡ଼ନ୍ତି । ସେ କେବଳ ଏକୁଟିଆ ଏଇସବୁ ଜୀବନହୀନ ଗଦା ଭିତରେ ଛଟପଟ ହେଉଛନ୍ତି ବୋଲି ଜଣାପଡ଼େ । ସବୁ ଅଚଞ୍ଚଳ, ସମ୍ଭାବନାହୀନ ଓ ନିର୍ବାକ୍ । କେଉଁଆଡ଼ୁ କିଛି ହେଲେ ବାର୍ତ୍ତା ତାଙ୍କ ପାଖକୁ ଆସେ ନାହିଁ ।

ଏଭଳି ମୁହୂର୍ତ୍ତରେ କାହିଁକି ଶ୍ରୀମତୀ ସିନ୍ହା ଏତେ ମନେ ପଡ଼ନ୍ତି, ତାହା ବୁଝିପାରନ୍ତି ନାହିଁ ଦେବ ଆଚାର୍ଯ୍ୟ । ସେଇ ସ୍ନିଗ୍ଧ ସ୍ନେହପ୍ରବଣ ହାତ ବୁଲାଇ ଆଣେ ତାଙ୍କର ଯାବତୀୟ ରକ୍ତ ଜରଜର ଯନ୍ତ୍ରଣା-ଜର୍ଜରିତ କ୍ଷତ ଉପରେ । ଲାଗେ, ସେହି ନାରୀମୂର୍ତ୍ତିଟି ସବୁ ଦେଖୁଚି, ସବୁ ଜାଣୁଚି ଏବଂ ଗୋଟାଏ ଉପଯୁକ୍ତ ମୁହୂର୍ତ୍ତକୁ ଅପେକ୍ଷା କରୁଚି । ସେହି ମୁହୂର୍ତ୍ତରେ ସେ ପହଞ୍ଚି ଯିବ ତାଙ୍କ ପାଖରେ ଏବଂ ନିବିଡ଼ ଆଲିଙ୍ଗନ ଜରିଆରେ ତାଙ୍କୁ ଉଠାଇ ନେବ ତାଙ୍କର ସମସ୍ତ ହାହାକାର ଓ ବିଫଳତାରୁ । ଏ ମୁହୂର୍ତ୍ତ କେବେ ଆସିବ ? ସତରେ କ'ଣ ଆସିବ ? ପଞ୍ଜରା ଦୋହଲାଇ ଦୀର୍ଘଶ୍ୱାସ ବାହାରି ଆସେ । ଦେବ ଆଚାର୍ଯ୍ୟ ମୁଣ୍ଡ ହଲାଇ ମନକୁ ମନ କହନ୍ତି—ସବୁ ମିଛ । ଅତୀତର ସେହି ଆଲିଙ୍ଗନ କ'ଣ ବ୍ୟାପି ରହିଥାନ୍ତା ସାରା ଜୀବନ ? ସେତିକ ହୋଇଥାନ୍ତା ଯଦି ଆଉ ଦୁଃଖ କ'ଣ ଥିଲା ?

କ୍ୱଚିତ୍ ମନହୁଏ, ସମସ୍ତ ସଂସାର ଛାଡ଼ିଦେଇ ଠିଆ ହୋଇ ପଡ଼ିବାକୁ ଷ୍ଟେଜ୍ ଉପରେ । ଆହା, ଆରିଶିରେ ମୁହଁ ଦେଖିବା ବେଳକୁ ସବୁ ଉତ୍ସାହ ଓ ଆଗ୍ରହ ସଙ୍କୁଚିତ ହୋଇଯାଏ କାହିଁକି ? ଏଇ ମୁହଁରେ ମେକ୍ଅପ୍ କେଡ଼େ ଭଲ ଦିଶୁଥିଲା ! ଷ୍ଟେଜ୍‌ରେ କାନ୍ଦ ପକେଇବା ଥିଲା ଗୋଟାଏ ସଫଳତା; ଅଥଚ ବର୍ତ୍ତମାନ କାନ୍ଦିଲା ବେଳେ ଜୀବନଟା ବିଶାଳ ପରାଜୟରେ ପରିଣତ ହୋଇଯାଏ । କେତେ ତଫାତ୍ ! କିନ୍ତୁ

ସେହି ଷ୍ଟେଜ୍ ତାଙ୍କ ପାଖରୁ କେତେ ଦୂରରେ କେଜାଣି ? ଆଉ କ'ଣ ବୋଲି ହେବ ମୁହଁରେ ପାଉଡ଼ର ? ଷ୍ଟେଜ୍‌ର ଜଙ୍ଗଲ ପାହାଡ଼ରେ ଖୋଜା ହୋଇ ପାରିବ ହାତଛଡ଼ା ହୋଇଯାଇଥିବା ପ୍ରେମିକାକୁ ? ଏ ହାତରେ କ'ଣ ଧରିହେବ ଖଣ୍ଡା ? ଏ ହାତ ଆସ୍ତେ ଆସ୍ତେ କେମିତି ନିମ୍ନଗାମୀ ହୋଇ ପଡ଼ୁଚି । କେତେ ବା ମୋର ବୟସ ? ଆଉ କେତେ ବର୍ଷ ଅଛି ଜୀବନଟା ଶେଷ ହେବା ପାଇଁ ?

ଏଭଳି ମୁହୂର୍ତ୍ତ ଖୁବ୍ ତୀବ୍ର ହୋଇପଡ଼େ । ଅଣନିଃଶ୍ୱାସୀ ହୋଇ ପଡ଼ନ୍ତି ସେ; କିନ୍ତୁ ପରେ ପୁଣି ଭାବନ୍ତି, ଚୁଲିଚି ଗୋଟେ ପ୍ରକାର । ଚୁଲୁ, ନିହାତି ଦୁଃଖ ଆଉ କ'ଣ ? ସେ ହାରି ଯାଉଚନ୍ତି ବୋଲି ଭାବିବେ କାହିଁକି ? ବ୍ୟସ୍ତ ହେବାର କ'ଣ କାରଣ ଅଛି ?

ଦେବ ଆଚାର୍ଯ୍ୟ ହାତ ବଢ଼େଇଲେ ଇନ୍ଦୁକୁ ଉଠେଇବା ପାଇଁ । ସେ ଗପିବା ପାଇଁ ଚାହାନ୍ତି ଜଣକର ଉପସ୍ଥିତିରେ । ଏଭଳି ଗପିବା ଜରିଆରେ ସେ ନିଜକୁ ମୁକ୍ତ କରିପାରିବେ ନିଃସଙ୍ଗତା ବୋଧରୁ । ସେ ନିଜର ସମସ୍ତ ଅନୁଭବ ପ୍ରକାଶ କରିବା ପାଇଁ ଚାହାନ୍ତି । ନିଜ ଭିତରେ ଘାଣ୍ଟି-ଚକଟି ହେବା ଅସମ୍ଭବ ହୋଇ ପଡ଼ୁଥିଲା ତାଙ୍କ ପାଇଁ ।

ଏତେ ବର୍ଷର ବୈବାହିକ ଜୀବନ ମଧ୍ୟରେ ଦେବ ଆଚାର୍ଯ୍ୟ ଯେ ଇନ୍ଦୁ ସହିତ ଅନେକ ଅନ୍ତରଙ୍ଗ ଓ ନିବିଡ଼ ମୁହୂର୍ତ୍ତ କଟାଇ ନ ଥିଲେ, ତା' ନୁହେଁ । ସେଭଳି ମୁହୂର୍ତ୍ତରେ ଇନ୍ଦୁ ଓ ତାଙ୍କ ମଧ୍ୟରେ ରହିଥିବା ଆବେଗମୟ ସତ୍ତା ଏକ ସର୍ତ୍ତହୀନ ଏକତ୍ୱବୋଧ ଓ ଆବେଦନ ମଧ୍ୟରେ ପରସ୍ପରକୁ ଭେଟିଚନ୍ତି । ସେତେବେଳେ ଜୀବନ ଓ ପୃଥିବୀ କୋମଳ ହୋଇଯାଏ । ସମସ୍ତ ମସୃଣ ହୋଇଯାଏ । ଦୁହେଁ ଅନୁଭବ କରିଚନ୍ତି, ପୃଥିବୀର ଆଉ କିଛି ବକ୍ତବ୍ୟ ନାହିଁ, ସେମାନଙ୍କର ନିଜସ୍ୱ ନୀରବ ଭାଷା ବ୍ୟତୀତ ।

ନିତାନ୍ତ ମାମୁଲି ଓ ସାଧାରଣ ଘଟଣା ଅଭୂତପୂର୍ବ ହୋଇପଡ଼େ । ଯଥା—ଟିକିଏ ଅପେକ୍ଷା କର । ତୁମ କମିଜର ବୋତାମ ଛିଣ୍ଡି ଯାଇଚି । ସିଲେଇ କରିଦିଏ । କିମ୍ବା—କ'ଣ ହେଲଣି ତୁମର ଏଇ ଗୋଡ଼ ? କେତେଥର କହିଲଣି ଭଲ ଚପଲ ହଳେ କିଣିବାକୁ ! ଆଜି ଆଣିବ ।

କମ୍ପା—ଟଙ୍କା ଅଭାବ ହେଉଛି ? ମୋ ପାଖରେ ଅଳ୍ପ ଟଙ୍କା ଅଛି । ନେବ ? ଆଣିବି ? ଯଦି ଏ ପୂର୍ବରୁ ତୁମେ କେତେ ଟଙ୍କା ନେଲଣି ମୋ'ଠୁ । ମୁଁ ହିସାବ ରଖିଛି ଯେ ! ତୁମକୁ ସବୁ ଶୁଝିବାକୁ ପଡ଼ିବ । କମ୍ପା— ମୋର ଲୁଗା ଏବେ ଦରକାର ନାହିଁ । ଝିଅଙ୍କ ପାଇଁ ଭଲ ଜାମା ଆଣିବ । ନିଜ ପାଇଁ ଭଲ କମିଜଟେ କରିବ ।

ଏମିତି ସମୟରେ ଇନ୍ଦ୍ର ଦେଖାଯାଏ ଅତୁଳନୀୟ । ସେ ନିଜର ପରିଚିତ ସତ୍ତ୍ୱଠାରୁ ଆହୁରି ବିଶାଳ ଓ ତ୍ୟାଗମୟୀ ଦେଖାଯାଏ । ଗୋଟାଏ ନିଛକ ପରିଚ୍ଛନ୍ନ ମଣିଷ; ଗୋଟାଏ ଉଦାର ଉତ୍ସର୍ଗୀକୃତ ମା' ହୋଇଯାଏ ସେତେବେଳେ । ଏବେ ଅବଶ୍ୟ ଏମିତି ମୁହୂର୍ତ୍ତ ଆସୁଛି ଖୁବ୍ କ୍ୱଚିତ୍ । ବେଳେବେଳେ ଦେବ ଆଗ୍ରହୀ ଭାବନ୍ତି, ଇନ୍ଦ୍ରର କେଉଁ ଚରିତ୍ରିକ ଦିଗଟି ବାସ୍ତବ ? ଦୁଇଟି ଯାକ ? ଅଥଚ ଇନ୍ଦ୍ର ସହଜ ଓ ବୋଧଗମ୍ୟ ଦେଖାଯାଏ ଭଲ ମୁହୂର୍ତ୍ତରେ । ସେଇଭଳି ମୁହୂର୍ତ୍ତ ପାଇବା ପାଇଁ ଦେବ ଆଗ୍ରହୀ ବ୍ୟାକୁଳ ହୋଇ ପଡ଼ୁଥିଲେ ।

"କ'ଣ ?" ବିରକ୍ତି ଓ ନିଦମିଶା ସ୍ୱର ଇନ୍ଦ୍ରର ।

—"ଗୋଟିଏ କଥା କହିବାର ଅଛି ।" ଦେବ ଆଗ୍ରହୀ କହିଲେ ।

—"କ'ଣ କହୁ ନ ? ମୋତେ ନିଦ ଲାଗୁଛି ।" ଇନ୍ଦ୍ର ଆଖି ନ ଖୋଲି କହିଲା । ତା'ର ଆଶଙ୍କା ହେଲା ଯେ, ଅନନ୍ତକୁ କେନ୍ଦ୍ର କରି ଯେଉଁ ଭକ୍ତି ଘଟଣା ଘଟିଛି, ସେଇ ସମ୍ପର୍କରେ ଦେବ ଆଗ୍ରହୀ ତା'ଠୁ କୈଫିୟତ ଦାବି କରିବାକୁ ଯାଉଛନ୍ତି । ଏଥିପାଇଁ ସେ ପ୍ରସ୍ତୁତ ଥିଲା; ତଥାପି ଗୋଟାଏ କିଛି ଘଟିବ ବୋଲି ଭାବି ସେ ଏଡ଼େଇ ନେବାକୁ ଚାହୁଁଥିଲା ଦେବ ଆଗ୍ରହୀଙ୍କୁ ।

—"ଆମ ଦୋକାନ ବୋଧହୁଏ ଭାଙ୍ଗିଯିବ । ଦେବ ଆଗ୍ରହୀଙ୍କ କଥା ଶୁଣି ଇନ୍ଦ୍ର ଆଖି ଖୋଲିଲା ଏବଂ ପୁଣି ବନ୍ଦ କଲା । ସେ ଜାଣିପାରୁ ନ ଥିଲା, ଅନନ୍ତ ସହିତ ଦୋକାନ ଭାଙ୍ଗିଯିବାର ସମ୍ପର୍କ କ'ଣ ଥାଇପାରେ ।

—"କାହିଁକି ?" ଇନ୍ଦ୍ର ପ୍ରଶ୍ନରେ କୌଣସି ବ୍ୟସ୍ତତା କମ୍ପା ଆଗ୍ରହ ନ ଥିଲା ।

—"ମୁଁ ଦୋକାନୀମାନଙ୍କର ବାକି ଟଙ୍କା ଶୁଝିପାରୁ ନାହିଁ। ଏଣେ ଲୋକମାନଙ୍କ ଉପରେ ମୋର ଯେଉଁ ଟଙ୍କା ବାକି ଅଛି, ତାହା ଆଦାୟ ହୋଇପାରୁ ନାହିଁ। ସେସବୁ ଆଦାୟ ହୋଇଗଲେ ମଧ୍ୟ ଯେଉଁ ସ୍ଥିରୁଛି ଦୋକାନୀମାନଙ୍କ ଠାରୁ ମୁଁ ସଉଦା ଆଣେ, ସେମାନଙ୍କର ସବୁ ଟଙ୍କା ଶୁଝି ହେବ ନାହିଁ । ସେମାନଙ୍କୁ ଟଙ୍କା ପରିଶୋଧ ନ କଲେ ସଉଦା ଆସିବ କିପରି ? ସଉଦା ନ ଥିଲେ ଦୋକାନଟିଏ ଚାଲିବ କେମିତି ?" କିଛିଏ ନୀରବତା ପରେ ସେ ଯୋଗକଲେ—"ମୋତେ ଆଉ କିଛି ଭଲ ଲାଗୁ ନାହିଁ। କୌଣସି ଉପାୟ ଦେଖାଯାଉ ନାହିଁ।"

ଇନ୍ଦୁ ନିଃସନ୍ଦେହ ହେଲା ଯେ, ସମସ୍ୟାଟା ତା ପାଖରେ ଲୁହା ଯାଉଛି, ତା'ର ଯୁକ୍ତି ଦର୍ଶାଇବା ପାଇଁ ନୁହେଁ । ତା ସ୍ୱରରୁ ତନ୍ଦ୍ରା ଓ ବିରକ୍ତି ଅପସରି ଯାଇଥିଲା । ପଚାରିଲା—"ମୁଁ ସେସବୁ ବୁଝେ କ'ଣ ? କ'ଣ ମୁଁ କରିପାରିବି ଏଥିପାଇଁ ?"

ଦେବ ଆଚାର୍ଯ୍ୟ ଚୁପ୍ ହୋଇଗଲେ । ସେ ଠିକ୍ ଭାବରେ ବୁଝେଇ ପାରିବେ ନାହିଁ ଇନ୍ଦୁ ଆଗରେ ସେସବୁ କହୁଚନ୍ତି କାହିଁକି ? ସେ ପୁଣି ନିଃସଙ୍ଗ ଓ ଅସହାୟ ହୋଇ ପଡ଼ିଲେ । କହିଲେ—"ମୁଁ ଜାଣେ, ଏ ବାବଦରେ ତୁମେ କିଛି ସାହାଯ୍ୟ କରିପାରିବ ନାହିଁ। ସତ କଥା, ତୁମେ ଏସବୁ ବା ବୁଝ କ'ଣ ? ତେବେ ଦୋକାନଟା ମୋ ଆଗରେ ଭାଙ୍ଗି ଯାଉଛି । ଏତେ ବଡ଼ ଦୁଃଖଟେ ଏକୁଟିଆ ସହିବା କଷ୍ଟ ହେଉଛି ।"

--"ଦୋକାନୀମାନଙ୍କର ଏତେ ଟଙ୍କା ବାକି ରହିଲା କାହିଁକି ? ଏଠି ତ ବେଶ୍ ବିକ୍ରିବଟା ହେଉଛି । ସେ ଟଙ୍କା ତେବେ ଯାଉଛି କୁଆଡ଼େ ? ଘରେ ଆମର ବାଜେ ଖର୍ଚ୍ଚ ତ ହେଉନ !" ଇନ୍ଦୁ କହିଲା ।

ଦେବ ଆଚାର୍ଯ୍ୟ କେବଳ କେଶ ଭିତରେ ଆଙ୍ଗୁଳି ସଞ୍ଚାଳନ କଲେ । କହିଲେ—"ବାଜେ ଖର୍ଚ୍ଚ ଆଉ କ'ଣ ? ତେବେ, ଗ୍ରାହକରୁ ଯେତିକି ମିଳିବା କଥା, ସେତିକି ମିଳୁ ନାହିଁ। ଏ ଘରଟା ବଡ଼ କରିଚେ, ବାଗେଇଚେ । ଅଥଚ ଦୋକାନ ବୁଡ଼ି ଯାଉଛି ।"

କାହିଁକି କେଜାଣି ଆହତ ହେଲା ଇନ୍ଦୁ । କହିଲା—"କିଛି ଧନ ତଳେ ଝିଅ ପାଇଁ ଇଅର୍‌ରିଙ୍ଗ୍ ହଳେ କରିଚେ । ଅନେକ ଧନ ତଳେ

କେତେ ଥର ସିନେମା ଦେଖିଥିଲେ । ଭଲ ଶାଢ଼ୀ କେତେଟା କିଣି ଦେବା ପାଇଁ ଜିଦ୍ କରିଥିଲି । ଦେହ ଦେଖାଇବା ପାଇଁ ବଡ଼ ଡାକ୍ତରଖାନା ଯାଇଥିଲି ।'' ଟିକିଏ ରୁପ୍ ରହି କମ୍ପିତ ସ୍ୱରରେ ଇନ୍ଦୁ କହିଲା—''ତୁମ ମନରେ ଏଇ କଥା ବି ଥାଇପାରେ । ତୁମେ ଭାବୁଥିବ ଯେ ମୋ ପାଇଁ ଖର୍ଚ୍ଚାନ୍ତ ହୋଇ, ତୁମ ଦୋକାନ ଭାସିଗଲା, କିନ୍ତୁ ମୁଁ କ'ଣ ଏଡ଼େ ବଡ଼ ବିବାଦ ତୁମ ମୁଣ୍ଡ ଉପରେ ଥୋଇଦେଲି ଯେ, ଦୋକାନଟା ଭାଙ୍ଗିଯିବ ?''

ଖାଲି ନିରୁତ୍ସାହିତ ନୁହେଁ; ଦେବ ଆଶ୍ଚର୍ଯ୍ୟ ନିଜ ଭିତରେ ଭାଙ୍ଗି ପଡ଼ିଲେ । କଥାଟା ନିତାନ୍ତ ଅପ୍ରୀତିକର ଦିଗଆଡ଼େ ଗତି କରୁଥିଲା । ସେ କହିଲେ—''ମୋ କଥାକୁ ଭିନ୍ନ ଅର୍ଥ କରି ଥୋଇବା ତୁମର ଗୋଟିଏ ଅଭ୍ୟାସ ହୋଇ ଗଲାଣି । ତୁମ ଯୋଗୁଁ ଦୋକାନ ଦେବାଳିଆ ଅବସ୍ଥାରେ ପହଞ୍ଚିଛି ବୋଲି ମୁଁ ଜମା କହି ନାହିଁ । ମୋ ଦୁଃଖ କେବଳ କହୁଥିଲି ତୁମ ପାଖରେ ।''

ଅନ୍ୟ ଆଡ଼େ ମୁହଁ ବୁଲାଇ ନେଲା ଇନ୍ଦୁ । ଏଥର ଟିକିଏ ନରମ ସ୍ୱରରେ କହିଲା—''ମୁଁ କେବଳ ତୁମ କଥାକୁ ଭିନ୍ନ ଅର୍ଥ କରି ଥୋଉଛି । ତୁମେ ସଫା ସଫା କହିଦେଇ ଥାଆନ୍ତ ଯେ, ମୋର ବାଜେ ଖର୍ଚ୍ଚ ଯୋଗୁଁ ତୁମ ଦୁଃଖ ବଢ଼ି ଯାଇଛି । କଥାଟା ଏଣେ ତେଣେ ବୁଲେଇବା ଦରକାର କ'ଣ ? ଏଠାରେ ଖାଲି ମୁଁ ବାଜେ ଖର୍ଚ୍ଚ କରୁଛି । ତୁମେ ଜମା କରୁନ । ତୁମେ ଭାବିଚନ୍ତି କାମ କରିବ ନାହିଁ । ଅବ୍ୟାଜରେ ଦୁନିଆଁ ଲୋକଙ୍କୁ ପୋଷିବ, ଗୃହବାସ ବୁଝିବ ନାହିଁ, ଦଳେ ଲୋକଙ୍କ ପାଖରେ ହେଁ ହେଁ ଫେଁ ଫେଁ ହେଉଥିବ । ତୁମେ ବୁଡ଼ିବ ନାହିଁ ତ ବୁଡ଼ିବ କିଏ ? କ'ଣ ନା, ମୋ ଦୁଃଖ ବଳେଇ ପଡ଼ୁଛି । ରାତି ଅଧରେ ଉଠେଇ ବକର୍ ବକର୍ ହେଉଚନ୍ତି ମୋ ସାଙ୍ଗରେ ମୋ ଖର୍ଚ୍ଚ ସକାଶେ ସବୁ ବୁଡ଼ିଗଲା ।''

ଦେବ ଆଶ୍ଚର୍ଯ୍ୟ ଉଠି ଆସିଲେ ସେଠାରୁ । ପୁଣି ଆସିଲେ ବାହାରକୁ । ଘରକୁ । ବସିଲେ ବିଛଣାରେ । ସବୁ ଜଣା ପଡ଼ୁଥିଲା ନିଷ୍କରୁଣ ଓ ଆବେଗରହିତ । ଗୋଟାଏ ଦିଗହଜା ମରୁଭୂମି ଭିତରେ ରହି ସେ ଯେପରି ଆର୍ତ୍ତନାଦ କରୁଚନ୍ତି ଆଞ୍ଜୁଳାଏ ପାଣି ପାଇଁ ।

ପରଦିନ ସକାଳେ ଠାକୁରଙ୍କ ସଉଦା ବାହାର କରିଦେଇ ସେ କମିଜ୍ ପିନ୍ଧିଲେ । ଅସମୟରେ କୁଆଡ଼େ ବାହାରିଚନ୍ତି ବୋଲି ଇନ୍ଦୁ ପଚାରିଲା ନାହିଁ । ଦେବ ଆଚାର୍ଯ୍ୟ ସାଇକେଲ ବାହାର କଲେ ।

ଏଗାରଟା-ବାରଟା ବେଳେ ଅନନ୍ତ ଫାଙ୍କା ଦୋକାନ ବାରନ୍ଦାରେ ଠିଆ ହେଲା । ଦେବ ଆଚାର୍ଯ୍ୟଙ୍କୁ ସାଇକେଲ ଚଳାଇ ଯାଉଥିବାର ସେ ଦେଖିଛି ଅନେକ ସମୟ ପୂର୍ବେ । ତଥାପି ବନ୍ଦ ଦୋକାନ ବାରନ୍ଦାରେ ଠିଆହୋଇ ରହିଲା ସେ; ସତେ ଯେପରି ଅଲୌକିକ ଶକ୍ତି ବଳରେ ତା ଭିତରୁ କିଛି ବାହାରି ଆସିବ । ଅନନ୍ତ ଇତସ୍ତତଃ ହେଲା, ଅନେକ ଦିନ ହେବ ଗାଁ ଲୋକେ ମେଘମୁକ୍ତ ଆକାଶକୁ ଚାହିଁ ବର୍ଷା ହେବ ବୋଲି ଅସମ୍ଭବ ଆଶା କଲାଭଳି । ତା'ପରେ ବାରନ୍ଦାରୁ ଓହ୍ଲାଇ ଆସିଲା ।

--''ଆଚାର୍ଯ୍ୟେ ଅଛ କି ?'' ଅନନ୍ତ ପଚାରିଲା । ସେ ନିଜେ ବିସ୍ମିତ ହେଲା ନିଜକୁ ଶୁଣି । ଜଣେ ଭିକାରୀର ସ୍ୱର ଭଳି ତା' ଡାକ ଶୁଭୁଥିଲା ଦୟନୀୟ ଓ ଆଶଙ୍କାଗ୍ରସ୍ତ । ଆଚାର୍ଯ୍ୟେ ଅଛ କି ବୋଲି ସେ ଡାକ ପାରୁଥିଲା, ଜଣେ ସମାନ ସ୍ତରର ଲୋକ ଆଉ ଜଣକୁ ଆତ୍ମବିଶ୍ୱାସ ସହିତ ଯେମିତି ଜାହିର କଲାଭଳି ଡାକିବା କଥା ।

ଭିତରୁ ବାହାରି ଆସିଲା ଇନ୍ଦୁ । ଅନନ୍ତ ତାକୁ ହିଁ ଡାକୁଥିଲା, ଦେବ ଆଚାର୍ଯ୍ୟ ଅନୁପସ୍ଥିତ ଅଛନ୍ତି ବୋଲି ଜାଣିବା ପରେ; ଅଥଚ ତାକୁ ଦେଖିବା ମାତ୍ରେ ଜଣେ ଅପରାଧୀ ଭଳି ଅନନ୍ତ ପାଣ୍ଡୁର ଦେଖାଗଲା । ସେଠାରୁ ପଳେଇ ଯିବା ପାଇଁ ତତ୍ପର ହୋଇ ପଡ଼ିଲା ।

—''ସକାଳୁ କୁଆଡ଼େ ଯାଇଚନ୍ତି । କିଛି କହିଯାଇ ନାହାନ୍ତି ।'' ଇନ୍ଦୁର ସ୍ୱର ଥିଲା ଶାନ୍ତ ଓ ସହଜ ।

ଅନନ୍ତ ଉତ୍ସାହିତ ହୋଇ ପଡ଼ିଲା ଯଥେଷ୍ଟ । ପଚାରିଲା—"କିଛି କାମ ଅଛି ? କରିଦେବି ?"

ଇନ୍ଦୁର ବୁଝିବା ପାଇଁ କଷ୍ଟ ହୋଇ ନ ଥିଲା । ଅନେକ ବର୍ଷ ଧରି ଦେବ ଆଚାର୍ଯ୍ୟଙ୍କର ସହଯୋଗୀ ଓ ବନ୍ଧୁ ହୋଇଥିବା ଏଇ ମଣିଷଟି ନିରୁପାୟ ହୋଇ ତାଙ୍କ ପାଖରେ ଆତ୍ମସମର୍ପଣ କରୁଛି । ସେ ନିଜର ଶାରୀରିକ ଶ୍ରମ ବିକିବା ପାଇଁ ଚାହୁଁଛି ଏବଂ ପରିଣାମରେ, ସେ'ଦିନର ଭୋଜନ ରୋଜଗାର କରିବା ପାଇଁ ବ୍ୟାକୁଳ ହୋଇ ପଡ଼ିଛି । କିଛି କାମ ନାହିଁ ବୋଲି ଇନ୍ଦୁ କହିବା ପାଇଁ ଯାଉଥିଲା, କିନ୍ତୁ ଅଟକି ଗଲା । ଦୟା ଦେଖାଇବା ଭଳି କହିଲା—"ଅଗଣା ଆଉ ପିଣ୍ଡା ତଳେ ଥିବା ଏ ଘାସ ସଫା କରିଦେଲ । ମୁଁ କୋଦାଳ ବାହାର କରି ଦେଉଛି ।"

ଦିନ ଗୋଟାଏ-ଦୁଇଟା ବେଳେ ସବୁ କାମ ସାରି ଅନନ୍ତ ତୃପ୍ତିର ସହିତ ଭୋଜନ କଲା, ପ୍ରାୟ ଚବିଶ୍ ଘଣ୍ଟା ପରେ । ବାସନ ମାଜିବା ପାଇଁ ନିର୍ଦ୍ଦେଶ ଦିଆହୋଇ ନ ଥିଲେ ମଧ୍ୟ, ସ୍ୱେଚ୍ଛାର ସହିତ ପ୍ରସ୍ତାବ ବାଢ଼ିଲା—"ଯଦି ବାସନ ଅଛି, ବାହାର କରିଦିଅ । ମାଜି ଆଣିବି ।"

ସଫା ହୋଇଥିବା ବାସନ ଘରେ ରଖିବା ସମୟ ପର୍ଯ୍ୟନ୍ତ ଅନନ୍ତକୁ ଅପେକ୍ଷା କରିବାକୁ ପଡ଼ିଥିଲା; କାଳେ କେଉଁଠି ତ୍ରୁଟି ଥିଲେ ପୁନରାବୃତ୍ତି କରିବ ବୋଲି । ତ୍ରୁଟିହୀନ ଥିଲା ବୋଧହୁଏ ତା'ର କାମ; କିନ୍ତୁ ତା'ପରେ ପରେ ଇନ୍ଦୁର ବାକ୍ୟ ତାକୁ ଛେଉଣ୍ଡ କରି ଦେଇଥିଲା—"କାଲି ଆମ ଘରେ କିଛି କାମ କରିବାକୁ ପଡ଼ିବ ନାହିଁ ।" ଅନନ୍ତ ବୁଝିଗଲା, ଦେବ ଆଚାର୍ଯ୍ୟଙ୍କ ଘରେ ତା'ର ସମସ୍ତ ଆବଶ୍ୟକତା ଶେଷ ହୋଇଗଲା ସେହି ଗୋଟିଏ କଥାରେ ।

ଦିନ ପ୍ରାୟ ଚାରିଟା ବେଳକୁ ଦେବ ଆଚାର୍ଯ୍ୟ ପହଞ୍ଚିଗଲେ । ସାଇକେଲଟା ସାବଧାନତାର ସହିତ ବାରନ୍ଦାରେ ଡେରିଦେଇ ସେ ମାଲତକ ଓହ୍ଲାଇ ଆଣିଲେ । ଦୁଇଟା ବଡ଼ ବ୍ୟାଗ୍ ଝୁଲୁଥିଲା ହାଣ୍ଡେଲରୁ । ବସ୍ତା ଗୋଟାଏ ଲଦା ହୋଇଥିଲା କେରିଅର୍‌ରେ । ତାଙ୍କ ପଛେ ପଛେ ଭାରରେ ଆହୁରି ମାଲ୍ ଆସୁଛି—ଆଳୁ, ପିଆଜ, ଲୁଣ,

କପିସିନ ଇତ୍ୟାଦି । ଦୋକାନ ଖୋଲି ପରମ ଉତ୍ସାହର ସହିତ ଜିନିଷ-ଗୁଡ଼ାକ ରଖିବା ବେଳେ ଚନ୍ଦା ଆସି ପହଞ୍ଚିଲା ବୁଲି ସହିତ । ସମସ୍ତ କାମ ସ୍ଥଗିତ ରଖି, ଦେବ ଆଗ୍ରୁର୍ଯ୍ୟ ତଳୁ ଉଠାଇ ନେଲେ ବୁଲିକୁ ଏବଂ ତା'ର ସମସ୍ତ ପ୍ରତିବାଦକୁ ବେଖାତିର କରି, ତା'ର ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଅଜସ୍ର ଚୁମ୍ବନ ବର୍ଷଣ କଲେ । ଦୁହିଁଙ୍କ ହାତରେ ଲଜେନ୍ସ ଓ ବିସ୍କୁଟ ଧରାଇ ଦେଇ ପୁଣି କାମ କରିବାକୁ ଗଲାବେଳେ ଚନ୍ଦା କହିଲା—"ବାପା, ଆସ ଖାଇବ । ମା' କହୁଛି ।"

ପିଲାଙ୍କ ଗହଣରେ ଖା'ଇବସିଥିବା ବେଳେ ଇନ୍ଦୁ ପଚାରିଲା—"ଟଙ୍କାତ ପାଖରେ ନ ଥିଲା; ପୁଣି ଦୋକାନ ପାଇଁ ଜିନିଷ ଆସିଲା କିପରି ?"

ଦେବ ଆଗ୍ରୁର୍ଯ୍ୟଙ୍କର ଖାଉଥିବା ହାତ ଅଟକିଗଲା ମୁହୂର୍ତ୍ତକ ପାଇଁ । ସେ ଗୃହିଁଲେ ଇନ୍ଦୁ ଆଡ଼େ । ସେ ହସୁଥିଲା; ପ୍ରାୟ ସନ୍ତୁଷ୍ଟ ଓ ପ୍ରସନ୍ନ ଦେଖାଯାଉଥିଲା । ଅନେକ ଦିନ ପରେ ସେ ଦେଖାଯାଉଥିଲା ସେଇଭଳି । ଦେବ ଆଗ୍ରୁର୍ଯ୍ୟ ଟିକିଏ ଖାମ୍‌ଖିଆଲି ଢଙ୍ଗରେ ଉତ୍ତର ଦେଲେ—"ଟଙ୍କା କରଜ କରି ଆଣିଛି । ବର୍ଷକ ପରେ ଶୁଝିବାକୁ ପଡ଼ିବ ।" ପରେ ପରେ ସେ ଉଠିଗଲେ, ଦୋକାନ କାମ ସାରିବା ପାଇଁ ।

ସେଇଟା କେବଳ ଉତ୍ତେଜନାର ଅନୁଭୂତି ନ ଥିଲା । ତା' ସହିତ ମିଶିଥିଲା ଆତୁରତା ଓ ଆଶଙ୍କା । ଦୋକାନରେ ଜିନିଷ ପତ୍ର ସଜାଡ଼ୁଥିଲେ ଦେବ ଆଗ୍ରୁର୍ଯ୍ୟ ଏବଂ ସନ୍ଧ୍ୟା ଆସର ପାଇଁ ଆସିଥିବା ଲୋକର ପ୍ରଶ୍ନର ଉତ୍ତର ଦେଉଥିଲେ, ଉତ୍ତର ଦେଉଥିଲେ ଉତ୍ସାହ ଓ ଆଗ୍ରହର ସହିତ । ଗରାଖମାନଙ୍କର ସମସ୍ତ ସଉଦା ଦେଉଥିଲେ ଖାତିରିର ସହିତ, ଜଣେ ସଫଳ ବ୍ୟବସାୟୀର ଭଙ୍ଗୀ ନେଇ । ଅଥଚ ଏ ସବୁର ଅନ୍ତରାଳରେ ବେଳେବେଳେ ସଂଶୟ, ନିଜ ଭିତରେ ଭୁଷୁଡ଼ି ପଡ଼ିବାର ବିବ୍ରତଭାବ ତାଙ୍କୁ ଅସ୍ଥିର କରିପକାଉଥିଲା ।

ନମାଇଁ ଗୋଟାଏ ବଡ଼ ଧରଣର ଦୋକାନ ଖୋଲିବାକୁ ଯାଉଛି ଗାଁର ପଶ୍ଚିମ ଦିଗରେ—ଯେଉଁଠି ଗାଁକୁ ସଂଯୋଗ କରୁଥିବା ଉଚ୍ଚୋଟି

ସଡ଼କ ମିଳିତ ହୋଇଛନ୍ତି, ସେଇଠି । କିଛି ବର୍ଷ ହେଲା ସେଠାରେ ମାଇନର ସ୍କୁଲ ଖୋଲି ସାରିଚି । ଏକଦା ଅପନ୍ତରା ଓ ବୁଦୁବୁଦୁକିଆ ଜଙ୍ଗଲ ଥିବା ସେହି ସ୍ଥାନ ସ୍କୁଲ ସଂକ୍ରାନ୍ତୀୟ ତତ୍ପରତାରେ ବ୍ୟସ୍ତ ରହୁଚି । ସ୍କୁଲ ପାଇଁ ଯେଉଁ ହଷ୍ଟେଲ ଅଛି, ସେଠାରେ ଅନେକ ପିଲା ରହୁଚନ୍ତି ଏବଂ ସେମାନଙ୍କର କ୍ରମବର୍ଦ୍ଧମାନ ଗୃହଦା ପୂରଣ କରିବା ପାଇଁ ଦେବ ଆଚାର୍ଯ୍ୟଙ୍କ ଦୋକାନ ବେଳେବେଳେ ଅସମର୍ଥ ହୋଇ ପଡ଼ୁଚି । ସ୍କୁଲ ଛୁଟି ପରେ ମଧ୍ୟ ସ୍ଥାନଟା କୋଳାହଳ-ମୁଖରିତ ହୁଏ ପିଲାମାନଙ୍କର ବିଭିନ୍ନ ପ୍ରକାରର ଖେଳ ଯୋଗୁଁ । ରାତିରେ ସେମାନଙ୍କର ଲଣ୍ଠନ ଜଳେ ଏବଂ ଶିକ୍ଷକମାନେ, ଏପରିକି ଗାଁର କେତେକ ଲୋକ ସନ୍ଧ୍ୟାଟା ସେଇ ସ୍ଥାନରେ ଅତିବାହିତ କରନ୍ତି । ଦୋକାନ ପାଇଁ ସେ ସ୍ଥାନଟି ନିତାନ୍ତ ଉପଯୋଗୀ ବୋଲି ନିଃସନ୍ଦେହରେ କୁହାଯାଇ ପାରେ । କିଏ ଜାଣେ, ସେଠାରେ ହାଇସ୍କୁଲ ମଧ୍ୟ ଖୋଲିପାରେ । ଆପାତତଃ ସେଥିପାଇଁ ସେପାଖରେ ଥିବା ପ୍ରଶସ୍ତ ସ୍ଥାନର ଗୋଟାଏ ସ୍ୱପ୍ନ ଅଛି ।

ଦୁଇ ବର୍ଷ ତଳେ ନିମାଇଁ ଘର କାମ ଆରମ୍ଭ କରିଥିଲା ସେଠାରେ । ଉଦ୍ଦେଶ୍ୟ କ'ଣ ବୋଲି ପଚାରିଲେ ସେ କହୁଥିଲା—"ଘରେ ଅସୁବିଧା ହେଉଚି ଔଷଧ ବ୍ୟବସାୟ ପାଇଁ । ତା'ଛଡ଼ା ମହୁଲ ଓ ଶାଳ ମଞ୍ଜି ସଂଗ୍ରହ କରି ରଖିବା ପାଇଁ ଘର ନାହିଁ । ଏଥିରେ ପ୍ରଚୁର ଲାଭ ଅଛି ବୋଲି ଗଲା ବର୍ଷର ଅଭିଜ୍ଞତା କହେ । ବହି-ଖାତା-କଲମ-ପିଲଟ ଓ ଲୁଗା ଦୋକାନଟେ ଏଇଠି ଖୋଲିବି । ବାର କିଲୋମିଟର ଦୂର ବଜାରକୁ ଆଉ ଯିବା ଦରକାର ନାହିଁ ।"

ତିନି ବଖରା ବଡ଼ ଘରଟେ । ମାଟି ଟାଇଲର ଛପର । ସିମେଣ୍ଟ ଚଟାଣ । ଚୂନ ଧୂଳେଇ କାନ୍ଥ । ଘରକୁ ଲାଗି ଗ୍ଲେଟ ଘେରେଇ ଘରଟେ । କେବେ କପର ଫିଷ୍ଟ ହେବ ସେଠାରେ । ଘର ବାରନ୍ଦାଟା ଏତେ ବଡ଼ ଯେ, ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦା ଭଳି ଚାରି-ପାଞ୍ଚଟା ହଜିଯିବ, ତା ଭିତରେ । ଏବେ ଘର କାମ ସରିବା ପରେ ସେ କହୁଚି, ତେଜରାତି ଦୋକାନଟିଏ ଖୋଲିବ । ଅର୍ଥାତ୍ ଦେବ ଆଚାର୍ଯ୍ୟଙ୍କର ପ୍ରତିଯୋଗୀ ଦୋକାନଟିଏ ଗାଁରେ ବସିବ ପଶ୍ଚିମ ଦିଗକୁ । ନିମାଇଁ ଇତି ମଧ୍ୟରେ

ଭଲ ଦିନ ନରୂପଣ ପକାଟେଶ ସଙ୍କର୍ଷଣ ମାଷ୍ଟ୍ରଙ୍କ ସହିତ ପରାମର୍ଶ କରିସାରିଚ ।

ଜିନଷ ସଜାଡ଼ିବା ବେଳେ ଦେବ ଆଗ୍ରୂର୍ଯ୍ୟଙ୍କୁ ଜଣାପଡ଼ୁଥିଲ, ତାଙ୍କର ଦୁଇ ହାତ ଅସମ୍ଭବ ଭାବରେ କମ୍ପିଉଠୁଚ ଏବଂ ଜିନଷଗୁଡ଼ାକୁ ଦୃଢ଼ତାର ସହିତ ଧରିପାରୁ ନାହାନ୍ତି ସେ । ଏବେ କାହିଁକି କେଜାଣି ମଝିରେ ମଝିରେ ତାଙ୍କର ଦୁଇ ହାତ ଥରୁଚ । ସଂସାରର ସମସ୍ତ ବ୍ୟାପାର ସତେ କ'ଣ ଖସିଯିବ ତାଙ୍କ ହାତମୁଠା ଭିତରୁ ? କିଛିଦିନ ପୂର୍ବେ ଡାକ୍ତର କେତେଟା ଔଷଧ ଲେଖି ଦେଇଥିଲେ । ସେ'ସବୁ ଖାଇବା ପରେ ସବୁ ଭଲ ହୋଇଗଲା ବୋଲି ଭାବୁଥିଲେ ସେ । ଏବେ ପୁଣି ସେମିତି ହେଉଚ । ଭଲ ଔଷଧ ଖାଇବାକୁ ହେବ; ନ ହେଲେ ନିକଟ ଧରି ସଉଦା ବିକିବେ ସେ କିପରି ?

ଦେବ ଆଗ୍ରୂର୍ଯ୍ୟ ଭାବୁଥିଲେ, ଜୀବନରେ ବୋଧହୁଏ ପ୍ରଥମଥର ପାଇଁ ଗୋଟାଏ ଆହ୍ୱାନର ମୁକାବିଲା କରିବାକୁ ଯାଉଛନ୍ତି । ଦେଖାଯାଉ, କ'ଣ ହେଉଚ । ତାଙ୍କର କଣ୍ଠ ବୋଧହୁଏ ଜଙ୍କ୍‌ଗ୍ରସ୍ତ ହୋଇଗଲାଣି । ଅନେକ ବର୍ଷ ହେଲା ସେ ଅପେରା ଡାଇଲଗ୍ ଉଚ୍ଚାରଣ କରିନାହାନ୍ତି । ସ୍ୱରକୁ ଘଷି ମାଜ ଚକ୍ ଚକ୍ କରିବାକୁ ହେବ । ଗୋଟାଏ ଦୁଇଟା ବାର-ବର୍ଷର ଠାଣି ମରୁଡ଼ିଗ୍ରସ୍ତ ଜମି ଭଳି କାଙ୍ଗାଳ ଦେଖା ଯାଉଥିବା ଏ ଦୋକାନର ଭିତର ବାହାର ସବୁଜ ହୋଇଯିବ ପୁଣି ଥରେ । ଜୀବନର ଗୋଟାଏ ଦୁଇଟା ଶୃଙ୍ଖଳକର ଅନୁଭୂତି କରିଦେବା ମାତ୍ରେ ଭରପୂର ହୋଇଯିବ ଏ ଅଞ୍ଚଳ ମୁଗ୍ଧ ଶ୍ରୋତା ଓ ଗରାଖଙ୍କ ଦ୍ୱାରା । ବୁଝିଲୁ ନମାଇଁ, ଏତେ ସହଜ ନୁହେଁ ବେଟା, ଦୋକାନଟେ ଚଳେଇବା ପାଇଁ । ଦୋକାନ ଚଳାଉଥିବା ଅନେକ ଲୋକ ଚକ୍ରୁ ହୋଇ ଯାଇଚନ୍ତି, ତା' ଭିତରେ । ପୋଖରୀରେ ପହଁରିବା, ଗଛ ଚଢ଼ିବା କିମ୍ବା ପାହାଡ଼ ଉପରକୁ ଯାଇ କୋଳ ଖାଇବା ଓ ପଥର ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ଦୋଅକ୍ଷରୀ କଥା ଲେଖିବା ସହଜ ବ୍ୟାପାର । ଦୋକାନ ଖୋଲିବୁ ତ, ମୋ ସାଙ୍ଗରେ ଟକ୍‌କର ଦେବାକୁ ଅଣ୍ଟା ଭିଡ଼ି ବାହାରିଚୁ ତ ! ହଉ, ଦେଖ୍ କ'ଣ ହେଉଚ । ଘରପାଖରେ ଡେଲ୍ଇଟ୍ ଜଳୁଥିବ ସାଁ ସାଁ ହୋଇ ।

ଲୋକ ବସିଥିବେ ଷ୍ଟେଜ୍ ଗୃହପାଖରେ ନାହିଁ ନ ଥିବା ଉତ୍କଣ୍ଠା ନେଇ । ହାତରେ ଖଣ୍ଡା ଝଲମଲ କରିବ । ଦୁର୍ଦ୍ଦାନ୍ତ ଭିଲେନ୍‌ର ଗ୍ରୀବ ଖଣ୍ଡ ଖଣ୍ଡ ହୋଇଯାଏ ମାମୁଲି ରୁଟି ଭଳି । ଘନ୍ ଘନ କରତାଳି ସହିତ ମୋର ଗ୍ରୀବ ଭିତରକୁ ଆସିଯାଏ ହରେଇନ୍ ଯିଏ ମୁଁ । ଝଲପଡ଼େ ଷ୍ଟେଜ୍ ଉପରେ, ଚିତ୍ରବେ ତ ଲୁଭ ଆହୁରି ବେଶି । ମୋର ମୃତ୍ୟୁ ହିଁ ବିଜୟ, ମୋର ଅଭିନସ୍ୱର । ଗୃହଆଡ଼େ ଖାଲି ଛଳ ଛଳ ଲୁହର ଆଖି । ମେଡ଼ାଲ ଝୁଲି ରହେ ମୋର ପୋଷାକରୁ ।

ପାରିବୁ ମୋ ସାଙ୍ଗରେ ତାଳ ଦେଇ ? ପାରିବୁ ? ଦେବ ଆଗ୍ରୁର୍ଯ୍ୟ ସତକୁ ସତ କହି ଉଠିଲେ ବଡ଼ ପାଟିରେ—ପାରିବୁ ମୋ ସହିତ ମୁକାବିଲା କରି ? ତୋର କଅଁଳ ଦେହ ସହି ପାରିବ ପ୍ରତିଯୋଗିତାର ମାଡ଼ ? ଅଯଥା କାହିଁକି ଲଗିଚୁ ମୋ ସାଙ୍ଗରେ ? ତୋତେ ହରେଇବାରେ ମୋର ଗୌରବ ନାହିଁ । ତୁ ହାରିଗଲେ ଯନ୍ତ୍ରଣା ବେଶି ହେବ ମୋର । ମନେପକା, କେତେ ଭଲ ପାଉଥିଲି ତୁମ୍ଭମାନଙ୍କୁ ! ତୁମ୍ଭମାନଙ୍କର ଭଲ ପାଇଁ ମାଡ଼ ଦେଇଚି ସତ; କିନ୍ତୁ ଶ୍ରଦ୍ଧା କରିଚି ଅନେକ । ଏ ଜୀବନକାଳ ଭିତରେ ଶୁଝି ପାରିବୁ ନାହିଁ ସେଇ ଶ୍ରଦ୍ଧା । ଜମା ପାରିବୁ ନାହିଁ ।

ଦେବ ଆଗ୍ରୁର୍ଯ୍ୟ ସେଇଭଳି ସଜଡ଼ା ସରିଥିବା ଦୋକାନ ଭିତରେ ଠିଆ ହୋଇଥିଲେ । ସେ ଆଦୌ ବୁଝି ପାରିଲେ ନାହିଁ କାହିଁକି ଦୁଇ-ଟୋପା ଲୁହ ତାଙ୍କ ଆଖିରୁ ଝରି ଆସିଲା ।

ରାତି ଅନେକ ଆଗେଇ ଗଲାଣି ବୋଧହୁଏ । କୀର୍ତ୍ତନ ମଉସା ଅଧ୍ୟାୟେ ଭାଗବତ ପଢ଼ି ସାରିଥିବେ । ଏତେ ରାତିରେ କିଏ କେଜାଣି, ପାଖ କୂଅରୁ ପାଣି କାଢ଼ୁଚି । ଠାକୁରଙ୍କ ଭଣ୍ଡାର ଘର ବାରନ୍ଦାରେ କେତେ ଜଣ ବଛଣା ପ୍ରସ୍ତୁତ କରୁଚନ୍ତି । କେଉଁ ଗଛରୁ ହଦ ଜୁଡ଼୍ ବୁଡ଼ୁ ଭିନ-ଗୃହିଟା ଚଢ଼େଇଙ୍କର ବଦସା ହେବା ଭଳି ଭାଷା ଶୁଭୁଯାଉଚି ।

ସମସ୍ତ ଉଦ୍‌ବେଗ୍ନତା ଓ ଆଶଙ୍କା ସତ୍ତ୍ୱେ ଦେବ ଆଗ୍ରୁର୍ଯ୍ୟ ସନ୍ତୁଷ୍ଟ ଥିଲେ । ଗ୍ରେନ୍‌ଗୋଲାରୁ ତାଙ୍କ ଭଳି ଆହୁରି ଅନେକ ଲୋକ ଲୋନ୍ ଆଣିଚନ୍ତି । ଏ ଟଙ୍କା କୁଆଡ଼େ ସେଣ୍ଟ୍ରାଲ୍ କୋଅପରେଟିଭ୍ ବ୍ୟାଙ୍କରୁ ଆସେ । ଗୋଲା ଏହି ଟଙ୍କା ଲୋନ୍ ଦିଏ ଓ ଆଦାୟ କରେ । ପଞ୍ଚାୟତ

ଅଫିସ୍ ଘର ପାଖରେ ଥିବା ଗୋଲା ଏଥିପାଇଁ କୋଳାହଳ-ମୁଖରିତ ରହେ ସବୁବେଳେ । ଠାକୁରଙ୍କର ବିଶାଳ ଅମାରର ମଞ୍ଚ ଉପରେ ଯବନିକା ପତନ ହେବା ପରଠାରୁ ଲୋକମାନେ ବହୁ ସଂଖ୍ୟାରେ ଆସୁଚନ୍ତି ଗୋଲାକୁ ଧାନ ଓ ଟଙ୍କା ପାଇଁ । ଧାନ ଓଜନ କରିବା ସକାଶେ ମସ୍ତବଡ଼ ତରାଜୁ ବରାବର ଝୁଲି ରହେ ପାଖ ଆମ୍ବ ଗଛର ମୋଟା ଡାଳରୁ ।

ସରକାରୀ ବ୍ୟାପାର ଏଇଟା । କାଗଜପତ୍ରରେ ସବୁ କାମ ଚାଲେ । ଲୋନ୍ ନ ଶୁଝି ପାରିଲେ କ୍ଷମା ମିଳେନାଇଁ କାହାରିକୁ । ଠାକୁରଙ୍କ ଅମାରରୁ ଧାନ କରଜ କରି ନ ଶୁଝି ପାରିବା ଗୋଟିଏ କଥା; ଗୋଲାରେ ଦେବାଳିଆ ହେବା ଆଉ ଗୋଟିଏ କଥା । ସାଙ୍ଘାତିକ ବ୍ୟାପାର । ସରକାର ଲୋକମାନଙ୍କୁ ମହାଜନୀ କାରବାରରୁ ମୁକ୍ତ କରିବା ପାଇଁ ଏଇ ସୁବିଧା କରିଛନ୍ତି । ଚଡ଼ା ଦରରେ ସୁଧ ଦେବାକୁ ପଡ଼ିବ ନାଇଁ; କିନ୍ତୁ ଗୋଲା ଋଣ ନ ଶୁଝି ପାରିଲେ ଘର କୋରକି ହେବ । ଯେଉଁ ଜମି ବନ୍ଧକ ଦେଇ ଲୋନ୍ କରା ହୋଇଥିବ, ସେ ଜମି ନିଲାମ ହେବ ।

ଦେବ ଆଗୃର୍ଯ୍ୟ ନିଜକୁ ସାହସ ଦେଉଥିଲେ ଯେ, ଏଥିପାଇଁ ବିଚଳିତ ହେବାର କୌଣସି କାରଣ ନାଇଁ । କାଗଜପତ୍ର ପ୍ରସ୍ତୁତ କଲାବେଳେ କୁମର ସାହସ ଦେଇଥିଲା—"ମୁଁ ଅଛି ସେକଥା ବୁଝିବା ପାଇଁ । ତୁମେ ସରକାରଙ୍କ ଟଙ୍କା ନେଉଚ; କେଉଁ ବ୍ୟକ୍ତି ବିଶେଷର ନୁହଁ । ସରକାର ଚାହାନ୍ତି, ତୁମେ ଟଙ୍କା ନେଇ ପରିବାରର ଉନ୍ନତି କର ।"

ଦସ୍ତଖତ କରି ଟଙ୍କା ଧରିବା ପରେ କୁମର ଗୁପ୍ତକଥା ଶୁଣେଇବା ଭଳି କହିଥିଲା—"ଯେଉଁ ଅଫିସର ତୁମ ଟଙ୍କା ସାଙ୍କ୍ସନ୍ କରିଚନ୍ତି, ତାଙ୍କୁ ଖୁସି ନ କଲେ ଚଳିବ ? ଭଲ ଅଛି, ମନ୍ଦ ଅଛି । ଭବିଷ୍ୟତରେ ସେ ତୁମ ପାଇଁ କାମ କରିବେ । ତା'ଛଡ଼ା ଏଠି ଏମାନେ ସବୁ ଖଟୁଚନ୍ତି ଦିନରାତି । ନିଜ ଜୀବନକୁ ବିପନ୍ନ କରି ଟଙ୍କା ଆଣୁଚନ୍ତି, ପାଖରେ ରଖୁଚନ୍ତି । ଏମାନଙ୍କ ପାଇଁ କିଛି ଟଙ୍କା ଦିଅ ।"

ଦେବ ଆଚାର୍ଯ୍ୟଙ୍କର ଏସବୁ ବୁଝିବା ପାଇଁ ମଗଜ ନ ଥିଲା । ଜୀବନ ଧାରଣ କରିବା ଗୋଟାଏ ସରଳ ସିଧାସଳଖ ବାଟ ବୋଲି ଭାବି ଚାଲିଥିଲେ ସେ । ତେବେ ତାଙ୍କ ଦୋକାନ ବାରନ୍ଦାରେ ଏଭଳି ଅସ୍ପଷ୍ଟ ଆଲୋଚନା କେବେ କିପରି ହୁଏ । ଲୋନ୍ ଟଙ୍କାରୁ କିଛି ଦେବାକୁ ପଡ଼େ ସେଇଠି—ଅପାରଗ ପ୍ରତିବାଦ ଓ କ୍ରୋଧର ସହିତ ଏକଥା କେତେକ ଲୋକ କହିଥିବାର ସେ ଶୁଣିଥିଲେ; କିନ୍ତୁ ବ୍ୟାପାରଟା ପ୍ରକୃତରେ କ'ଣ, ତାହା ବୁଝିବା ପାଇଁ ଆଗ୍ରହୀ ହୋଇ ନ ଥିଲେ ସେ । ଆଡୁର ଚାପା-ସ୍ୱରରେ ଗୋଟିଏ କଥା ମଧ୍ୟ କୁହାଯାଉଥିଲା—କୁମର ଗୋଟାଏ ଟାଉଟର, ଦଲାଲରେ ପରିଣତ ହୋଇ ଯାଇଛି । ପଞ୍ଚାୟତ ଅଫିସ ବାରନ୍ଦା ମାଡ଼ିବାଠାରୁ ଆଜି ପର୍ଯ୍ୟନ୍ତ, ସରପଞ୍ଚ ହେବାଯାଏଁ ସେଠାରେ ତା'ର କାରବାର ତାକୁ ପରିଣତ କରିଛି ଗୋଟାଏ ଅମଣିଷ, ପଶୁରେ ।

କଥାଟା ସତ ତା'ହେଲେ । ଦେବ ଆଚାର୍ଯ୍ୟ ଅନୁଭବ କରୁଥିଲେ ଜଣେ ଭଦ୍ର ଡକାୟତ ହାବୁଡ଼ରେ ପଡ଼ିଯାଇଛନ୍ତି ସେ । ଦୀର୍ଘଶ୍ୱାସ ତ୍ୟାଗ କରି ସାଇକେଲ ଧରିବା ବେଳେ ପାଖ ଗାଁର ଜଣେ ପରିଚିତ ଲୋକ ପଚାରିଲା—"କ'ଣ, ନନା, ଟଙ୍କା ପାଇଁ ଆସିଥିଲ ?"

—"ହଁ ।" ଅନିଚ୍ଛା ସତ୍ତ୍ୱେ ସେ ଜବାବ ଦେଲେ ।

—"କିଛି ଟଙ୍କା ତ ଏମାନଙ୍କୁ ଦେବାକୁ ପଡ଼ିଥିବ ?" ସେ ପଚାରିଲା ଟିକିଏ ବଡ଼ ପାଟିରେ, ବେଖାତିର କରିବା ଭଙ୍ଗୀ ନେଇ । ଦେବ ଆଚାର୍ଯ୍ୟ ଅପ୍ରସ୍ତୁତ ଓ ଅପମାନିତ ବୋଧ କଲେ । ଚାରିଆଡ଼କୁ ଚାହିଁ କିଛି କହିବାକୁ ଗଲାବେଳେ ଲୋକଟି ପୁଣି କହିଲା—"ମୁଁ ବି ଦେଲି । ସମସ୍ତେ ଦେଉଛନ୍ତି । କ'ଣନା, ଅଫିସର ଟଙ୍କା ସାଙ୍କ୍ସନ୍ କଲେ । ତାଙ୍କ ପେଟ ପାଟଣା ପାଇଁ ଆମେ ଲୋନ୍ ଟଙ୍କାରୁ କିଛି ଦେବା ।"

କିଛି ସମୟ ନୀରବତା ଭିତରେ କଟିଗଲା । ଲୋକଟା ଯୁକ୍ତି ମଧ୍ୟରେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲା ଭଳି ଭାବରେ । କହିଲା—"ମୁଁ ପଚାରୁଛି, ଅଫିସରଙ୍କୁ ଆମେ ଟଙ୍କା ଦେବୁ କାହିଁକି ? ସେ ଶଳାର ପିଲା-ମାଇପଙ୍କୁ ଆମେ ପୋଷିବୁ କେଉଁ କାରଣରୁ ? ସିଏ ତ ପୁଣି ସରକାର

ପାଖରୁ ଦରମା ନେଉଥିବ ! ଏଇ କାମ କରିବା ପାଇଁ ତ ସେ ଚାକିରି କରିଚ ! ପୁଣି ଗୋଟେ ଉପୁରି ଟଙ୍କା କ'ଣ ପାଇଁ ?''

ଦେବ ଆଚାର୍ଯ୍ୟଙ୍କର ସରଳ, ନିଷ୍କପଟ ମନ ଭୀତସନ୍ତ୍ରସ୍ତ ହୋଇଗଲା ଲୋକଟାର ବିଦ୍ରୋହୀ ଭାଷାରେ । ତାକୁ ଶାନ୍ତ କରିବା ପାଇଁ ସେ କହିଲେ—''ଆସ୍ତେ । ଏତେ ବଡ଼ ପାଟି କରନାଇଁ । କିଏ ଶୁଣିବ ।''

''ଶୁଣୁ !'' ସେ ପ୍ରାୟ ଚିତ୍କାର କରିପକାଇଲା । ''ମୁଁ କାହାକୁ ଡରିଚି ନା କ'ଣ ? ଧାର୍ ଶୁଝିବାରେ ମୁଁ ଡିଫଲଟର୍ ହୋଇ ଯାଇଚି । ଭଉଣୀର ବାହାଘର, ତା'ପରେ ଘର ପୋଡ଼ି । ମୋର ଟିକିଏ ଗଳତି ରହିଯାଇଥିବାରୁ ମୋତେ କିଛି ଟଙ୍କା ଦେବାକୁ ପଡ଼ିଲା ଲୋନ୍‌ରୁ । ତେବେ ଏ ଶଳାମାନଙ୍କୁ ହାନେ ଦେବ ସାବାଡ଼ି କରି । ପଦାରେ ପକେଇଦେବ ସବୁ କଥା ।''

ପ୍ରଚଣ୍ଡ କ୍ରୋଧରେ ସେ ଜଡ଼ସଡ଼ ହୋଇଗଲା । ଦେବ ଆଚାର୍ଯ୍ୟ ତା ପାଖରୁ ଖସିଯିବା ପାଇଁ ବିକଳ ହୋଇ ପଡ଼ିଥିଲେ; କିନ୍ତୁ ସେ ପ୍ରତିଜ୍ଞାବଦ୍ଧ ଥିଲା ନିଜର ସମସ୍ତ ଅଭିଯୋଗ ଅନ୍ତତଃ ତାଙ୍କ ପାଖରେ ପ୍ରକାଶ କରିବାକୁ—''ମୁଁ ଜାଣେ, ଏ ଅଫିସର ଫିସର କଥା ତାହା ମିଛ । ଆମଠୁ ଆଦାୟ କରାଯାଉଥିବା ଟଙ୍କା ବଣ୍ଟାହୁଏ ଏଇମାନଙ୍କ ମଧ୍ୟରେ । ସବୁଠୁ ହାରାମଜାଦା ହେଉଚି ତୁମ ଗାଁର କୁଳମଣି । ମିଠାକଥା କହିବାରେ କେହି ସେ ଶଳାକୁ ଟପି ପାରିବେ ନାଇଁ । ମୁଁ ପଚାରୁଚି କେଉଁ ଅକଲରେ ତୁ ତୋର ଗାଁ ଲୋକଙ୍କଠୁ ବି ଟଙ୍କା ଆଦାୟ କରୁଚୁ ? ଟିକିଏ ବି ବିବେକ ନାଇଁ । ଆଉ ତିନି-ଚାରିଜଣ ନିମାଇଁ ବାବୁ ଭଳି ଲୋକ ବାହାରି ପଡ଼ିଲେ ଏ ଛତ୍ରର ଗଡ଼ି ଭାଙ୍ଗିଯାଆନ୍ତା !'' —''ନିମାଇଁ ବାବୁ ? କେଉଁ ନିମାଇଁ ବାବୁ ?'' ଦେବ ଆଚାର୍ଯ୍ୟ ଉତ୍କଣ୍ଠାର ସହିତ ପଚାରିଲେ ।

—''ତୁମ ଗାଁ ନିମାଇଁ ବାବୁ !'' ଲୋକଟା କହିଲା । ସେ ଗତକାଲି ଲୋନ୍ ଟଙ୍କା ନେଲେ । ଅଫିସର ନାଁରେ ତାଙ୍କଠୁ କିଛି ଝଡ଼େଇବା ବେଳେ ସେ କହିଲେ—କେଉଁ ଅଫିସରକୁ ଟଙ୍କା ଦେବାକୁ ହେବ, ତା ନାଁ କୁହ । ତା ଘରେ ଯାଇ ମୁଁ ଦେଇଆସିବି । ଏତିକି

ଶୁଣି ଏ ଶିକେ ଉଠିଗଲେ । ଲୋନ୍ ଟଙ୍କା ପକେଟରେ ପୂରେଇ ବାପ୍ କା ଖାଣ୍ଟି ବେଟା ଭଳି ସେ ଏଠୁ ଗଲେ । ଘଟଣାଟା ଘଟିଲା ବେଳେ ମୁଁ ମୁଁ ନିଜେ ଥିଲି ।”

ସାଇକେଲ ଗଡ଼ୁଥିଲା ରାସ୍ତା ଉପରେ, ନିତାନ୍ତ କୁଣ୍ଠିତ ହୋଇ । ଗପିସାରିବା ପରେ ଲୋକଟା ପଳେଇଗଲା ତା ଗାଁକୁ । କିନ୍ତୁ ଅନ୍ୟମନସ୍କ ଓ ଆତୁର କରି ଦେଇଗଲା ଦେବ ଆଚାର୍ଯ୍ୟଙ୍କୁ । ସେ ଯେପରି ଜଣାଶୁଣା ନ ଥିବା ଗୋଟାଏ ଜଟିଳ ଜାଲ ଭିତରକୁ ପଶିଯାଉଛନ୍ତି । କେହି ନାହାନ୍ତି କୁଆଡ଼େ ଏବଂ ସେ ତା ଭିତରୁ ବାହାରି ପାରିବେ କି ନା, ତାଙ୍କୁ ଜଣା ନାହିଁ । ସରକାରର ବିନା ହସ୍ତକ୍ଷେପରେ ଜୀବନ ବେଶ୍ ଭଲରେ କଟିଯାଉଥିଲା । ଗାଁର ସୀମିତ ପରିବେଶ ଭିତରେ ରହି ଜୀବନର ଅଭାବ-ଅସୁବିଧା ପୂରଣ ହେଉଥିଲା ତା ଭିତରେ । ତା ଭିତରେ ଯାହା ମିଳୁଥିଲା, ତାହା ଥିଲା ଜୀବନର ପ୍ରାପ୍ୟ । ଯାହା ମିଳୁ ନ ଥିଲା, ତାହାର ଆବଶ୍ୟକତା ନ ଥିଲା ଜୀବନରେ । ନିତାନ୍ତ ସୀମିତ ଥିଲା ଜୀବନ ଓ ତାହାର କାର୍ଯ୍ୟକ୍ରମ; ଅଥଚ ଅଭାବବୋଧ ନ ଥିଲା । ଏତେ ଅନିଶ୍ଚିତତା, ବ୍ୟାକୁଳତା ନ ଥିଲା । ଦେବ ଆଚାର୍ଯ୍ୟ ଭାବୁଥିଲେ, ସେ ବୋଧହୁଏ ନିଜକୁ ଖାପ୍ ଖୁଆଇ ଚଳେଇ ନେଇ ପାରିବେ ନାହିଁ । ଗାଁ ଏଥର ସମ୍ପର୍କିତ ହୋଇ ପଡ଼ୁଛି ଗ୍ରେନ୍‌ଗୋଲା ଠାରୁ ଆରମ୍ଭ କରି କେଉଁ ଅଜଣା ଅଶୁଣା ଅଫିସ, ବ୍ୟାଙ୍କ୍ ସହିତ । ସେଗୁଡ଼ାକ ସବୁ କ'ଣ ? ନିଜକୁ ବଞ୍ଚେଇ ରଖିବା ବାବଦରେ ସେଗୁଡ଼ାକର ଭୂମିକା କେଉଁଠି ଓ କିଭଳି ?

ଦେବ ଆଚାର୍ଯ୍ୟ ବିଚଳିତ ହୋଇ ପଡ଼ୁଥିଲେ । ଗୋଟାଏ କଦାକାର, ଘୃଣ୍ୟ, ଅଥଚ ନିଷ୍କରୁଣ ଓ ଶକ୍ତିଶାଳୀ ପରିପାଟୀ ଭିତରେ ଜୀବନକୁ ସତେ ଯେପରି ଗତି କରିବାକୁ ପଡ଼ିବ । ମାତ୍ର ନିମାଇଁ କଥା ଭାବିବା ମାତ୍ରେ ସେ ନିଜକୁ ତୁଚ୍ଛ ଅକିଞ୍ଚନ ଓ ଅପଦାର୍ଥ ବୋଲି ମନେ କରିବାକୁ ବାଧ୍ୟ ହେଲେ । କାଲିକା ଟୋକାଟା ତାଙ୍କ ଆଗରେ ବିଶାଳ ଓ ମର୍ଯ୍ୟାଦାବନ୍ତ ହୋଇ ପଡ଼ୁଥିଲା । ତା ସହିତ ପ୍ରତିଯୋଗିତା କରିବାକୁ ହେବ ଏଥର, ଗାଁରେ । ନିମାଇଁ ସହିତ !

ସଉଦା ଆଣୁଥିବା ଦୋକାନର ବାକି ଟଙ୍କା ଶୁଝିବାକୁ ପଡ଼ିଲା । ସମସ୍ତ ଦୁର୍ଭାବନା ଓ ନୈରାଶ୍ୟଭାବ ସତ୍ତ୍ୱେ, ତାଙ୍କୁ ବହୁତ ହାଲୁକା ଲାଗିଲା । ଲୋନ୍ ଟଙ୍କା ଶୁଝା ହେବ । ଦୋକାନଟା ପୁଣି ଚାଲୁ । ସାବଧାନତା ଦରକାର ଏଥର । ସବୁ କାମ ଭାବିଚିନ୍ତି କରିବାକୁ ପଡ଼ିବ । ଖର୍ଚ୍ଚ ସଙ୍କୁଚିତ କରିବାକୁ ହେବ । ଜୀବନ ଆଗରେ ପଡ଼ିଥିବା ବାଟ ଏତେ ଅଣଓସାରିଆ ଓ ବିପଦସଙ୍କୁଳ ହୋଇ ପଡ଼ୁଛି ଯେ, କ୍ଷଣିକର ଅନ୍ୟମନସ୍କତା ଓ ଆଳସ୍ୟ ବଡ଼ ଧରଣର ଦୁର୍ଘଟଣା ଘଟେଇ ଦେଇ-ପାରେ । ହୁସିଆରି ମନୋଭାବ ଦରକାର ।

ଦୋକାନୀ ଦେବ ଆଚାର୍ଯ୍ୟଙ୍କୁ ଦେଖିବାମାତ୍ରେ ପଚାରିଥିଲା —"କ'ଣ ନନା, ତୁମର ଖବର ଅନ୍ତର ନାହିଁ । ଆମେ ଆଠ-ଦଶଥର ଲୋକ ପଠେଇଲୁ ବାକି ଟଙ୍କା ପଇଠ କରିବା ପାଇଁ । କ'ଣ କରାଯାଏ ? ତୁମଠୁ ଟଙ୍କା ଆଣିଲେ ତ ଆମ ବେପାର ଚାଲିବ ?"

ଦେବ ଆଚାର୍ଯ୍ୟ ତା ଆଗରେ ଠିଆ ହେଲେ ଜଣେ ହିରୋ ଭଳି,—ଜଣଙ୍କୁ ଦୟା ଦେଖେଇବା ଭଳି । କହିଲେ ଆତ୍ମବିଶ୍ୱାସର ସହିତ—"ଆଣ, ଖାତା ବାହାର କର । ଟଙ୍କା ଦେବି, ସଉଦା ନେବି ।"

ଦୋକାନ ଗୋଟାଏ ଖୋଲାଯିବ ବୋଲି ସେଭଳି ଆୟୋଜନ କରାଯାଇପାରେ—ଏ କଥା କେବେ ବି ଚିନ୍ତା କରି ନ ଥିଲେ ଆମ ଗାଁ ଲୋକେ । ତିନି ବଖରା ଘର ସାମନାରେ, ରାସ୍ତାକଡ଼କୁ ଆମ୍ବଡାଳ ବନ୍ଧା ଯାଇଥିବା ଓସାରିଆ ଗେଟ୍ । ଦୁଇ ଖୁଣ୍ଟ ପାଖରେ ପୋତା ଯାଇଥିଲି କଦଳୀଗଛ । ପାଖରେ ପୂର୍ଣ୍ଣକୁମ୍ଭ ଓ ପଇଡ଼ । ଦୁଇ ପାରାପେଟ୍ ପାଖରୁ ଗ୍ରେଟ ଖୁଣ୍ଟ ପୋତା ଯାଇଥିଲି ରାସ୍ତା ପର୍ଯ୍ୟନ୍ତ । ଏଇ ଖୁଣ୍ଟଗୁଡ଼ିକ ସଂଯୋଜିତ ହୋଇଥିଲି ଦଉଡ଼ି ଦ୍ୱାରା । ତିନକୋଣିଆ ରଙ୍ଗିନ କାଗଜର ପତାକା ଲଗାଯାଇଥିଲି ଏଇ ଦଉଡ଼ିରେ । ଗେଟ୍‌ର ଦୁଇ ଖୁଣ୍ଟରୁ ସେଇଭଳି ପତାକା ଲଗା ଦଉଡ଼ି ଲମ୍ବିଯାଇଥିଲା, ପାରାପେଟ୍‌ରୁ ରାସ୍ତା ପର୍ଯ୍ୟନ୍ତ ଆସିଥିବା ଖୁଣ୍ଟଯାଏ ।

ଘରର ମାଟି ଟାଇଲ୍ ଛପର ଉପରେ ରହିଥିଲା ଗୋଟାଏ ସାଇନ୍ ବୋର୍ଡ଼ । ବାଁ ପାଖ କୋଣରେ ଲେଖା ଯାଇଥିଲି—ନମସ୍ତେ । ଡାହାଣ ପାଖ କୋଣରେ—ଆସନ୍ତୁ । ତଳେ, ବଡ଼ ବଡ଼ ଅକ୍ଷର ଘୋଷଣା କଲେ—ଲକ୍ଷ୍ମୀ ମାର୍କେଟ୍ ।

ନମାଇଁର ଜଣେ କ୍ଲାସ୍ ମେଟ୍, ତା'ଭଳି ମାଟ୍ରିକ୍ ପରୀକ୍ଷା ଦ୍ୱାରା ପରାଜିତ ହେବା ପରେ, ତାରିଣୀ ଠାକୁରାଣୀଙ୍କ ପାଖରେ ଦୋକାନ ଖୋଲିଥିଲି । ବାହାଘର କମ୍ବା ପଙ୍‌ପଙ୍କାଣିରେ ମାଇକ୍ ବଜେଇବା ଭଳି ନୂଆ ସଂସ୍କୃତି ଭଡ଼ାରେ ମିଳୁଥିଲି, ତା ଦୋକାନରେ । ତା ପାଖରୁ ଆସିଥିବା ମାଇକ୍ ଆମ ଗାଁ ପବନରେ ଫିଲ୍ମଗୀତ ବିଞ୍ଚିବା ଆରମ୍ଭ କଲି ସକାଳ ନ'ଟା ବେଳୁ । ନିମନ୍ତ୍ରିତ ହୋଇଥିବା ଗାଁର ସଂକୀର୍ତ୍ତନ ଦଳ ପ୍ରଶସ୍ତ ବାରଦାର ଗୋଟିଏ ପାଖରେ ଝାଞ୍ଜ, ମୃଦଙ୍ଗ ବଜାଇ ଦସ୍ତୁମାସ୍ତୁ ଓ ଅପାଂକ୍ତେୟ ସ୍ୱରରେ ବୋଲୁଥାନ୍ତି—ଭଜ ନିତାଇ ଗୌର ରାଧେଶ୍ୟାମ ଇତ୍ୟାଦି ।

ଦୁଇ ଦିନ ପୂର୍ବେ, ଗାଁର ପ୍ରତ୍ୟେକ ଘରକୁ ଯାଇ ନମ୍ରତାର ସହିତ ନିମାଇଁ ନିମନ୍ତ୍ରଣ କରିଥିଲା ଦିନ ଦୁଇଟା ବେଳେ ପ୍ରସାଦ ସେବନ ପାଇଁ ଲକ୍ଷ୍ମୀ ମାର୍କେଟକୁ ଯିବା ସକାଶେ । ସ୍କୁଲର ଶିକ୍ଷକ ସମେତ ପାଖଆଖ ଗାଁର ଜଣାଶୁଣା ଲୋକେ ମଧ୍ୟ ନିମନ୍ତ୍ରିତ ହୋଇଥାଆନ୍ତି ଏଥିପାଇଁ । ଦୋକାନ ପାଖରେ ଥିବା ଆମ୍ବ ଓ ବରଗଛ ମୂଳେ ଦରି ପଡ଼ିଥାଏ ଅତିଥିମାନଙ୍କର ବିଶ୍ରାମ ସକାଶେ । ଘର ପ୍ରତିଷ୍ଠା ହେବ ଏବଂ ଦୋକାନ ଖୋଲିବ । ବ୍ରାହ୍ମଣ ଓ ଜ୍ୟୋତିଷ ସଙ୍କର୍ଷଣ ମାଷ୍ଟ୍ରେ ଦିନ ଦଶଟାବେଳୁ ପୂଜାପାଠ ଆରମ୍ଭ କରିଦେଲେ । ଅରୁଆନ୍ନ ଓ ଡାଲମା ପାଇଁ ସମସ୍ତ ଉପକରଣ ପଠାଇ ଦିଆଯାଇଥିଲା ମନ୍ଦିରକୁ । ସେଠାରେ ଭୋଗ ହୋଇ ସାରିବା ପରେ ଦୋକାନ ପାଖକୁ ଅଣାଯିବ । ଅତିଥି-ଅଭ୍ୟାଗତ ପ୍ରସାଦ ସେବନ କରିବେ । ଘଟଣାଟା ଥିଲା ଅଭୂତପୂର୍ବ ଓ ଜୋର୍‌ଦାର । ଦଶଟାବେଳୁ ସ୍କୁଲ ଛୁଟି ହୋଇଗଲା । ସରଗରମ ହୋଇଗଲା ସେ ଅଞ୍ଚଳ । କୌଣସି ବାହାଘରରେ ମଧ୍ୟ ଏଭଳି ଆଧୁନିକ ବ୍ୟବସ୍ଥା ହୋଇ ନ ଥିଲା ଆମ ଗାଁରେ ।

ସଂକଳ୍ପରେ ବସିଥାଏ ନିମାଇଁ, ନୂଆ ଧୋତି ପିନ୍ଧି ଓ କାନ୍ଧରେ ଧୋତି-ଗୁଦର ପକାଇ । ସାମନା ହୋମରେ ଘିଅ ପୋଡ଼ା ହେଉଥାଏ ମନ୍ତ୍ରଧ୍ୱନି ସହିତ । ନିମାଇଁର ନିର୍ଦ୍ଦେଶ କ୍ରମେ ମାଇକ୍‌ରେ ଫିଲ୍ମ ଗୀତ ବଜେଇବା ବନ୍ଦ ହେଲା । ମାଇକ୍ରୋଫୋନ୍ ଥୋଇ ଦିଆଗଲା ବ୍ରାହ୍ମଣ ଆଗରେ । ମାଇକ୍ ଯୋଗେ ପୂଜା-ପାଠ ! ଗାଁ ଲୋକେ ଚମତ୍କୃତ ହୋଇଗଲେ । ତା ପରେ ପରେ ଚମତ୍କୃତ ହେଲେ ସଂକୀର୍ତ୍ତନ ଦଳ, ଯେତେବେଳେ ତାଙ୍କ ମଝିରେ ମାଇକ୍ରୋଫୋନ୍ ରଖାଗଲା । କ୍ଳାନ୍ତ ଶ୍ରାନ୍ତ ହୋଇ ଯାଇଥିବା ଓ ଥକି ଯାଇଥିବା ସଂକୀର୍ତ୍ତନିଆମାନେ ହଠାତ୍ ଯେପରି ଜୀବନ୍ୟାସ ପାଇଗଲେ । ନିମାଇଁ ନୂଆ ଅନୁଭୂତି ବାଣ୍ଟୁଥିଲା ଉଦାରତାର ସହିତ ।

ଦିନ ଦୁଇଟା ବେଳେ ସବୁକାମ ସରିଯାଇଥିଲା । କେବଳ ପ୍ରସାଦ ସେବନ କରିବା କଥା । ଶହ ଶହ ଲୋକ ପହଞ୍ଚି ଯାଇଥିଲେ ଏଇଥିପାଇଁ । ଠିକ୍ ଏତିକିବେଳେ ମୋଟର ସାଇକେଲଟେ ଅଟକିଗଲା

ଲକ୍ଷ୍ମୀ ମାର୍କେଟ୍ ସାମନାରେ । ଖାକି ପୋଷାକ ପରିହିତ ଥାନା ସବ୍-ଇନସ୍ପେକ୍ଟର ଗାଡ଼ିରେ ଷ୍ଟାର୍ଟ ମାରିଲେ । ସେତେବେଳଠୁ କୃତକୃତ୍ୟ ହୋଇ ନମାଇଁ ପହଞ୍ଚିଯାଇଥିଲା । ଉପସ୍ଥିତ ଥିବା ଜନତା ତରକିଗଲା ଓ ବିଶେଷତ୍ୱହୀନ ହୋଇପଡ଼ିଲା—"ଆପଣ ଆସିବେ ବୋଲି ମୋର ଜମା ବିଶ୍ୱାସ ନ ଥିଲା" ନମାଇଁ କହିଲା କୃତାର୍ଥ ହୋଇ । ଥାନାବାବୁ ଥରେ-ଦୁଇଥର ପିଲାପିଲି ନେଇ ମନ୍ଦିର ଆସିଥିବା ବେଳେ ନମାଇଁ ସେମାନଙ୍କର ଯତ୍ନ ନେଇଥିଲା । ଆଉ କେତେଥର ତାଙ୍କ ପାଖକୁ ଠାକୁରଙ୍କ ପ୍ରସାଦ ମଧ୍ୟ ପଠାଇଥିଲା ।

—"ପ୍ରକୃତରେ ମୁଁ ଯାଉଚି ଆଉ ଗୋଟେ ଗାଁକୁ । କ'ଣ ଗୋଟାଏ ମର୍ଡ଼ର ହୋଇଚି । ଭାବିଲି, ଟିକିଏ ଅଟକିଯିବା ଆପଣଙ୍କ ପାଖରେ ।" ସେତେବେଳେ ସେ ବସି ସାରିଥିଲେ ଗୋଟାଏ ଚୌକିରେ ଓ ସର୍ବତ ଗ୍ଲାସ୍ ହାତରେ ଧରିଥିଲେ ।

—"ଭାରି ଭଲ କଲେ ।" ତାଙ୍କୁ ଉତ୍ସାହିତ କରୁଥିଲା ନମାଇଁ ।

ଗ୍ଲାସ୍‌ଟା ଜଣକ ହାତକୁ ବଢ଼େଇ ଦେଇ ସେ କହିଲେ—"ଆପଣଙ୍କ ପାଖରେ ଆଉ ଗୋଟେ କାମ ଅଛି ।" ଏତକ କହିସାରି ସେ ଗୁହାଁଲେ ଗୃହଆଡ଼କୁ । ଆବିଷ୍କାର କଲେ ଯେ ମଣିଷମାନଙ୍କର ଗୋଟାଏ ବହଳ ବାଡ଼ ତାଙ୍କ ଗୃହପାଖରେ । କହିଲେ—"ଆସନ୍ତୁ, ଶୁଣିବେ ।"

ନମାଇଁ ବେଶ୍ ଦବିଗଲା ଭଳି ଦେଖାଗଲା । ଲୋକମାନେ ଆତଙ୍କିତ ହୋଇପଡ଼ିଲେ । ମାଇକ୍ ବନ୍ଦ ହୋଇଗଲା । ସଂକୀର୍ତ୍ତନ ଶୁଣାଗଲା ନାହିଁ ଯୁ'ପରେ । ଟିକିଏ ଦୂରକୁ ଆସିବା ପରେ ପୋଲିସ ଅଫିସର ପଚାରିଲେ—"ଆପଣ ଯେଉଁ ଜାଗାରେ ଦୋକାନ କରିଚନ୍ତି, ସେ ଜମି କ'ଣ ଆପଣଙ୍କର ?"

—"ହଁ ।" ଏଭଳି ସାଧାରଣ ପ୍ରଶ୍ନଟେ ପଚରିଯାଇଥିବାରୁ ନମାଇଁ ବିସ୍ମିତ ହୋଇଗଲା । "କାହିଁକି ? କ'ଣ ହେଲା ?"

—"ଆପଣଙ୍କ ନାଁରେ ବେନାମୀ ଚିଠି ପଠାଯାଇଛି । କଲେକ୍ଟରଙ୍କଠୁ ଆରମ୍ଭ କରି ତହସିଲଦାର, ବି.ଡି.ଓ. ଯାଏଁ । ଆପଣ କୁଆଡ଼େ ଜଣେ ଗରିବ ହରିଜନର ଜମି ଜବରି ଦଖଲ କରି ଏ ଦୋକାନ କରିଚନ୍ତି । ସେ ଯଦି ଆପତ୍ତି-ଅଭିଯୋଗ କରେ, ତେବେ ତା ଘର ପୋଡ଼ିଦେବେ ବୋଲି ଧମକ ଦେଇଚନ୍ତି । ଏ ଘଟଣାର ସୁବିଚାର କରି ନ ଗଲେ ସେ ବିଚାରି ମନ୍ତ୍ରୀଙ୍କ ପାଖରେ ଗୁହାରି କରିବ ବୋଲି ଲେଖିଚି ।" ଅଫିସର ଜଣକ ସିଗାରେଟ ଲଗାଇଲେ ଓ ରହସ୍ୟମୟ ହସ ହସିଲେ ।

ଗୋଟାଏ ଗରମ ଝାଳ ବାହାରିଗଲା ନମାଇଁ ଦେହରୁ । ତେବେ, ଅଭିଯୋଗ ସମ୍ପୂର୍ଣ୍ଣ ମିଛ ହୋଇଥିବାରୁ, ସେ ଆତ୍ମବିଶ୍ୱାସ ଓ ସାହସ ଫେରିପାଇଲା । କହିଲା—"ଆପଣ ଏ କଥା··· ।"

ତାକୁ ଅଧିକ କୁହାଇ ଦେଲେ ନାହିଁ ସେ । ତା ପିଠି ଆଉଁଷାଇ କହିଲେ—"ଆପଣଙ୍କୁ ଅପଦସ୍ଥ ଓ ହଇରାଣ କରିବା ପାଇଁ ଏଇଟା ଗୋଟେ ଶସ୍ତାବାଟ । ବେନାମୀ ଚିଠି ମଧ୍ୟ କି କରାମତି ଦେଖାଇପାରେ ! ମୁଁ ଜାଣିପାରୁନି, ଏଭଳି ଚିଠି ଉପରେ ଗୁରୁତ୍ୱ ଦିଆଯାଉଚି କାହିଁକି । ଆଜିକାଲି ଗରିବ ଆଉ ହରିଜନମାନଙ୍କୁ ଆଶ୍ରାକରି ଆମ ରାଜନୀତି ଚାଲିଚି । ଏଥିରେ ଆପଣ ଡରିବେ କାହିଁକି ? କଥାଟା କ'ଣ ବୁଝିବା ପାଇଁ ମୋତେ କୁହାଯାଇଥିଲା । ବୁଝିଲି । ତହସିଲ ଅଫିସରୁ ହୁଏତ ଅମିନ ଫମିନ ଆସିପାରନ୍ତି ।"

ମୋଟରସାଇକେଲ ପାଖକୁ ଆସିବା ବେଳେ ଅଫିସର କହିଲେ —"ଦେଖନ୍ତୁ ନାହାନ୍ତି, ଆପଣଙ୍କ ମାଇନର ସ୍କୁଲ ହେଡ଼ମାଷ୍ଟରଙ୍କ ସମ୍ପର୍କରେ ବି ସେଇମିତି ବେନାମୀ ଚିଠି ! କ'ଣ ନା, ସେ ରାଜନୀତି କରୁଚନ୍ତି ବିରୋଧୀଦଳ ସହିତ, ଅନ୍ୟ ଶିକ୍ଷକମାନଙ୍କର ଦରମା ଆଉ ଷ୍ଟାଇପେଣ୍ଡ ଟଙ୍କା ମାରି ନେଉଚନ୍ତି ! ତାଙ୍କୁ ମୁଁ ଜାଣେ ଭଲ କରି । ନିତାନ୍ତ ସଚ୍ଚୋଟ, ଭଦ୍ର ଆଉ ସମ୍ଭ୍ରାନ୍ତବଂଶଜ ! ବଡ଼ କଥା ହେଲା, କିଏ ଏମିତି କରୁଚି ଆପଣ ଜାଣିନାହାନ୍ତି ନା ମୁଁ ଜାଣେ ନାହିଁ ?" ମୋଟରସାଇକେଲରେ କିକ୍ ମାରିବା ବେଳେ ଦୁଃଖର ସହିତ କହିଲେ

—"ପ୍ରସାଦ ସେବନ ପାଇଁ ରହିପାରୁ ନ ଥିବାରୁ କିଛି ଭାବବେ ନାହିଁ । ଦେଖୁଚନ୍ତି ତ, ଯାଉଚ ଆଉ ଗୋଟେ କାମରେ । ଏ ଶଳା ଗୁଳରେ କ'ଣ ଶାନ୍ତି କି ବିଶ୍ରାମ ଟିକିଏ ଅଛି ବୋଲି ଆପଣ ଭାବୁଚନ୍ତି ? ଆରେ, ମାଇକ୍ ବନ୍ଦ କଲେ କାହିଁକି ?" ମୋଟରସାଇକେଲ ଷ୍ଟାର୍ଟ ହେଲା ଓ ତା'ର ଶବ୍ଦ ପୋତି ହୋଇଗଲା ଏଠାକାର କୋଳାହଳ ଯୋଗୁଁ ।

ସହଜେ କମାଇଁ ଟିଙ୍ଗା ପ୍ରକୃତିର ଲୋକ । ପୁଣି ସେଭଳି ଗୋଟେ ଦିନରେ ତା ବିରୁଦ୍ଧରେ ଷଡ଼ଯନ୍ତ୍ର ହେଉଥିବା କଥା ଜାଣି ସେ ପ୍ରାୟ ଅସମ୍ଭାଳ ହୋଇପଡ଼ିଲା, ହରାଇ ବସିଲା ହିତାହିତ ଜ୍ଞାନ । ତା'ର ସର୍ବାଙ୍ଗ ନାଲି ହୋଇଗଲା ଅସମ୍ଭବ କ୍ରୋଧରେ ଏବଂ ସେ ଉଦ୍ଭଟ ଭାବରେ କମ୍ପିବାକୁ ଲାଗିଲା ।

ଅନ୍ୟ କୌଣସି ଦିନ ଏ ଘଟଣା ଘଟିଥିଲେ କମାଇଁ ଏତେ ଲୋକଙ୍କର ସମ୍ମିଳିତ ସହାନୁଭୂତି ଓ ଶୁଭେଚ୍ଛା ପାଇ ପାରି ନ ଥାନ୍ତା । ସେ ଅଭିଭୂତ ହୋଇ ପଡ଼ିଲା ଲୋକମାନେ ତାକୁ ଯେଭଳି ଭାବରେ ବୁଝାଶୁଝା କରି ଆଶ୍ୱାସନା ଦେବାକୁ ଆରମ୍ଭ କଲେ । ମାଇକ ଓ ସଂକୀର୍ତ୍ତନ କେତେବେଳୁ ବନ୍ଦହୋଇ ଯାଇଥିବାରୁ ବାତାବରଣଟା ପରିବର୍ତ୍ତିତ ହୋଇ ଯାଇଥିଲା ସମ୍ପୂର୍ଣ୍ଣ ଭାବରେ । କମାଇଁ ପ୍ରତି ଅଭୂତପୂର୍ବ ଦରଦ ଓ କୁମର ପ୍ରତି ଚରମ ଘୃଣାଭାବ ଆଚ୍ଛନ୍ନକରି ପକାଇଲା ସେ ପବନକୁ । ଅନେକ ଦିନ ତଳୁ ସେଠାକାର ଲୋକମାନେ ଗୋପନରେ କୁମରର ଚରିତ୍ରକୁ ସମାଲୋଚନା କରି ଆସୁଥିଲେ । ସେଦିନ କିନ୍ତୁ ପ୍ରଥମଥର ପାଇଁ ଏ ସମାଲୋଚନା ଚାଲିଲା ଖୋଲାଖୋଲି ଭାବରେ । କଟୁ ଓ ଅଶ୍ଳୀଳ ଭାଷାରେ । ବହୁ ଦିନଧରି କୁମର ପ୍ରତି ରହିଥିବା ତିକ୍ତତା ଓ ବିଦ୍ୱେଷ ନିର୍ବିଘ୍ନରେ ପ୍ରକାଶିତ ହେଲା ସେଇଠି ।

ପରିସ୍ଥିତିଟା ବେଶୀ ଖରାପ ହୋଇଗଲା ଯେତେବେଳେ ଗୋଟାଏ ଟୋକା ପାଟିକରି ଉଠିଲା—"କୁମର ସରପଞ୍ଚ ମୁର୍ଦ୍ଦାବାଦ ।" ଆଉ ଜଣେ ଚିତ୍କାର କଲା—"ଶଳାକୁ ଧରିଆଣ । ତାକୁ ଲଙ୍ଗଳା କରି ପଗ୍ଡ଼ର, କେତେଦିନ ତା'ର ଟାଉଟରି ଚାଲିବ ।" ପୁଣି ଆଉ ଜଣେ— "ହାରାମଜାଦା, ଦେବାଳିଆ ନମ୍ବର ଏକ ।" ଅନ୍ୟ ଜଣଙ୍କର ସ୍ୱର ସବୁ

ସ୍ୱରକୁ ବୁଡ଼ାଇ ପକାଇଲା—"ତା ମା' ଘଇତା ରାଜମିସ୍ତ୍ରି କରୁଚି ।" ଏଇ ପିଲାମାନେ ଏତେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ ଯେ, ଗାଳି ଦେବାପାଇଁ କୌଣସି ଭାଷା ନ ପାଇ, ସେମାନେ ଏକରକମ ଉଦ୍ଦଣ୍ଡ ଓ ଭୟଙ୍କର ନୃତ୍ୟ ଆରମ୍ଭ କଲେ ରାସ୍ତା ଉପରେ ।

ନିମାଇଁ ସେମାନଙ୍କୁ ନିୟନ୍ତ୍ରଣ କରିବାକୁ ଚେଷ୍ଟାକଲା । ସେମାନଙ୍କୁ ଗାଳିଦେଇ କହିଲା—"ଚୁପ୍ ହୁଅ ସମସ୍ତେ, କ'ଣ ଗୋଳିଚ ଏଠି? ଏଭଳି କଥା କହି ଜଣକୁ ଗାଳି ଦିଆଯାଏ ? ତୁମେ ସବୁ ଜାଣିଲ କମିତି, ଏ କାମ ସେ କରିଚି ବୋଲି ?"

ନିମାଇଁକୁ ସତରେ ରାଗିଯିବାର ଦେଖି, ସେମାନେ ମୂକ ବନିଗଲେ । ଚୁପ୍ ହୋଇଗଲେ ସେମାନେ । ତାଙ୍କ ଭିତରୁ କେହି ଜଣେ ପ୍ରତିବାଦ କରି କିଛି କହିବା ଆଗରୁ ନିମାଇଁ ତାକୁ ଧମକ ଦେଲା— "ଗୋଟେ ଚଟକଣାରେ ତୋ ଗାଲ ଭାଙ୍ଗିଦେବି । ଜାଣିଚୁ ? ମୁଁ କହୁଚି; ଶାନ୍ତ ହୁଅ ସମସ୍ତେ ! ଏମିତି ଫେଚକାମି କର ନାହିଁ ।"

ସେମାନେ ନୀରବ ହୋଇଗଲେ । ଗାଁ ପିଲାମାନଙ୍କ ଉପରେ ନିମାଇଁର କର୍ତ୍ତୃତ୍ୱ ସମ୍ପର୍କରେ ସଚେତନ ଥିଲେ ସମସ୍ତେ । ସେମାନେ ତାକୁ ନେତା ଓ ଆଦର୍ଶ ବୋଲି ଗ୍ରହଣ କରି ସାରିଥିଲେ ।

ଏସବୁ ସତ୍ତ୍ୱେ, ଧୂମ୍‌ଧାମ୍‌ର ସହିତ ପ୍ରସାଦସେବନ ଆରମ୍ଭ ହେଲା । ନିମାଇଁ ନିଜେ ସବୁ କାମ ତଦାରଖ କରୁଥାଏ ଆନ୍ତରିକତାର ସହିତ । ସେ ପାଣିଡ଼ାଲ ଓ ଗ୍ଲାସ ଧରି ବୁଲୁଥାଏ ଏବଂ କୌଣସି ଅତିଥିର କିଛି ଦରକାର ହେଲେ, ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଦେଉଥାଏ ପରଷୁଥିବା ଲୋକମାନଙ୍କୁ ।

ଅପରାହ୍ନ ଗୋଟିଏ ପାଞ୍ଚଟା ବେଳକୁ ସ୍ଥାନଟା ମଳିନ ପଡ଼ି ଆସିଥିଲା ସେତେବେଳର ସୂର୍ଯ୍ୟ କିରଣ ଭଳି । ଆପାତତଃ ସମସ୍ତେ ଭୁଲିଯାଇଥିଲେ ଯେ କିଛି ସମୟ ପୂର୍ବେ ଅପ୍ରୀତିକର ଘଟଣାଟେ ଘଟିଥିଲା ସେଠାରେ । ନିମାଇଁ ଓ ତାକୁ ସାହାଯ୍ୟ କରିବା ପାଇଁ ସ୍ୱତଃସ୍ଫୂର୍ତ୍ତ ଭାବରେ ଆଗେଇ ଆସିଥିବା ପନ୍ଦର କୋଡ଼ିଏ ଜଣ ଲୋକ କ୍ଳାନ୍ତହୋଇ

ଯାଇଥିଲେ । ସ୍ଥାନଟା ସଫା କରିବା ବାକି ଥିଲା । ତଥାପି କିଛି ଅରୁଆଜିନ୍ ଓ ଡାଲମା ବଳି ପଡ଼ିଥିଲା । ସେ ସବୁ ସାହାଯ୍ୟ କରିଥିବା ଲୋକମାନେ ଘରକୁ ନେଇଯିବେ ।

ଶୋଗ ନହକା ତେଙ୍ଗା ନିମାଇଁ ଗୋଟେ ଚେୟାରରେ ବସି ନିଜକୁ ଅଭିନନ୍ଦନ ଜଣାଉଥିଲା ଯେ, କାମଟା ଶେଷ ହୋଇଚି ସୁରୁଖୁରୁରେ । ଅନ୍ତତଃ ତା' ତରଫରୁ କୌଣସି ଗଲ୍ତି ନ ଥିଲା ଅତିଥିମାନଙ୍କର ଚର୍ଚ୍ଚା କରିବାରେ । ସ୍ୱସ୍ତିର ନିଃଶ୍ୱାସ ମାରି ସେ ମୁହଁ ପୋଛୁହେବା ବେଳେ ଅପ୍ରତ୍ୟାଶିତ ଅତିଥି ଜଣକୁ ପାଇଲା । ଗେଟ୍ ପାଖରେ ସାଇକେଲ୍‌ରୁ ଓହ୍ଲାଇ ହସ ହସ ମୁହଁରେ କୁମର ଆସୁଚି ତା' ପାଖକୁ । ତାକୁ ମଧ୍ୟ ନିମନ୍ତ୍ରଣ କରିଥିଲା ନିମାଇଁ, କିନ୍ତୁ ସେ ଆସିପାରିବ ନାହିଁ ବୋଲି ସନ୍ଦେହ ପ୍ରକାଶ କରିଥିଲା । କେଉଁ ଜଣେ ମନ୍ତ୍ରୀ ଡାକ୍ତରଖାନା ପରିସରରେ ତିଆରି ହେବାକୁ ଯାଉଥିବା ଓ୍ୱାର୍ଡ଼ର ଭିତ୍ତିପ୍ରସ୍ତର ସ୍ଥାପନ କରିବେ ଓ ସଭାରେ ଭାଷଣ ଦେବେ ବୋଲି ସେ କହିଥିଲା । ସେଥିପାଇଁ ସେ ବ୍ୟସ୍ତ ରହିପାରେ; କାରଣ ମନ୍ତ୍ରୀ ତାକୁ ଖୋଜିପାରନ୍ତି ।

ନିମାଇଁ ଚେୟାରରୁ ଉଠି ପଡ଼ିଲା ଏବଂ କୁମରକୁ ପାଛୋଟି ନେବା ଭଙ୍ଗୀରେ ଠିଆହେଲା । ସେ ହସିଲା ସନ୍ତୋଷର ସହିତ । ଜଣାଇଦେଲା ଯେ ସେ ଗଢ଼ିଥିବା ମନ୍ଦିର ଏ ପର୍ଯ୍ୟନ୍ତ ଶୂନ୍ୟ ରହିଥିଲା । କୁମରର ଉପସ୍ଥିତି ହିଁ ସେହି ଶୂନ୍ୟ ମନ୍ଦିରର ବିଗ୍ରହ । ତା'ର ସ୍ମିତହସ ହିଁ ସେହି ମନ୍ଦିରର ବାସ୍ନାଭରା ଆଳତି ।

ନିମାଇଁ କିଛି କହିବା ଆଗରୁ କୁମର କୈଫିୟତ ଦେବା ଆରମ୍ଭ କଲା—"କ'ଣ କରିବି କହ ? ଦିନ ନ'ଟା ବେଳେ ଆସିବା କଥା । ମନ୍ତ୍ରୀ ଆସି ପହଞ୍ଚିଲେ ଗୋଟାକ ବେଳେ । ପ୍ରଥମେ ଡାକବଙ୍ଗଳାରେ ଖିଆପିଆ ଓ ପାର୍ଟି ମିଟିଙ୍ଗ୍ । ତା'ପରେ ଡାକ୍ତରଖାନା ପରିଦର୍ଶନ । ଭିତ୍ତିପ୍ରସ୍ତର ସ୍ଥାପନ । ସେଇଠୁ ମିଟିଙ୍ଗ୍ । ମନ୍ତ୍ରୀ ଆଉ ଏମ୍. ଏଲ୍. ଏ. ବିଲ୍‌କୁଲ ବିଗିଡ଼ି ଯାଇଚନ୍ତି ଆମ ପାର୍ଟିର ବ୍ଲକ୍ ପ୍ରେସିଡ଼େଣ୍ଟଙ୍କ ଉପରେ । ମିଟିଙ୍ଗରେ ଜମା ତିନିଶହ କି ଚାରିଶହ ଲୋକ । ସେମାନେ ଆଜି ଗଡ଼କୁ ଯାଇଚନ୍ତି । ମୁଁ କହି ଦେଇଚି, ଆମ ଗାଁ ପର୍ଯ୍ୟନ୍ତ ଭଲ ରାସ୍ତା ଆଉ

ପୋଲ ଯଦି ତିଆରି ନ ହୁଏ, ତେବେ ପାର୍ଟିରୁ ମୁଁ ଇସ୍ତଫା ଦେବି । ସେମାନେ କହୁଚନ୍ତି ବର୍ଷକ ଭିତରେ ଏ କାମ ସରିବ । ହାଇସ୍କୁଲ ହେବ । ଇଲେକ୍ଟ୍ରିସିଟି ଆସିବ । ନଳକୂଅ ବସିବ । ଇଲେକ୍‌ସନ୍‌ଟା ଆଗରେ ଅଛି ତ ! ଏଇ ମଉକାରେ ତାଙ୍କଠୁଁ ଯେତେ କାମ ଆଦାୟ କରାଯାଇପାରେ । ନା, ତୁ କ'ଣ କହୁଚୁ ?"

ନମାଇଁ ମନଧ୍ୟାନ ଦେଇ ଶୁଣୁଥାଏ କୁମରର ବାହାସ୍ଫୋଟ ! ସମସ୍ତେ ନୀରବରେ ଶୁଣିଯାଆନ୍ତି । ତୁଳନା କରନ୍ତି ତା'ର ବାହାସ୍ଫୋଟ ସହିତ ତା'ର ଅପାରଗତା ଓ କାପୁରୁଷତାକୁ । ତା' କଥା ଶୁଣିବାବେଳେ ସମସ୍ତେ ଆମୋଦିତ ହୁଅନ୍ତି । ତଥାପି ଭଦ୍ରତା ଦୃଷ୍ଟିରୁ ତାକୁ ଉତ୍ସାହିତ କରିବା ପାଇଁ ନମାଇଁ କହିଲା—"ନିଶ୍ଚୟ ନିଶ୍ଚୟ ! ଏଇଟା ଗୋଟେ ସୁଯୋଗ, କାମ କିଛି କରାଇ ନେବାପାଇଁ ।"

ଅଳ୍ପଦିନ ତଳେ କୌଣସି ପ୍ରାଇମେରୀ ଶିକ୍ଷକଙ୍କୁ ସାହାଯ୍ୟ କରିବା ପାଇଁ ସେ ପଶିଯାଇଥିଲା ବି.ଡ଼ି.ଓ.ଙ୍କ ଅଫିସରେ । ଫାଇଲ୍ ଉପରୁ ମୁହଁ ଉଠାଇ ସେ ପଚାରିଲେ ବିରକ୍ତ ହୋଇ—"ହୁ ଆର୍ ୟୁ ? ମୁଁ ପଚାରୁଚି, ତୁମେ କିଏ ? ବିନା ସ୍ଲିପ୍‌ରେ ତୁମେ ମୋ ଅଫିସକୁ ପଶି ଆସୁଚ କିମିତି ?" ତା'ପରେ ବାଡ଼େଇଲେ କଲିଙ୍ଗ୍ ବେଲ୍ । ପିଅନ ଆସିବା କ୍ଷଣି ତାକୁ କହିଲେ—"ୟୁ ବ୍ଲଡ଼ି ଫୁଲ ! ଏ ଲୋକ ଦି'ଜଣ ଅଫିସକୁ ପଶି ଆସିଲେ କେମିତି ? କ'ଣ କରୁଥିଲୁ ତୁ ? ଢୁଳାଉଥିଲୁ ? ଆଁ ? ତୋତେ ଆଗ ଚାକିରିରୁ ସସ୍‌ପେଣ୍ଡ କରିସାରେ !"

ପିଅନ ଥରିଲା ଗୋଟାପଣେ । ପ୍ରାୟ କାନ୍ଦପକାଇ, ହାତ ଯୋଡ଼ି କହିଲା—"ସାର୍, ମୁଁ ମନାକରୁଚି ଏମାନଙ୍କୁ । ଏ ବାବୁ କହିଲେ, ବି.ଡ଼ି.ଓ. ମୋତେ ଚିହ୍ନିଚନ୍ତି । ମୁଁ ଜଣେ ସରପଞ୍ଚ ! କହୁ କହୁ ଭିତରକୁ ପଶିଆସିଲେ, ସାର୍ !"

ବି.ଡ଼ି.ଓ. ଚାହିଁଲେ କୁମରକୁ ଏବଂ ବିଦ୍ରୂପ କଲାଭଳି କହିଲେ—"ସରପଞ୍ଚ ! ଏଇଟା କ'ଣ ପଞ୍ଚାୟତ ଅଫିସ୍ ହେଇଚି ? ଯାଅ । ଦି'ଘଣ୍ଟା ପରେ ଦେଖା କରିବ । ସ୍ଲିପ୍ ଦେଇ ଭିତରକୁ ଆସିବ ।"

ସେ ପ୍ରାଇମେରୀ ଶିକ୍ଷକ ଯାହାକୁ ଦେଖିଲା, ଏଇ କଥା କହିଲା । ହସି ହସି ବେଦମ୍ ହେଲା ।

ଏହା ପରେ ପରେ ଆଉ ଗୋଟେ ଘଟଣା ଘଟିଥିଲା ହାଇସ୍କୁଲରେ । କୁମର ସେଇ ସ୍କୁଲର ଜଣେ ଗଭର୍ଣ୍ଣିଙ୍ଗ୍ ବଡ଼ି ମେମ୍ବର ଥାଏ । ମିଟିଙ୍ଗ୍ ଚାଲିଥିଲା । ହେଡ଼ମାଷ୍ଟର କୌଣସି ଏକ ସମସ୍ୟା ଆଲୋଚନା କରୁଥିଲେ । କୁମର ପାଟିକଲା—"ଏ ବର୍ଷ ଆମ ସ୍କୁଲର ମାଟ୍ରିକ୍ ରେଜଲ୍ଟ ଖରାପ ହେଲା କାହିଁକି ?"

ହେଡ଼ମାଷ୍ଟର ଅସନ୍ତୁଷ୍ଟ ହୋଇ ତା ଆଡ଼େ ଅନେଇଲେ । ତା ପ୍ରଶ୍ନ ଉପରେ କୌଣସି ଗୁରୁତ୍ୱ ଆରୋପ ନ କରି ସେ ପୁଣି ଆଲୋଚନା ଆରମ୍ଭ କଲେ । କୁମର ବୋଧହୁଏ ଭାବିଲା, ହେଡ଼ମାଷ୍ଟର ଡରି ଯାଉଚନ୍ତି ତା ପ୍ରଶ୍ନ ଶୁଣି । କୁମରର ବଡ଼ ପୁଅ ତୃତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କରିଥିବାରୁ ସେ କ୍ଷୁବ୍ଧ ଥିଲା ଏବଂ ମିଟିଙ୍ଗ୍‌ରେ ଏକଥା ଉଠାଇବ ବୋଲି ଚାରିଆଡ଼େ କହୁଥିଲା । ସେ ପୁନରାବୃତ୍ତି କଲା ନିଜ ପ୍ରଶ୍ନର ।

ତିନୋଟି ବିଷୟରେ ଏମ୍.ଏ. ପାସ୍ କରିଥିବା ହେଡ଼ମାଷ୍ଟର କଠୋର ପ୍ରକୃତିର ଲୋକ ଥିଲେ । କୁମର ଆଡ଼େ ଚାହିଁ ଶାନ୍ତ ସ୍ୱରରେ କହିଲେ—"ମିଟିଙ୍ଗ୍‌ରେ ଜଣେ କିଛି କହୁଥିବା ବେଳେ ବାଧା ସୃଷ୍ଟି କରିବା ଉଚିତ୍ ନୁହେଁ । ଏତିକ ସାଧାରଣ ଭଦ୍ରାମି ଶିଖିବେ କେବେ ?" ଟିକିଏ ନୀରବତା ପରେ ସେ ଚାଲେଞ୍ଜ କଲେ କୁମରକୁ—"ଏ ବର୍ଷ ସାରା ଓଡ଼ିଶାରେ ମାଟ୍ରିକ୍ ପରୀକ୍ଷାରେ ଶତକଡ଼ା କେତେ ଛାତ୍ରଛାତ୍ରୀ ପାସ୍ କରିଚନ୍ତି ?"

କୁମର ଚୁପ୍ ହୋଇଗଲା ଓ ଇତସ୍ତତଃ ହେଲା । ସେ ପୁଣି ପଚାରିଲେ—"କ'ଣ, କିଛି କହୁ ନାହାନ୍ତି ଯେ ?" —"କେଜାଣି ?" କୁମର ପରାଜିତ ଓ ଅସ୍ପଷ୍ଟ ସ୍ୱରରେ କହିଲା । —"ମନେରଖନ୍ତୁ, ଶତକଡ଼ା ବତିଶ୍ ଦଶମିକ ତିନି-ସାତ, ହେଡ଼ମାଷ୍ଟର କହିଲେ । "ଆମ ସ୍କୁଲରେ ମୋଟ ପରୀକ୍ଷାର୍ଥୀଙ୍କ ସଂଖ୍ୟା ଥିଲା ବୟାଳିଶି । ପାସ୍ କରିଚନ୍ତି କୋଡ଼ିଏ । ଶତକଡ଼ା ହାର କେତେ ହେଲା ? ହିସାବ କରିପାରିବେ ନୂହେଁ ମୁହେଁ ନା କାଗଜ କଲମ ଆଣିଦେବି ?"

ଅପମାନଟା ବେଶୀ ହୋଇଗଲା ଉପସ୍ଥିତ ଥିବା ସବୁ ମେମ୍ବର ହୋ ହୋ ହୋଇ ହସିବାରୁ । ତା ସମ୍ପର୍କରେ ଏଭଳି କଥା ଶୁଣାଯାଏ ସବୁବେଳେ; କିନ୍ତୁ ସାଧାରଣ ଗାଁ ଲୋକଙ୍କ ଆଗରେ ସେ ଜଣେ ଟାଣୁଆ ସବଂଶକ୍ତିମାନ ନେତା ବୋଲି ପ୍ରତିପାଦନ କରିବାକୁ ଚେଷ୍ଟା କରେ ।

ନିମାଇଁ ମାଟ୍ରିକ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ ଗାଁକୁ ଆସିବା ପରଠାରୁ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିସାରିଥିଲା । ତା ଦୃଷ୍ଟିଭଙ୍ଗୀ ବ୍ୟାପକ ଥିଲା ଓ ସେ ମଧ୍ୟ କୌଣସି ଅଫିସକୁ ଯାଇ ଆବଶ୍ୟକୀୟ କାମ କରାଇ ପାରୁଥିଲା । ପ୍ରତିଦିନ୍ ଖବରକାଗଜ ପଢ଼ୁଥିଲା । ନିତାନ୍ତ ଅସମର୍ଥ ହୋଇଥିଲେ ମଧ୍ୟ କୌଣସି ଲୋକକୁ ସାହାଯ୍ୟ କରିବା ପାଇଁ ବାହାରି ପଡ଼ୁଥିଲା । ଏଇଥିପାଇଁ ଗୋଟାଏ ନୀରବ ପ୍ରତିଯୋଗିତା ଆରମ୍ଭ ହୋଇ ଯାଇଥିଲା କୁମର ଓ ନିମାଇଁ ମଧ୍ୟରେ । ଖୋଲାଖୋଲି ଭାବରେ ସେ ଦୁହେଁ ଯୁଦ୍ଧ ଘୋଷଣା କରି ନ ଥିଲେ କିମ୍ବା ପାରସ୍ପରିକ ଅଶ୍ରଦ୍ଧା ଓ ଘୃଣା ପ୍ରକାଶ କରି ନ ଥିଲେ ।

ଆତ୍ମୀୟଙ୍କ ଭଳି କୁମର ପ୍ରସାଦସେବନ କଲା । ହାତ ଧୋଇସାରି ମନ୍ତବ୍ୟ ବାଡ଼ିଲା—"ଯାହା ହେଉ, ବଡ଼ କାମଟିଏ କଲୁ । ଭଲ ଦୋକାନଟେ ଗାଁରେ ନ ଥିଲା ବୋଲି ବଡ଼ ହଇରାଣ ହେବାକୁ ପଡ଼ୁଥିଲା । ଏଥର ତୋ ଦୋକାନରୁ ସିନା ସଉଦା ଯିବ ଠାକୁରଙ୍କ ପାଖକୁ ?"

ସଙ୍ଗେ ସଙ୍ଗେ ପ୍ରତିବାଦ କଲା ନିମାଇଁ—"ମୋ ଦୋକାନରୁ କାହିଁକି ? ଠାକୁରଙ୍କର ମୁଁ କିଏ ଶୋଇ ବୋଲି ? କମା ନୁହେଁ । ଦେବ ମାମୁଁ ଆଗଭଳି ଠାକୁରଙ୍କ ସଉଦା ଦେବେ । ତାଙ୍କ ଦୋକାନ ଚାଲିବ । ମୋ ଦୋକାନ ବି ଚାଲିବ । ତାଙ୍କୁ ବୁଡ଼େଇ ଦେବାପାଇଁ ମୁଁ ଏ ଦୋକାନ କରିନାହିଁ ।"

କୁମର ହାତ ପୋଛୁହେବାବେଳେ ଚାହିଁଲା ଚାରିଆଡ଼କୁ । ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କଲା । ବ୍ୟାଙ୍କ୍ ଅଫ୍ ଇଣ୍ଡିଆର ତାରଣୀ ବ୍ରାଞ୍ଚରୁ ତିନି-ଚାରି ବର୍ଷ ପୂର୍ବେ ସେ ଲୋନ୍ ଆଣିଥିଲା, ଏଇଠି ଦୋକାନଟେ ଖୋଲିବ ବୋଲି । ଦୋକାନ ଘର ବି ତିଆରି କରିପାରିଲା ନାହିଁ । ଖର୍ଚ୍ଚ ହୋଇଗଲା ଟଙ୍କା । ତାକୁ ଟଙ୍କା ଧାର ଦେଇଥିବା ଅନେକ ଲୋକ ତା

ପାଖକୁ ଆସି ଘର ଖଇଗ୍ଚ, ବ୍ୟସ୍ତବ୍ୟସ୍ତ କରୁଥିଲେ । ସେମାନଙ୍କର କିଛି ଟଙ୍କା ଶୁଝିବାକୁ ପଡ଼ିଥିଲି ସେଇଥିରୁ ।

ତାକୁ ଚୁପ୍ ହେବାର ଦେଖି ନିମାଇଁ ଘାବ୍ରୁଥିଲି କହିବାକୁ ତା ବିରୁଦ୍ଧରେ କେହି ଜଣେ ବେନାମୀ ଚିଠି ଦେଇଚି ବୋଲି । ଏତକ ଭାବିବା ମାତ୍ରେ ପ୍ରଚଣ୍ଡ କ୍ରୋଧ ଓ ଘୃଣାରେ ତା'ର ଛାତି ଧକ୍ ଧକ୍ କରିବା ଆରମ୍ଭ କଲା । ଗୋଟାଏ ଉତ୍ତପ୍ତ ଉତ୍ତେଜନା ଉଠିଆସିଲା ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ । କିନ୍ତୁ ନିଜକୁ ସମ୍ବରଣ କରିନେଲା । କହିଲା—"ତୁମେ ଦୋକାନଟେ ଖୋଲିବ ବୋଲି କହୁଥିଲ । କାହିଁକି ଖୋଲିଲ ନାହିଁ କେଜାଣି ?"

କୁମର ବେଶ୍ କିଛି ସମୟ ପାଇଁ ଚାହିଁଲା ନିମାଇଁ ମୁହଁକୁ । ତା' ପ୍ରକୃତିର ସରଳତା କ୍ଷଣକ ସକାଶେ ସନ୍ଦିଗ୍ଧ ହୋଇପଡ଼ିଲା ବୋଧହୁଏ । ନିଜକୁ ପ୍ରକାଶ କରିଦେବାର ପ୍ରବୃତ୍ତିକୁ ସେ ଆୟତ୍ତ କରିପାରିଲା ନାହିଁ । ଅନେକ ଆତୁରତା ଓ କ୍ଷୋଭର ସହିତ ନିଜ ଅଜାଣତରେ କହି-ପକାଇଲା—"ମୁଁ ବୁଡ଼ିଯାଉଚି । ବୁଝିଲୁ ନିମାଇଁ, ବୁଡ଼ିଯାଉଚି ମୁଁ । ନିଜକୁ ଭୁଲିବା ପାଇଁ ଯେତେ ଯୁଆଡ଼େ ବୁଲିଲେ ମଧ ଲାଭ କିଛି ହେଉନାହିଁ । ହନେ ଦେଖିବୁ, ମୁଁ ପାଗଳ ହୋଇଯାଇଚି । ଯେତେ ଯାହା ରୋଜଗାର କଲେ ବି ଅଣ୍ଟୁନାହିଁ । କ'ଣ କରିବ, କିଛି ଭାବିପାରୁ ନାହିଁ ।"

ଅପରିସୀମ ଆନ୍ତରିକତା ଥିଲା ଏଇ ସ୍ୱରରେ । ସ୍ୱରଟା ଅବଶ୍ୟ ଥିଲା ଗୋଟାଏ ଆର୍ତ୍ତନାଦ; କିନ୍ତୁ ଏଇ ସ୍ୱର ଏବଂ ନିଜ ଅଭ୍ୟନ୍ତରକୁ ନିଛକ ଭାବରେ ଅନ୍ୟ ଆଗରେ ଥୋଇ ଦେବାର ଇଚ୍ଛା ହିଁ ଥିଲା କୁମରର ପ୍ରକୃତ ସ୍ୱରୂପ । ସେ ଗୋଟାଏ ମିଛ ପୋଷାକ ପିନ୍ଧି ଏ ପର୍ଯ୍ୟନ୍ତ ନାଚି ଆସିଚି ସିନା; ସେ ଥକି ଯାଉଚି ଆସ୍ତେ ଆସ୍ତେ । ସମସ୍ତ ନକଲି ଆବରଣ ଫିଙ୍ଗିଦେଇ ଗୋଟାଏ ଆନ୍ତରିକତା ଓ ଆତ୍ମୀୟତା ସେ ଖୋଜୁଚି ବ୍ୟାକୁଳ ହୋଇ । ପୁଣି ଆତଙ୍କିତ ହେଉଚି ଯେ, ଏଇ ଆବରଣ ଖୋଲିଦେବା ମାତ୍ରେ ତା' ଉପରେ ହୁଏତ ଆରମ୍ଭ ହୋଇଯିବ ଆକ୍ରମଣ । ତା' ବିରୁଦ୍ଧରେ ପୁଞ୍ଜୀଭୂତ ହେଉଥିବା ପ୍ରତିବାଦ ଓ ପ୍ରତିଶୋଧ ନେବାର

ଇଚ୍ଛାକୁ ଦୂରେଇ ରଖିବାକୁ ହେଲେ ଏଇ ଭିନ୍ନ ପୋଷାକ ପିନ୍ଧିବାକୁ ହେବ ବାଧ୍ୟ ହୋଇ ।

ନିମାଇଁର ଅଭ୍ୟନ୍ତରରେ କେଉଁ କୋମଳ ସ୍ନେହପ୍ରବଣ କୋଣରେ ଝଙ୍କୃତ ହେଲା ଗୋଟାଏ ସ୍ପନ୍ଦନ । ସେ ଅନ୍ତତଃ ମୂହୂର୍ତ୍ତକ ପାଇଁ ବିଗଳିତ ହୋଇଗଲା କୁମରର ଏଇ ଅବସ୍ଥା ଦେଖି । ସେ ଗୃହଁ ରହିଥିଲା ଆମ୍ବତୋଟା ଭିତରେ ଆଗେଇ ଯାଉଥିବା ତା'ର ସାଇକେଲ ଆଡ଼େ । ବଡ଼ ନିଃସଙ୍ଗ ଓ ପ୍ରତିରକ୍ଷାହୀନ ଦେଖାଯାଉଥିଲା ସେ ।

—"କୁଳମଣିବାବୁ ଅଛନ୍ତି କି ଘରେ ?" ଦାଣ୍ଡ ଘର କବାଟ ପାଖରେ ଶୁଭିଲା ଏଇ ଡାକ । ଅଗଣାରେ ଗୋଡ଼ ଧୋଉଥିବା କୁମରର ହାତ ଅଟକି ଗଲା । ଅଳ୍ପ ସମୟ ପରେ ପୁଣି ସେଇ ଡାକ—"ଆଜ୍ଞା, କୁଳମଣି ବାବୁ, ଟିକିଏ ଶୁଣନ୍ତୁ ।"

ସପ୍ତମ ଶ୍ରେଣୀରେ ପଢ଼ୁଥିବା ଝିଅ କହିଲା—"ବାପା ନାହାନ୍ତି । କେତେବେଳେ ଫେରିବେ କହିଯାଇ ନାହାନ୍ତି ।"

—"ଘରେ ନାହାନ୍ତି ?" ସ୍ତମ୍ଭୀଭୂତ ସ୍ୱର ଶୁଭିଲା ଏଥର । "ନାହାନ୍ତି କ'ଣ ? ମୁଁ ପରା ଏଇ ତାଙ୍କ ପଛେ ପଛେ ଆସୁଚି !"

ଏଭଳି କଥାରେ କ'ଣ ଜବାବ ଦିଆଯାଇପାରେ, ତାହା ଝିଅକୁ ଶିଖେଇ ନ ଥିଲା ସେ । ଏ ଅଞ୍ଚଳରେ ବହୁ ଲୋକଙ୍କଠାରୁ ଟଙ୍କା ଏବଂ ଧାନ ଧାର ସୂତ୍ରରେ କିମ୍ବା କୌଣସି କାମ କରିଦେବ ବୋଲି ପ୍ରତିଶ୍ରୁତି ଦେଇ ଆଣି ସେ ଏବେ ନିତାନ୍ତ ଜଟିଳ ଓ ଅପମାନଜନକ ପରିସ୍ଥିତିରେ ନିଜକୁ ପକାଇଚି । ଲୋକଙ୍କ ଦାଉରୁ ରକ୍ଷାପାଇବା ସକାଶେ ଘରେ ସମସ୍ତଙ୍କୁ ସେ ନିର୍ଦ୍ଦେଶ ଦେଇଚି ଯେ, ଘରେ ସେ ଥାଉ ବା ନ ଥାଉ, କେହି ତାକୁ ସନ୍ଧ ଖୋଜେ, ତେବେ ସେମାନେ ଜବାବ ଦେବେ—ସେ ନାହାଁନ୍ତି ଘରେ । ଘରେ ଶାନ୍ତି ମିଳେ ନାହିଁ ବୋଲି ସେ ନିଜକୁ ବାହାରେ ଲୁଚେଇବା ପାଇଁ ଚେଷ୍ଟା କରେ ସବୁବେଳେ । ଅଧିକାଂଶ ଦିନ ସକାଳୁ ବାହାରିଯାଏ ସାଇକେଲ ନେଇ, ଫେରେ ରାତିରେ । ଯେଉଁମାନଙ୍କ ପାଖରୁ ସେ ଟଙ୍କା ଏବଂ ଧାନ ଆଣିଚି, ସେମାନଙ୍କ ମଧ୍ୟରୁ ଅଧିକାଂଶ

କୋହ୍ଳ କିମ୍ବା ଯେଉଁଭଳି ଆଦିବାସୀ ସମ୍ପ୍ରଦାୟର । ଏହି ନିରକ୍ଷର ସରଳ ଏବଂ କଠୋର ପରିଶ୍ରମୀ ଲୋକମାନେ ଆଗରୁ କେବେ ଜାଣି ନ ଥିଲେ ଯେ, ଟଙ୍କା ଏବଂ ଧାନ ଧାର ନେଇ ଜଣେ ଲୋକ ତାହା ଆଉ ପରିଶୋଧ କରିବ ନାହିଁ । ଅନ୍ୟ କେତେକ ଲୋକ ତା' ପାଖରୁ ଆଉ କିଛି ଫେରି ପାଇବାର ଆଶା ନ ରଖି ଚୁପ୍ ହୋଇଯାଇଚନ୍ତି ଅନେକବାର ନିଷ୍ଫଳ ଚେଷ୍ଟା ପରେ । ଏହାସତ୍ତ୍ୱେ କେତେବେଳେ କପରି ଏଇ ଲୋକଙ୍କର ସାମନାସାମନି ହୋଇଯାଏ କୁମର । କିଛି ଗୋଟାଏ କହି ଫାଙ୍କି ଦେବାକୁ ପଡ଼େ କିମ୍ବା ଖୋକ୍‌ଠୋକ୍ ଭାବରେ କହିବାକୁ ପଡ଼େ ଯେ, ତାଙ୍କ ପାଖରୁ କିଛି କିନିଷ ସେ କେବେହେଲେ ଆଣିନାହିଁ । ନଗ୍ନୋଡ଼ବନ୍ଧା ଲୋକମାନେ ଘର ପାଖକୁ ଆସି ଡାକନ୍ତି—"କୁଳମଣି ବାବୁ ଘରେ ଅଛନ୍ତି କି ?"

ମୁହଁ ପୋଛୁ ହେବା ବେଳେ ଝିଅ କହିଲା ଗୁପ୍ତକଥା ଶୁଣେଇବା ଭଳି—"ବାପା, କିଏ ଜଣେ ଡାକୁଚି ତୁମକୁ । ତୁମେ ଘରେ ଅଛ ବୋଲି ସେ ଜାଣିଚି ।"

—"ହଉ ତୁ ଯା' । ମୁଁ ଦେଖୁଚି, କିଏ ସେ ଲୋକ ।" କୁମର କହିଲା ଏବଂ ଦାଣ୍ଡ ଘରକୁ ଆସି କବାଟ ଫିଟେଇଲା ।

ପ୍ରଥମେ ଗୋଟେ ନମସ୍କାର । କୁମର ଚିହ୍ନିଲା, ତିନି କିଲୋମିଟରେ ଦୂର ଗାଁରେ ନୂଆ ହୋଇ ଖୋଲିଥିବା ମାଇନର ସ୍କୁଲର ସେକ୍ରେଟେରୀ । ସେ ସାହସ ଫେରି ପାଇଲା । —"କ'ଣ ଖବର, ସନାତନ ?" ପଚାରିଲା ସେ ଜଣେ ବାହାପିଆ ନେତା ଭଳି ।

—"ଆମ ସ୍କୁଲ, ଆଜ୍ଞା, ଏ ପର୍ଯ୍ୟନ୍ତ ସରକାରୀ ସ୍ୱୀକୃତି ପାଇଲା ନାହିଁ । ଆମେ ଆଜ୍ଞା ସମସ୍ତେ ଆପଣଙ୍କ ଉପରେ ଭରସା କରିଥିଲୁ ।" ଲୋକଟି କହିଲା ହତୋତ୍ସାହ ହୋଇ ।

'ରେକଗ୍‌ନିସନ୍ ପନ୍ଦରଟା ଦିନରେ ମିଳିଯିବ ବୋଲି ପ୍ରତିଶ୍ରୁତି ଦେଇ କୁମର ସେ ଗାଁ ଲୋକଙ୍କ ଠାରୁ ବେଶ୍ କିଛି ଟଙ୍କା ଓ ଧାନ ମାରିନେଇଥିଲା । ଅଥଚ ଏ ବାବଦରେ ସେ ଏ ପର୍ଯ୍ୟନ୍ତ କିଛି କରିନାହିଁ ।

ଗମ୍ଭୀର ହୋଇ କହିଲା—"ଏଣେ ମନ୍ତ୍ରୀ ଆଉ ଏମ୍. ଏଲ୍. ଏ. ସବୁ-ବେଳେ ମୋତେ ଖୋଜୁଥିବାରୁ ତୁମକୁ ଗୋଟେ ସିରିଅସ୍ କଥା କହିବାକୁ ଫୁରୁସତ୍ ପାଇନାହିଁ । ତୁମେ କାଗଜପତ୍ରରେ ତିନିଜଣ ଶିକ୍ଷକ ରଖିଚ ବୋଲି ଲେଖି, ଜମା ଦୁଇଜଣ ଶିକ୍ଷକ ରଖିଚ ।"

ସନାତନ ଡରିଗଲା ପ୍ରଥମେ । କୈଫିୟତ ଦେଲା—"ସବୁ ନୂଆ ସ୍କୁଲରେ ଆଜ୍ଞା ସେମିତି କରନ୍ତି ।"

—"ଆଉ ଗୋଟେ କଥା ହେଉଚି, ମାଷ୍ଟ୍ରମାନଙ୍କୁ ଯେତିକି ଦରମା ଦେଉଚ ବୋଲି ଦାରମା ଖାତାରେ ସେମାନଙ୍କଠୁ ଦସ୍ତଖତ କରେଇ ନେଉଚ, ସତରେ କ'ଣ ସେତିକି ଦରମା ଦେଉଚ ସେମାନଙ୍କୁ ?" ଜଣେ ଓକିଲ ଭଳି ଏଥର ଗୁଣ୍ଡିମତି ଚଢ଼ଉ କଲା ସନାତନ ଉପରେ ।

ପୁଣି କୈଫିୟତ ଆସିଲା ନର୍ଭସ ହୋଇ ଯାଇଥିବା ସ୍କୁଲ ସେକ୍ରେଟେରୀ ଠାରୁ—"ସବୁ ନୂଆ ସ୍କୁଲରେ ସେମିତି କରନ୍ତି ବୋଲି ଆପଣ ଆମକୁ କହିଥିଲେ ।"

—"ତୁମମାନଙ୍କୁ ଉପାୟ ବତେଇବା ଉଚିତ ନୁହେଁ ।" ଅସନ୍ତୁଷ୍ଟ ହୋଇ କହିଲା କୁମର । "ବଡ଼ ସମସ୍ୟା ହେଉଚି, ଏସବୁ କଥା ମନ୍ତ୍ରୀ, ସେକ୍ରେଟେରୀ, ଡି.ପି.ଆଇ., ଆଉ ଡି.ଆଇ. କାନକୁ ଗଲା କେମିତି ?"

—"କ'ଣ କହିଲେ ? ଏ କଥା... !"

ତାକୁ ଅଧିକ କୁହାଇ ନ ଦେଇ କୁମର ଆଗଭଳି ଗମ୍ଭୀର ହୋଇ କହିଲା—"ମୁଁ ଯାଇ ମନ୍ତ୍ରୀଙ୍କୁ କହିବା ବେଳେ ସେ ମୋତେ କହିଲେ, କୁଳମଣିବାବୁ, ଆପଣଙ୍କ ଭଳି ଜଣେ ମାନ୍ୟଗଣ୍ୟ ଲୋକ କାହିଁକି ମୁଣ୍ଡ ଖେଳଉଚନ୍ତି ସେ ସ୍କୁଲ ସଙ୍କାନ୍ତରେ ? ଅନେକ ଗଳତି ଅଛି ସେଠାରେ । ସବୁ କଥା ଇନକ୍ୱାରି କରିବା ପାଇଁ ମୁଁ ଅର୍ଡ଼ର ଦେଇଚି । ବୁଝିଲ, ସନାତନ, ସେ ଅର୍ଡ଼ରକୁ ଚପେଇ ଦେବା ପାଇଁ ମୋତେ ହଇରାଣ ଆଉ ଗୁଡ଼ାଏ ଖର୍ଚ୍ଚାନ୍ତ ହେବାକୁ ପଡ଼ିଲା । ହାତରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବା ପାଇଁ ମୋର ଆଉ ଶକ୍ତି କ'ଣ ଅଛି ? ରେକଗ୍ନିସନ୍ ପାଇଁ ତୁମେ ଆଉ କାହାର ସାହାଯ୍ୟ ନିଅ । ଡେଣିକି

ଯାହା ଥିବ ତୁମର ଓ ତୁମ ସ୍କୁଲ ଭାଗ୍ୟରେ ।" କୁମର କହିଲା, ସତେ ଯେମିତ ସମ୍ପୂର୍ଣ୍ଣ ହାଲଆ ହୋଇଗଲା ପରେ ନିରୂପାୟ ହୋଇ ସେ ମଝି ନଈରେ ଜଣକୁ ଗୁଡ଼ ଦେଉଛି । ସେ ସମ୍ପୂର୍ଣ୍ଣ ଆଶାବାଦୀ ଥିଲା ଯେ ଔଷଧ ନିଶ୍ଚୟ କାମ ଦେଖାଇବ ଖୁବ୍ ଶୀଘ୍ର ।

ରାସ୍ତାକୁ ଲାଗି ଚାରି ବଖରା ନୂଆ ଘର । ଗୋଟିଏ ପାଖରୁ ବାହାରିଛି ଗୋରୁଷେଇ ଘର । ଅନ୍ୟ ପାଖରୁ ଢେଙ୍କିଶାଳ । କୁଣିଆ-ମଇତ୍ରଙ୍କ ପାଇଁ କୋଠରିଟିଏ ଢେଙ୍କିଶାଳକୁ ଲାଗି । ଏଇ ରୁମ୍‌ରୁ ଗୋରୁଷେଇ ଘରଯାଏଁ ପାଚେରୀ । ମଝିରେ ବେଶ୍ ପ୍ରଶସ୍ତ ଅଗଣା । ମଝିରେ ତୁଳସୀ ଚଉରା । ପାଚେରୀ ମଝିରେ ଯେଉଁ ଦ୍ୱାର ଲାଗିଛି, ସେବାଟେ ଘର ପଛ ବାଡ଼କୁ ଯିବା ଆସିବା ହୁଏ । ଅନେକ ଦିନ ହେଲାଣି କୁମର ଏଇବାଟେ ସାଇକେଲ ଧରି ପ୍ରାୟ ଗ୍ରେଡ଼ରଙ୍କ ଭଳି ଯିବାଆସିବା କରୁଛି । ଗାଁ ପରିସ୍ଥିତି ସହିତ ବିଶେଷ ସମ୍ପର୍କ ରହୁନାହିଁ ତା'ର । ଏ ଘର ପାଇଁ ଅନେକ ଟଙ୍କା ଲୋନ୍ ହୋଇଛି । ଗୋଟିଏ ଟଙ୍କା ବି ଶୁଝା ଯାଇନାହିଁ । ଗାଁର ଦକ୍ଷିଣ ଦିଗକୁ ତା'ର ଯେଉଁ ଭଲ ଜମି କିଛି ଅଛି, ସେଇଠି ପୋଖରୀ ଖୋଳାଇବାକୁ ଆଉ ଗୋଟିଏ ଲୋନ୍ ଆଣିଥିଲା । ମାଛଚାଷ ସହିତ ଦୋ'ଫସଲ ସମ୍ଭବ ହେବ ବୋଲି । ନିତାନ୍ତ ହାସ୍ୟାସ୍ପଦ ଦିଶୁଛି ସେ ପୋଖରୀ । ପୋଖରୀ ନୁହେଁ ତ; ଗୋଟାଏ ଖାତ । ବର୍ଷାଦିନେ ପାଣି ଜମିଲେ ବେଙ୍ଗମାନେ ବସବାସ କରନ୍ତି ସେଠାରେ । ସେଇ ଜମିକୁ ଲାଗି ପାହାଡ଼ ପର୍ଯ୍ୟନ୍ତ ଯେଉଁ ଅରମା ରହିଥିଲା, ତାହାକୁ ଜମି କରିବ ବୋଲି ଗୁଡ଼ାଏ ଟଙ୍କା ଖର୍ଚ୍ଚ ହେଲାଣି । ଆହୁରି ଅନେକ ଟଙ୍କା ଖର୍ଚ୍ଚ ନ କଲେ ଜମି ହୋଇ ପାରିବ ନାହିଁ । ଦୋକାନ ପାଇଁ ଲୋନ୍ । ଖୋଲାରେ ତା ନାଁରେ ଓ ରଘୁ ନାଁରେ ଦୁଇଟି ଲୋନ୍ । ଅନ୍ୟ ଲୋକଙ୍କ ନାଁରେ ଲୋନ୍ କରାଇ ସେ ଅନେକ ଟଙ୍କା ଧାର ଆଣିଛି । ଧାନ ଓ ଅନ୍ୟ କରଜ ର ସୀମା ନାହିଁ ।

ଦଉଡ଼ିଆ ଖଟରେ ସେ ବସିଥିଲା । ଗୋଟେ ଘରେ ଲଣ୍ଠନ ପାଖରେ ବସି ତା'ର ସାନ ଝିଅ ଦୁଇଟା ଓ ରଘୁର ଝିଅ ଦୁଇଟା ଚଗଲା ହେଉଛନ୍ତି । ଗୋରୁଷେଇ କରୁଛନ୍ତି ସ୍ତ୍ରୀ ଲୋକ ଦୁଇଜଣ । ଢେଙ୍କି-ଶାଳରେ ଆଉ ଗୋଟିଏ ଦଉଡ଼ିଆ ଖଟରେ ମା' ଶୋଇଛି ।

କେବେ କହୁନାହିଁ—"ଦେହ ଭଲ ଲାଗୁନାହିଁରେ, କୁମର ! ଟିକିଏ ଔଷଧ ଆଣିଦଉନୁ ନାହିଁ ? କାଲେ ଭଲ ହୋଇଯାଆନ୍ତି ?" ସବୁ ଯନ୍ତ୍ରଣା, ସବୁ ରୋଗ, ସବୁ ଦୁର୍ବଳତାକୁ ଲୁଚେଇବା ପାଇଁ ଚେଷ୍ଟା କରେ ଶ୍ରେଷ୍ଠ ହୋଇ ଯାଉଥିବା ତା'ର ନିପାରିଲା ଦେହ ଭିତରେ । ବର୍ଷକ ମଧ୍ୟରେ ତା'ପାଇଁ କୁମର ଆଣିଦେଇଚି କେତେଟା ଟନିକ୍, ପାଣି ଔଷଧ ଓ କିଛି ବଟିକା । ସେ ଜାଣେ, ମା' ଆଉ ଭଲ ହେବ ନାହିଁ । ସଢ଼ିବ ଏଇଭଳି ମରିବା ପର୍ଯ୍ୟନ୍ତ ! ଡାକ୍ତର କହିସାରିଚନ୍ତି, ତାକୁ କାନ୍‌ସର ହୋଇଚି । ତା'ର ଗର୍ଭାଶୟରେ ଏଇ ରୋଗର ଭାଇରସ୍ ଆସ୍ଥାନ ଜମେଇ ପରିବ୍ୟାପ୍ତ ହେଉଚି ।

ଯେଉଁ ଜାଗାରେ ସେ ଥିଲା, ରଘୁ ବି ଥିଲା । ଦଶମାସ ପର୍ଯ୍ୟନ୍ତ । ସେଇ ଜାଗା ତାହାର କ୍ଷତସାରରେ କବର ହୋଇ ଯାଉଚି । ସେ କିଛି କରିପାରୁ ନାହିଁ । ଡାକ୍ତରର ବିଦ୍ୟାବୁଦ୍ଧି ସ୍ତବ୍ଧ ଏଇ ବ୍ୟାପାରରେ । ମା'କୁ ଏଇଥିପାଇଁ ଗୁହାଁରି ହୁଏନାହିଁ ବେଳେବେଳେ । ଗୋଟାଏ ଅପରାଧ ବୋଧରେ ସେ ଆର୍ତ୍ତନାଦ କରିପକାଏ । କହିବାକୁ ମନହୁଏ—"ମୁଁ ଥକି ଯାଉଚି । ସଂସାର ଚଳେଇବାରେ ଗୁରୁତର ତ୍ରୁଟି ରହିଯାଉଚି ବୋଲି ମୁଁ ଖାଲି ଧାଁ ଦୌଡ଼ କରୁଚି । ଅଭାବ ବଢ଼ି ଚାଲିଚି ଦିନକୁ ଦିନ । ମୁଁ ଜାଣେ, ଥରେ ମୋତେ ଦେଖିଦେଲେ ତୁ ଜାଣି ପାରୁଥିବୁ, କ'ଣ ହେଉଚି ମୋ ଭିତରେ । ସେଥିପାଇଁ ତୁ ମୋତେ କିଛି ପଚାରିବା ଦରକାର ମନେକରିନୁ । ମନହୁଏ, ଯେଉଁ ଜାଗାରେ ଏତେ ଯତ୍ନକରି ଦଶମାସ ଧରି ତୁ ମୋତେ ସାଇତି ରଖିଥିଲୁ, ସେଇଠିକି ପୁଣି ପଳାନ୍ତି କି ! ସବୁ ବଜ୍ରପାତ, ସମସ୍ତ ମରୁଡ଼ି, ଅଗଣିତ ବ୍ୟାଙ୍କ୍ ନୋଟିସ୍‌ମାନଙ୍କର ଫଣା ନିମ୍ନମୁଖୀ ହୋଇ ଯାଆନ୍ତା ।"

ଗୋଟାଏ ବିହ୍ୱଳ ଭାବ କୁମରକୁ ମୁକ୍ତ କରି ଦେଉଥିଲା ସମସ୍ତ ଚିନ୍ତା ଓ ଚିନ୍ତାରୁ । ସେ ହାତ ବୁଲାଇ ଆଣିଲା ମା'ର ଦୁଇପାଦ ଉପରେ ।

ଏତିକିବେଳେ କେହି ଜଣେ ବାହିପଟ ଦ୍ୱାର ପାଖରେ ଥାଇ ତାକୁ ଡାକିଲା । ସେ ସତର୍କ ହୋଇଗଲା ଆତତାୟୀ ଜଣେ ପୋଲିସ୍‌ର ଉପସ୍ଥିତି ବାରି ସତର୍କ ହୋଇଯିବା ଭଳି । ଖଟରୁ ଉଠି ଆସିଲା ଏବଂ କବାଟ ଖୋଲିଲା ବାଧ୍ୟ ହୋଇ ।

—"କଥା କ'ଣ ?" ସେ ପଚାରିଲା ଦ୍ୱାର ପାଖରେ ଠିଆ ହୋଇଥିବା ଦୁଇଜଣଙ୍କୁ ଦେଖି । ଜଣେ ହରିଜନ ସାହିର; ଅନ୍ୟ ଜଣେ ଖମଣ ସାହିକୁ ଏବେ ଉଠିଯାଇଛି । ଗାଁରେ ତା ସମ୍ପର୍କରେ ହେଉଥିବା ସମସ୍ତ ଆଲୋଚନା ଏଇ ଦୁଇଜଣ ତାକୁ କହନ୍ତି । ଏମାନଙ୍କ ବ୍ୟତୀତ ଆହୁରି କେତେଜଣ ମଧ୍ୟ ତା'ର ଆପଣାର ଲୋକ ବୋଲି ପରିଚୟ ଦିଅନ୍ତି । ଏଇମାନଙ୍କର କଥାରୁ ଗାଁ ଲୋକମାନଙ୍କର ତା' ପ୍ରତି ରହିଥିବା ଦୃଷ୍ଟିକୋଣ ସମ୍ପର୍କରେ କୁମର ସ୍ପଷ୍ଟ ଚିତ୍ରଟିଏ ପାଏ । ଅଭାବଗ୍ରସ୍ତ ଏଇ ଲୋକମାନେ ବିଭିନ୍ନ ସମୟରେ ତା' ଘରେ କେବେ କପରି ଖାଆନ୍ତି ।

ଅଥଚ ଏଇମାନଙ୍କର କୁମର ପ୍ରତି ଅନୁରକ୍ତି ଚୂଡ଼ାନ୍ତ ଓ ନିରଙ୍କୁଶ ନୁହେଁ ଆଦୌ । ଏମାନଙ୍କୁ କେହି ଜଣେ କିଣିନେଇ ପାରେ ଗଣ୍ଡାଏ ଭାତ କିମ୍ବା ଅଳ୍ପକିଛି ପଇସାରେ । ନିର୍ବିଘ୍ନରେ ସେମାନେ କହିପାରନ୍ତି କୁମରର କାର୍ଯ୍ୟକ୍ରମ ଓ ମତିଗତି ସମ୍ପର୍କରେ । ଏମାନଙ୍କୁ ବିଶ୍ୱାସଘାତକ ବୋଲି ଡାକନ୍ତି ଗାଁର ଅଧିକାଂଶ ଲୋକ । କୌଣସି ଲଜ୍ଜା କିମ୍ବା ସଙ୍କୋଚ ନ ଥାଏ ଏମାନଙ୍କର ଏଇଭଳି ଭାବରେ ପରିଚିତ ହେବାରେ ।

ସେ'ଦିନ ଲକ୍ଷ୍ମୀ ମାର୍କେଟରେ ତାକୁ କେନ୍ଦ୍ରକରି ଘଟିଥିବା ଘଟଣାଟି ଅତିରଞ୍ଜିତ ହୋଇ ବର୍ଣ୍ଣିତ ହେବା ପରେ କୁମର ପାଲଟି ଯାଇଥିଲା ଗୋଟାଏ ଧ୍ୱଂସାତ୍ମକ ସଇତାନରେ । ଅସ୍ଥିର ଅଧୈର୍ଯ୍ୟ ହୋଇ ଚିତ୍କାର କଲା ସେ—"ତୁମେ ଯାଅ । ମୁଁ ଦେଖି ନେଉଛି ଏ ଶଳା କୁକୁରମାନଙ୍କୁ । ଗୋଟି ଗୋଟି କରି ଏମାନଙ୍କୁ ମୁଁ ଯଦି ମାମୁଁ ଘରକୁ

ନ ପଠେଇଚ, ମୁଁ ମୁହଁ ଦେଖେଇବ ନାହିଁ କାହାରିକୁ । କିଏ ନାହିଁ କିଏ ବେନାମୀ ଚିଠି ପଠେଇବ, ଦୋଷ ହେବ ମୋର ?"

ଗୋଟାଏ ପାଗଳ ପରି ସେ ଏକରକମ ନାଚିଲା ଅଗଣାରେ । ସେଥିରେ କାମ ଭୁଲିଯାଇ ସ୍ତ୍ରୀଲୋକ ଦି'ଜଣ ଠିଆ ହେଲେ ଦରଜା ପାଖରେ ଯିତସ୍ତ ହୋଇ, ବାରନ୍ଦାରେ ଠିଆ ହୋଇଥିବା ଛୁଆମାନେ ଅସହାୟ ଦେଖାଗଲେ, ଦଉଡ଼ିଆ ଖଟ ଉପରେ ମା' ବସି ପଡ଼ିଲା ଏବଂ ହାଉଳି ଖାଇଲା ଭଳି ପଚାରିଲା—"କିରେ, କ'ଣ ହୋଇଚି ଆଗ ମୋତେ କହ ! ଏମିତି ବାୟାଙ୍କ ଭଳି ହେଉଚୁ କାହିଁକି ?" ଅଜଣା ଆଶଙ୍କାରେ ତା' ସ୍ୱର ଦୟନୀୟ ଓ ବିକଳ ଶୁଭୁଥିଲା । ସମସ୍ତେ ବୁଝି-ନେଲେ ଯେ, ପ୍ରେଟକାଟର ସଂହାର ଘଟିବ ଆଉ କିଛି ସମୟ ପରେ ।

ମା'ର ବ୍ୟସ୍ତତା ପ୍ରତି କର୍ଣ୍ଣପାତ ନ କରି, କୁମର ପଶିଗଲା ଗୋଟେ କୋଠରିରେ । କମିଜ୍ ପିନ୍ଧୁଥିବା ଅବସ୍ଥାରେ ବାହାରି ଆସିଲା । କହୁଥାଏ—"ଶଳାଙ୍କର ଦିମାକ୍ ବଢ଼ିଗଲାଣି । ମୁଁ ମୂର୍ଦ୍ଦାବାଦ, ମୋତେ ଏମାନେ ଲଙ୍ଗଳା କରିବେ, ମୁଁ ମୋ ମା' ଘଇତା ରାଜନୀତି କରୁଚି, ନୁହେଁ ? କାହାରିକୁ ଛାଡ଼ିବନାହିଁ । ଗ୍ଲାରଖାର କରିବ ଏ ଗାଁକୁ ! ଢେର ସହିଲଣି ଏମାନଙ୍କର ଉତ୍ପାତ ! ଆଉ ନୁହେଁ ।"

ସେ ସାଇକେଲ୍ ଧରିବା ବେଳେ, ମା' ପହଞ୍ଚି ସାରିଥିଲା ସେଇଠି । ଗୋଟାଏ ଧମକ୍ ଦେଲା—"ଏ ଅଧରାତିଟାରେ ଯାଉଚୁ କୁଆଡ଼େ ? ମୁଁ କହୁଚି, ଚୁପ୍ ହୋଇ ଘରେ ବସ ।"

କୁମର କିଛି କଥା ଶୁଣିବା ଅବସ୍ଥାରେ ନ ଥିଲା । ବାରି ପାଖ ଦ୍ୱାର ଅତିକ୍ରମ କଲାବେଳେ କହିଲା—"ଆଗ ପୋଲିସ ଆସି ଏମାନଙ୍କୁ ଆରେଷ୍ଟ କରୁ । ତା'ପରେ ଯାଇ ଯେଉଁ କଥା ।"

ଅଣାୟତ୍ତ ଝଡ଼ ଭଳି କୁମର ବାହାରିଗଲା ଘରୁ । କେତୋଟି ମିନିଟ ମଧ୍ୟରେ ଗାଁର ସମସ୍ତେ ଜାଣିଗଲେ ତା'ର ଧମକ ଓ ଶପଥ ସମ୍ପର୍କରେ । ଏଇଟା ଥିଲା ଗୋଟାଏ ଭିନ୍ନ ପ୍ରକାରର ବିପଦ । ଆମ ଗାଁ

ସେଭଳି ଆତଙ୍କିତ ହୋଇ ନ ଥିଲା ତା'ର ପୂର୍ବରୁ । ସତରେ କିଛି ଘୋଟାଏ ଘଟିଯାଇ ପାରେ । ଗାଁର ବିବାଦ ଓ ସମସ୍ୟାର ସମାଧାନ ପାଇଁ ଗାଁ ପରିସର ବାହାରେ ଥିବା ଦୁର୍ଦ୍ଧାନ୍ତ ଲୋକଙ୍କର ଶକ୍ତିର ସାହାଯ୍ୟ ନିଆ ଯାଉଛି ପ୍ରଥମ ଥର ପାଇଁ ।

ଲକ୍ଷ୍ମୀ ମାର୍କେଟରେ ଉଦ୍ଦଣ୍ଡ ନୃତ୍ୟକରି ମୁର୍ଦ୍ଦାବାଦ ଇତ୍ୟାଦି ସ୍ଲୋଗାନ ଦେଇଥିବା ପିଲାଗୁଡ଼ାକ ଥରୁଥିଲେ ଅସହାୟ ହୋଇ । ତାଙ୍କ ଭିତରୁ ଜଣେ ଦୁଇଜଣ କାନ୍ଦୁଥିଲେ ଓ କମିଜ ପିନ୍ଧି ସାରିଥିଲେ ରାତାରାତି କୌଣସି ବନ୍ଧୁ-ବାନ୍ଧବଙ୍କ ଗାଁକୁ ପଳେଇବା ପାଇଁ । ନମାଇଁ ସେମାନଙ୍କୁ ଆଶ୍ୱାସନା ଦେଉଥିଲା । ସେମାନେ କିନ୍ତୁ ତା ଉପରେ ଭରସା ରଖିପାରୁ ନ ଥିଲେ । କେଉଁଠି କିଛି ଶବ୍ଦ ହେଲେ ଡରକି ଯାଉଥିଲେ ପୋଲିସ ଆସିଗଲା ବୋଲି ଭାବି ।

ଏମାନେ ସବୁ ଘନଶ୍ୟାମ ଦାଦାଙ୍କ ପାଖରେ ପହଞ୍ଚିବାବେଳେ ଦେଖିଲେ, ସେ ନିତାନ୍ତ ମ୍ରିୟମାଣ ଓ ପରାଜିତ ଦେଖା ଯାଉଚନ୍ତି । କହିଲେ—"ମୋ ପାଖକୁ ଆସିଚ ଯେ, ମୁଁ କ'ଣ କରିପାରିବି ଏ ବ୍ୟାପାରରେ ? କଥାଟା ଅଯଥା ଅବାଟରେ ଆଗେଇଗଲା । ତୁମେ ତ ଦେଖୁଚ, ଆମ ଗାଁ ଆମମାନଙ୍କ ହାତରୁ ଖସି ଯାଉଚି ଆସ୍ତେ ଆସ୍ତେ । ତେବେ ତୁମେ କେହି ଗାଁ ଛାଡ଼ି କୁଆଡ଼େ ଯାଅନାଇଁ । ସେମିତି ହେଲେ ପରିସ୍ଥିତିଟା ଖରାପ ହୋଇଯିବ । ଦେଖିବା, କ'ଣ ହେଉଚି ।"

ରାତି ଦଶଟା ଟପି ଯାଇଥାଏ ସେତେବେଳେ । ଗୋଟେ ଲଣ୍ଠନ ଆଲରେ ପେଟେଇ ହୋଇ ଶୋଇଥିଲେ ଥାନା ଅଫିସର । ପଢ଼ୁଥିଲେ ଡିଟେକ୍‌ଟିଭ୍ ନଭେଲ । ଗୋଇନ୍ଦା ଜଣକ ଛଦ୍ମବେଶରେ ସେତେବେଳେ ପହଞ୍ଚି ସାରିଥିଲା ଦସ୍ୟୁମାନଙ୍କର ଆଡ଼୍‌ଡ଼ାରେ । ପକେଟରେ ଥିବା ରିଭଲଭର୍‌କୁ ଜାବୁଡ଼ି ଧରିଥାଏ ସେ । ଧରା ପଡ଼ିଯିବ କି ? କ'ଣ ହେବ, ତା ଅବସ୍ଥା ? କିମ୍ବା ଚଡ଼ଉ କରିବ ସେ କେତେବେଳେ ଦସ୍ୟୁ ସର୍ଦ୍ଦାର ଉପରେ ? ଉତ୍କଣ୍ଠାପୂର୍ଣ୍ଣ ମୁହୂର୍ତ୍ତ । ବେଶ୍ ଜମୁଥାଏ । ଏତିକିବେଳେ କିଏ କ୍ଷୀଣ ପହଞ୍ଚି ବ୍ୟସ୍ତ ବିବ୍ରତ ସ୍ୱରରେ ଡାକିଲା—"ଆଜ୍ଞା, ମୋତେ ରକ୍ଷା କରନ୍ତୁ । ଗାଁ ପିଲାମାନେ ମୋତେ ମାରି ପକେଇବେ ।"

ଥାନା ଅଫିସର ଆଖିପିଛୁଳାକେ ଖଟରୁ ତେଇଁପଡ଼ି ଠିଆ ହୋଇପଡ଼ିଲେ ତଳେ । ଗୋଇନ୍ଦା ସହିତ ନିଜକୁ ସେ ଏମିତି ସାମିଲ କରି ଦେଇଥିଲେ ଯେ, ତାଙ୍କର ଧାରଣା ହେଲା ଦସ୍ୟୁ ସର୍ଦ୍ଦାର କେଉଁଠି ଲୁଚି ରହିଥିଲା । ତାଙ୍କୁ କାବୁକରି ପକେଇଛି । କିଛି ସମୟ ଲାଗିଲା ତାଙ୍କୁ ନଭେଲର ପରିବେଶରୁ ନିଜକୁ ମୁକ୍ତ କରି ବାସ୍ତବତା ଭିତରେ ପହଞ୍ଚିବା ପାଇଁ । ଦେଖିଲାବେଳକୁ ତାଙ୍କ ଆଗରେ ଠିଆ ହୋଇଛି କୁମର ।

—"କ'ଣ ହେଲା ?" ବିରକ୍ତ ଓ ରାଗରେ ପଚାରିଲେ ଅଧୈର୍ଯ୍ୟ ହୋଇ ।

ସବୁକଥା କଦାକାର ଭାବରେ ଅତିରଞ୍ଜିତ କରି ବର୍ଣ୍ଣନା କଲା-ପରେ କୁମର କହିଲା—"ବର୍ତ୍ତମାନ ଆସନ୍ତୁ । ସେମାନେ ମୋ ପିଲାପିଲାଙ୍କ ଉପରେ ଆକ୍ରମଣ କରିପାରନ୍ତି । ତାଙ୍କୁ ଆଗ ହାଜତରେ ପୂରାନ୍ତୁ ।"

ଥାନା ଅଫିସର କିନ୍ତୁ ଅନୁମାନ କରିନେଲେ କଥାଟା କ'ଣ ହୋଇ ଥାଇପାରେ । କହିଲେ—"ଦେଖନ୍ତୁ, କେତେଟା ଟୋକା ଯଦି ସାମାନ୍ୟ ଉଦ୍ ଭ୍ରାନ୍ତ ହୋଇ କିଛି ସ୍ଲୋଗାନ ଦେଲେ, ସେଥିରେ ଆମେ କରିବୁ କ'ଣ ? ଆଇନ ଶୃଙ୍ଖଳା ପରିସ୍ଥିତି ବିପନ୍ନ ହୋଇନାହିଁ ତା ଦ୍ୱାରା । ଅଳ୍ପଦିନ ତଳେ ବିରୋଧୀଦଳର ଜଣେ ନେତା ସଭା କରିବା ପାଇଁ ଏଠାକୁ ଆସିଥିଲେ । ମୋର ମନେଅଛି, ପଛରେ ଠିଆହୋଇ ଅନ୍ୟମାନଙ୍କ ସହିତ ଆପଣ ସ୍ଲୋଗାନ ଦେଇଥିଲେ । ଆକାଶ ଆଡ଼କୁ ହାତ ଟେକୁଥିଲେ ମଧ୍ୟ । ଆମେ ଆପଣଙ୍କୁ ଆରେଷ୍ଟ କରିଥିଲୁ କି ? ଏଇଟା ନିତାନ୍ତ ମାମୁଲି ଘଟଣାଟେ । ପ୍ରଧାନମନ୍ତ୍ରୀଙ୍କ ଆଗରେ ଲୋକେ ବିକ୍ଷୋଭ କରୁଥିବା କଥା ଆପଣ ଖବରକାଗଜରେ ପଢ଼ିଥିବେ । ଆପଣ କେଉଁ ଖବରକାଗଜ ପଢ଼ନ୍ତି ?"

—"ଆଜ୍ଞା ? କ'ଣ କହିଲେ ?" କୁମର ଥାନା ଅଫିସରଙ୍କର କୌଣସି କଥା ଶୁଣିପାରି ନ ଥିଲା ସେ ପର୍ଯ୍ୟନ୍ତ ।

"ମୁଁ କହୁଥିଲି କ'ଣ କି, ପିଲାମାନଙ୍କୁ ବୁଝେଇ ଦିଅନ୍ତୁ । ସେମାନେ ସେମିତି କିଛି ଆଉ କରିବେ ନାହିଁ । ସେମାନଙ୍କ ସହିତ

ମିଳିମିଶି ଚଳିଲେ ଆପଣଙ୍କର ଲାଭ । କିଏ କହିବ, କାଲି ଆପଣ ମୁଖ୍ୟମନ୍ତ୍ରୀ ହୋଇଯାଇ ପାରନ୍ତି । କେଡ଼େ ସୁନ୍ଦର ଭବିଷ୍ୟତ ଅଛି ଆପଣଙ୍କର । ଏଥର ଯାଆନ୍ତୁ । ମିଛଟାରେ କାହିଁକି ଶତ୍ରୁତା କରୁଛନ୍ତି କେତେଟା ମୂର୍ଖ ଲୋକାଙ୍କ ସାଙ୍ଗରେ ? ସେଥିରେ ଆପଣଙ୍କର ପ୍ରେଷ୍ଟିଜ୍ ରହିବ ?" ଥାନା ଅଫିସର ଏତେବଡ଼ ଉପଦେଶଟେ ଦେଇସାରି ଉଟେକ୍‌ଟି ଭି ନଦେଇ ଆଉ ହାତ ବଢ଼େଇଲେ ।

କୁମରର ଧୈର୍ଯ୍ୟ ନ ଥିଲା ଆଉ କଥା ଶୁଣିବା ପାଇଁ । ଟିକିଏ ଧମକ ଦେବା ସ୍ୱରରେ କହିଲା—"ମୋତେ ସେମାନେ ବାଡ଼େଇବେ ବୋଲି ଡେଣେ ଛକିଛନ୍ତି । ଆପଣଙ୍କୁ କହିଲା ବେଳକୁ ଆପଣ କହୁଛନ୍ତି ନା, ଏଥର ଯାଆନ୍ତୁ । ତାଙ୍କ କଥା ବୁଝିବେ ନା, ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କ ପାଖକୁ ଯିବ ?"

ଥାନା ଅଫିସର ଟିକିଏ ରାଗିଗଲେ—"ଆପଣ କହିଦେବା ମାତ୍ରେ ଧାଇଁବ ଗାଁକୁ ଆପଣଙ୍କର ? ଏଫ୍.ଆଇ.ଆର୍. ଦେଇଛନ୍ତି ? ଲେଖିଆଣନ୍ତୁ ଗୋଟେ ।"

କୁମର ନିରାଶ ହୋଇ ପଡ଼ିଲା । କ'ଣଟେ ଲେଖିବା ପାଇଁ କହିଲେ ସେ ? ସେଇଟା ପୁଣି ଲେଖାଯିବ କେମିତି ? ସେଠାରୁ ଚାଲିଆସିଲା ସେ । ରାସ୍ତାଉପରେ ଠିଆ ହୋଇଥାଏ ଟ୍ରକ୍‌ଟେ । କେନ୍ଦୁଝରଗଡ଼ ଯିବ ବୋଲି । ସାଇକେଲ୍‌ଟା ଗୋଟେ ଦୋକାନରେ ଥୋଇ କୁମର ଚଢ଼ିଗଲା ଟ୍ରକ୍ ଉପରକୁ ।

ରାତି ଗୋଟାକବେଳେ ସର୍କିଟ୍ ହାଉସ୍‌ରେ ମନ୍ତ୍ରୀ ଓ ଏମ୍.ଏଲ୍.ଏ. ହାଲିଆ ହୋଇ ଖାଉଥାନ୍ତି ଓ ପିଉଥାନ୍ତି ବୋଲି କୁମର ଶୁଣିବାକୁ ପାଇଲା । କୌଣସିମତେ ରାତି କଟେଇ ଦେଇ ସେ ପୁଣି ପହଞ୍ଚିଗଲା ସର୍କିଟ୍ ହାଉସ୍‌ରେ ସକାଳ ଆଠଟା ସୁଦ୍ଧା । ମନ୍ତ୍ରୀ ଉଠି ନ ଥାନ୍ତି; କିନ୍ତୁ ସଦ୍ୟ ଜଣେ ଭକ୍ତ ଦେଇଥିବା ଷ୍ଟେଟ୍ ଏକସ୍‌ପ୍ରେସ୍ ସିଗାରେଟ୍ ପ୍ୟାକେଟରୁ ଗୋଟାଏ ଲଗାଇଥାନ୍ତି ଏମ୍.ଏଲ୍.ଏ. ଓ ଲୁଙ୍ଗିଟେ ପିନ୍ଧି ବସିଥାନ୍ତି କେନ୍ ଚେୟାରରେ । ସିଗାରେଟ୍ ଅଭ୍ୟାସ ନ ଥିବାରୁ ବଳାତ୍ ଫିଲ୍‌ଟର ଛେପରେ ଭିଜି ଯାଇଥାଏ ।

ପ୍ରାୟ କାନ୍ଦି ପକାଇଲା କୁମର ତାଙ୍କ ଆଗରେ । ମନ୍ତ୍ରୀ ଓ ତାଙ୍କ ବନ୍ଧୁଙ୍କରେ ତାଙ୍କ ଗାଁରେ ବଡ଼ ଧରଣର ମିଟିଙ୍ଗ୍ ହୋଇଥିଲା । ସେ

ଆପତ୍ତି କରିବାରୁ ତାଙ୍କୁ ମାରିବା ପାଇଁ ତଳେ ଟୋକା ଧରିସେଇ ଆସିଥିଲେ । ତାଙ୍କ ଜୀବନ ବିପଦାପନ୍ନ ହୋଇ ଯେତେ କହିଲେ ମଧ୍ୟ ଥାନା ଅଫିସର କିଛି ବୁଝିନି ନାହିଁ ।

ଏମ୍.ଏଲ୍.ଏ. କହିଲେ—"ଥାନା ଅଫିସର କ'ଣ କରିବ ?" ସେ ହାଇ ମାରିଲେ ।

—"କ'ଣ କରିବ, ମାନେ ?" ବିସ୍ମିତ ଓ ଅପଦସ୍ତ ହେଲା କୁମର । "ସେ ଟୋକାଙ୍କୁ ଆଗ ଦେଉ ଭଲ କରି ପାନେ ।" ପ୍ରସ୍ତାବ ଦେଲା କୁମର ।

—"ଇଲେକ୍‌ସନ ଅଛି ଆଗରେ ।" ଏମ୍.ଏଲ୍.ଏ. କହିଲେ— "ସେମିତି କଲେ ଚଳିବ ?"

କୁମର ପ୍ରାୟ ତାଙ୍କ ଗୋଡ଼ଧରି ପକାଇଲା । ଥାନା ଅଫିସର ଆଗ ତା' ଗାଁକୁ ଗ୍ଲଲନ୍ତୁ । ସେତିକରେ ଯଥେଷ୍ଟ ହେବ ।

"ଥାନାରେ ଫୋନ୍ ଅଛି ?" ଏମ୍.ଏଲ୍.ଏ. ପଗ୍ଭରିଲେ ।

—"ହଁ ।" ଉତ୍ସାହିତ ସ୍ୱରରେ କୁମର ଉତ୍ତର ଦେଲା । ଏମ୍.ଏଲ୍.ଏ. ନିର୍ଦ୍ଦେଶ ଦେଲେ ଯେ, ପାଞ୍ଚମିନିଟ ପାଇଁ ଥାନା ଅଫିସର ମହାଦେବପୁର ଆଡ଼ୁ ବୁଲିଆସନ୍ତୁ । ସବୁଆଡ଼କୁ କଥାଟା ପାଇବା ଭଳି ସେ କାମ କରିବେ । ତାହା ଥିଲା ଏମ୍.ଏଲ୍.ଏ. ଙ୍କର ସର୍ବଶେଷ ନିର୍ଦ୍ଦେଶନାମା ।

ଅପରାହ୍‌ଣ ପାଞ୍ଚଟାବେଳେ ତାଙ୍କ ମୋଟରସାଇକେଲ ବଉଳ ଗଛମୂଳେ ଅଟକିବା ମାନେ ଶ୍ମଶାନର ନୀରବତା ଗ୍ରାସ କଲା ଆମ ଗାଁକୁ । ବେଶ୍ କିଛିସଂଖ୍ୟକ ଲୋକ ଜମା ହୋଇ ସାରିଥିଲେ ସେତେବେଳକୁ ଭୟାତୁର ମୁହଁ ନେଇ । କିନ୍ତୁ ଥାନା ଅଫିସର ସେ ବର୍ଷର ନାହିଁ ନ ଥିବା ଗୁଳିଗୁଳି, ବୃଷ୍ଟିହୀନତା ଇତ୍ୟାଦି ସାର୍ବଜନୀନ ସମସ୍ୟା ସମ୍ପର୍କରେ କହୁଥିଲେ ଗିଲାସେ ସରବତ୍ ପିଇସାରି । ବେଶ୍ ପ୍ରସନ୍ନ ଦେଖା ଯାଉଥିଲେ ମଧ୍ୟ ରହସ୍ୟମୟ ଜଣା ପଡ଼ୁଥିଲା ତାଙ୍କ ଆଚରଣ ।

ଅନେକ ସମୟ ପରେ, ଗାଁର ସାତ-ଆଠ ଜଣ ଟୋକାଙ୍କୁ ତାଙ୍କ ସାମ୍ନାରେ ହାଜର କରାଇବା ପାଇଁ ସେ ସେତେବେଳେ

ଗାମ୍ଭୀର୍ଯ୍ୟମୂର୍ତ୍ତି ନିର୍ଦ୍ଦେଶ ଦେଲେ, ପରିବେଶଟା ଉଦ୍‌ବିଗ୍ନତା ଓ ଉତ୍କଣ୍ଠାରେ ଅଣନିଃଶ୍ୱାସୀ ହୋଇପଡ଼ିଲା । ମୂର୍ଦ୍ଧାର ଭଳି ଦେଖାଯାଉଥିଲେ ସେମାନେ । କିଂସେଇ ସାମନାରେ ଠିଆ ହେବାଭଳି ଠିଆହେଲେ କାନ୍ଦୁଣ୍ଡମାନ୍ଦୁଣ୍ଡ ହୋଇ । ସେମାନଙ୍କ ଆଡ଼ୁ ତୀକ୍ଷ୍ଣ ଦୃଷ୍ଟି ଫେରାଇ ସେ ହସିଦେଲେ ଟିକିଏ ଏବଂ ବାତାବରଣ ହାଲୁକା ହୋଇଗଲା ସେତିକିରେ । ପଚାରିଲେ —"କିରେ ? ଚଗଲା ହେଉଚ କାହିଁକି ଗାଁରେ ? ସେମିତି ଆଉ କେବେ ହେବ ନାହିଁ ।" ସେ କହିଲେ ନାହିଁ କେଉଁଠି, କିପରି ସେମାନେ ଚଗଲା ହେଉଥିଲେ । ବେଶ୍ କିଛି ସମୟର ନୀରବତା । ଗୋଟେ ପିଲାକୁ ପାଖକୁ ଡାକି କହିଲେ—"ରଜ ଆଉ ଅଳ୍ପ ଦିନ ରହିଲା । ଗୋଟେ ଦୋଳି ଗୀତ ବୋଲିଲୁ । ଶୁଣିବା !"

ସେ ପିଲା ବୁଝିପାରିଲା ନାହିଁ ତାଙ୍କ ମତଲବ । ଠିଆ ହେଲା ନୀରବରେ ଗୁରୁପଟେ ଘେରିଥିବା ମୂର୍ତ୍ତ ଲୋକଙ୍କ ଆଡ଼ୁ ଦୃଷ୍ଟି ଫେରାଇ । ଟିକିଏ ଅଧୈର୍ଯ୍ୟ ହୋଇ ସେ କହିଲେ—"କିରେ, ବୋଲ୍ ।"

—"ମୁଁ ଶିଖିନାହିଁ ।" ସେ ଟୋକା କହିଲା ।

—"କ'ଣ ତେବେ ଶିଖିଚୁ ?" ସେ ପଚାରିଲେ ।

—"ହିନ୍ଦୀ ଗୀତ ।" ଅନେକ ଦ୍ୱିଧାଗ୍ରସ୍ତ ହୋଇ ସେ କହିଲା ।

—"ଭଲ କଥା । ବୋଲ ଆମେ ଶୁଣିବୁ ।" ଆଗ୍ରହ ପ୍ରକାଶ କଲେ ଥାନା ଅଫିସର ।

ଜମା ତାଳଜ୍ଞାନ ନ ଥିବା ସେ ଟୋକା ଯେତେବେଳେ ଗୀତ ବୋଲିବା ଆରମ୍ଭ କଲା; ସେଇଟା ହିନ୍ଦୀ ଗୀତ କି ଆଉ କ'ଣ, ତାହା ଜାଣିବା ସମ୍ଭବ ନ ଥିଲା । ତା ଗୀତରୁ ଆତ୍ମରକ୍ଷା କରିବା ପାଇଁ ଥାନା ଅଫିସର ତାକୁ ଚୁପ୍ ହେବାକୁ ନିର୍ଦ୍ଦେଶ ଦେଲେ । ପକେଟରୁ ଦଶଟଙ୍କିଆ ନୋଟ୍‌ଟେ ବାହାର କରି ସେହି ସାତ ଆଠଜଣ ପିଲାଙ୍କୁ କହିଲେ— "ନିଅ । ଫିଷ୍ଟି କରିବ । ଭଲ ପିଲା ହେବ । ଫେଚକାମୀ କରିବ ନାହିଁ ।"

କହିଲେ ଏବଂ ଉଠିଲେ । କୁମର ଆଡ଼େ ଥରେ ବି ଅନେଇଲେ ନାହିଁ । କାହାକୁ କିଛି କହିଲେ ନାହିଁ । ପଳେଇଲେ ମୋଟରେ

ସାଇକେଲରେ । ଘଣ୍ଟାର ପରିସମାପ୍ତି ଏମିତି ହେବ ବୋଲି ଭାବି ନ ଥିଲେ କେହି । ଅନେକ ସମୟ ପର୍ଯ୍ୟନ୍ତ କେହି କିଛି ମନ୍ତବ୍ୟ ପ୍ରକାଶ କରିପାରି ନ ଥିଲେ । କୁମର କେତେବେଳୁ ସେ ସ୍ଥାନ ଛାଡ଼ି ପଳେଇ ଯାଇଥିଲି । ଗୋଟାଏ ଠୋକା ସ୍ପର୍ଦ୍ଧାର ସହିତ ଦଶଟଙ୍କିଆ ନୋଟ୍‌ଟା ଉପରକୁ ଟେକି ଧରିଥିଲି ବିଜୟପତାକା ଭଳି ।

ରଜ ଉପଲକ୍ଷେ ଘର-ଦ୍ୱାର ଲିପାପୋଛା ହୋଇ ପରିଚ୍ଛନ୍ନ ଦିଶୁଥାଏ । ଦିନ ଦୁଇଟାବେଳୁ ଦୋକାନ ବାରନ୍ଦାରେ ଶତରଞ୍ଜି ପକାଇ ଦେବ ଆଗ୍ରହ୍ୟ ବସିଥାନ୍ତି । ଖେଳାଳୀମାନେ ଆସିଲେ, ଅନେକ ଦିନ ପରେ, ପଶାଖେଳ ହେବ । ବସିଥାନ୍ତି ଏକୁଟିଆ ଏବଂ ଭାବୁଥାନ୍ତି ସେ ସମୟକ୍ରମେ ସବୁକଥା ବଦଳି ଯାଉଚି । ବଦଳି ଯାଉଚି ଖୁବ୍ ଦ୍ରୁତ ଗତିରେ ।

କିଛିବର୍ଷ ପୂର୍ବେ ପହିଲି ରଜରେ ଗାଁ କମ୍ପୁଥିଲି ଏତେବେଳକୁ । ପ୍ରକୃତରେ ରଜ ପୂର୍ବଦିନରୁ ହିଁ ଜମିଆସୁଥିଲି ରଜ । ଦୋଳିର କେଁକଟର ଧ୍ୱନି ସହିତ ଫେଣ୍ଟି ହୋଇଯାଉଥିଲି ସମ୍ମିଳିତ ସ୍ୱରର ଦୋଳି ଗୀତ । ଗୀତ ବୋଲୁଥିଲେ ସମସ୍ତେ, ଗ୍ରୋଟ ଛୁଆଠୁ ଆରମ୍ଭ କରି ନିତାନ୍ତ ବୟସ୍କ ଲୋକ ପର୍ଯ୍ୟନ୍ତ । ନାରୀ ଓ ପୁରୁଷ କଣ୍ଠର ଦୁଇଟି ସୁର ମିଶି ଯାଉଥିଲି ଏକାଠି ।

ମକରଯାତ୍ରା ପଡ଼ିଆ ପାଖରେ ଥିବା ପ୍ରକାଣ୍ଡ ବରଗଛର ବଡ଼ ବଡ଼ ଡାଳ ଭାଙ୍ଗିଯାଇଚି ଗତବର୍ଷ ତୋଫାନରେ । ସେଇଟା ଥିଲି ଗାଁ ରଜପର୍ବର କେନ୍ଦ୍ରସ୍ଥଳ । ତା ପାଖରେ ଆମ୍ବ ଓ ବରଗଛ ମିଶିଥିବା ଗଛମୂଳେ ଝୁଆରି ହେଉଚି ଦୋଳି ଗତବର୍ଷଠୁ । ଦି'ପହରେ ସେଠାରେ ଖରାପଡ଼େ ବୋଲି ବେଶୀ ଲୋକ ଯାଆନ୍ତି ନାହିଁ ସେଠାକୁ । ଦୋଳି ଝୁଆରିବା ସକାଶେ ଦରକାର ହେଉଥିବା କାଠ ମିଳୁନାହିଁ ପାଖ-ଆଖିରେ । ଜଙ୍ଗଲ ସଫା ହୋଇଯାଇ ଥିବାରୁ ଆମ ଗାଁରୁ ତିନି-ଚାରି କିଲୋମିଟର ଦୂରରେ ଥିବା ଗାଁ ସବୁ ଦେଖାଯାଉଚି । ବିଶେଷ ଉତ୍ସାହ ନାହିଁ କେଉଁଆଡ଼େ । ତିନି-ଚାରିଟା ଛୁଆ ଏଇ ପାଖରେ କେଉଁଠି ଦୋଳି ଗୀତ ବୋଲୁଚନ୍ତି । ଗୋଟାଏ ପରମ୍ପରାର ମୁମୂର୍ଷୁ ପ୍ରତିଧ୍ୱନି ଭଳି ଶୁଭୁଚି

ସେ ଗୀତ । କିଛିବର୍ଷ ହେଲା କେବଳ ତାସ୍-ପଶା ଖେଳରେ ସରିଯାଉଛି ରଜପର୍ବ । କେଉଁଠି କିଛି ଶୃଙ୍ଖଳା ନାହିଁ । କାହିଁକି କେଜାଣି ଲୋକଗୁଡ଼ାକ ସବୁବେଳେ ଦୁଃଖୀ ଦେଖାଯାଉଛନ୍ତି । ନାହିଁ ନ ଥିବା ଅଭାବର ଓଜନରେ ନଇଁ ଯାଉଛନ୍ତି ଦିନ ପରେ ଦିନ । ଏକୁଟିଆ ହୋଇଯାଉଛନ୍ତି ସମସ୍ତେ ଏବଂ ନିଜ ଦୁଃଖ ଭିତରେ ରହି ଖାଲି ଆଉଟି ପାଉଟି ହେଉଛନ୍ତି ।

ବେଶ୍ କିଛିବର୍ଷ ହେଲା ଗ୍ରେଟବ୍ରିଟ୍ସ ସାହେବଙ୍କ ପଣ୍ଡିତମାନେ ଆଉ ଆସୁ ନାହାନ୍ତି ଗାଁକୁ । ମୁଖ୍ୟତଃ ଏଇଥିପାଇଁ ପଶାଖେଳ ସ୍ଥଗିତ ରହୁଛି । ଗତକାଲି କୀର୍ତ୍ତନ ମଉସାଙ୍କର ଦୁଇ ସମୁଧି ପହଞ୍ଚିଛନ୍ତି ବୋଲି ଖେଳ ପାଇଁ ପ୍ରସ୍ତୁତ ହୋଇ ବସିଛନ୍ତି ଦେବ ଆଗ୍ରହ୍ୟ । ସେମାନେ ଦୁଇଟାବେଳେ ପହଞ୍ଚିବେ ବୋଲି କହିଥିଲେ । କେତେଟା ବାଜିଲାଣି କେଜାଣି ? ତାଙ୍କର ପକେଟ ଓ୍ୱାଚ୍‌ଟା ତ ବନ୍ଦ ହୋଇ ବାକ୍ସ ଭିତରେ ପଡ଼ିଛି ଅନେକ ଦିନରୁ । ଆଜି ସଜାଡ଼ିବେ କାଲି ସଜାଡ଼ିବେ ହୋଇ କିଛି କରିପାରୁ ନାହାନ୍ତି । ଘଡ଼ିଟା ବନ୍ଦହେବା ପରଠାରୁ ଗୋଟାଏ ସ୍ପନ୍ଦନ ନୀରବ ହୋଇଗଲା ଭଳି ଲାଗୁଛି । ସେଇଟା ଏବେ ଦିଶୁଛି ଗୋଟାଏ ମୂର୍ଚ୍ଛାର ଭଳି । କଣ୍ଟା ତିନଟାଯାକ ହାମୁଡ଼େଇ ହୋଇ ରହିଛନ୍ତି ବିଭିନ୍ନ ସ୍ଥାନରେ, ଲାସ୍‌ର ହାତ ଗୋଡ଼ ଯେମିତି ସ୍ତବ୍‌ଧ ହୋଇ ପଡ଼ି ରହେ । ସ୍ତ୍ରୀ'ପୂର୍ବରୁ ଘଡ଼ି ବନ୍ଦ ହେବାର ପରଦିନ ସେ ବାହାରି ଯାଉଥିଲେ କେନ୍ଦୁଝରଗଡ଼ ସଜାଡ଼ିବା ପାଇଁ । ଥରେ-ଦୁଇଥର ସେ ସାଙ୍ଗରେ ନେଇ ଯାଇଥିଲେ ଇନ୍ଦୁ ଓ ଝିଅକୁ । ସିନେମା ଦେଖାହୁଏ, ଲୁଗାପଟା, ଔଷଧ, ଏପରିକି ବାସ୍ନା ତେଲ ମଧ୍ୟ କଣାହୁଏ ।

ଏକଦା ଯେଉଁ ଛୁଆମାନେ ଅଝଟ ହୋଇ ଗହା ଧରି କାନ୍ଦିଲେ —ଏଇ ଦୋକାମା ଆସିଲା ଛୁରୀ ଧରି—କାଟି ପକେଇବ--ଚୁପ୍ ହ— ବୋଲି କହିଦେଲେ ସତକୁସତ ସୁନାପିଲା ଭଳି ଚୁପ୍ ହୋଇ ଯାଉଥିଲେ, ସେମାନେ ତାଙ୍କ ସାମନାରେ ଯାଉଛନ୍ତି । କେଉଁଆଡ଼େ ଯାଉଛ ପିଲେ ବୋଲି ପ୍ରଶ୍ନଟା କାହିଁ କେଉଁଦିନୁ ପୋତିହୋଇ ପଡ଼ିଲାଣି ତାଙ୍କ ଭିତରେ । ସେମାନଙ୍କୁ ସେ ଦେଖନ୍ତି ଦୁରନ୍ତ ଦୃଷ୍ଟିରେ, ପ୍ରାୟ ଆବେଗହୀନ, ଅନ୍ୟ-

ମନସ୍କ ହୋଇ । ଆସ ପିଲେ, ବସ୍କୁଟ-ଲଜେନ୍ସ ନେବ ବୋଲି କଥା ପଦକ ସେ ଭୁଲି ସାରିଲେଣି ଅନେକ ଦିନୁ । କିଛୁ ଗୋଟାଏ ସୁଅ, ଗୋଟାଏ ସବୁଜମା ସତେଯେପରି ଶୁଖିଯାଇଚି ତାଙ୍କ ଭିତରେ, ଏ ଗାଁ ଯେମିତି ଶୁଖିଯାଉଚି, ରଜପର୍ବ ଯେମିତି ଶୁଖିଯାଉଚି; ବାସ୍ତବିକ ଯେମିତି ଶୁଖିଯାଉଚି ତାଙ୍କ ମୁହଁ ଓ ଗାଁ ମାଟି ।

ଚାଲିଥିଲି ପଶାଖେଳ । ଆଗଭଳି ଦେଖଣାହାରୀଙ୍କ ଦ୍ୱାରା ସ୍ଥାନଟା ଭରପୂର ହେଉନାହିଁ । ତାଙ୍କ ଭିତରୁ ମଧ୍ୟ ଉଭୁରି ଆସୁନାହିଁ ପୂର୍ବର ସେଇ ବହ୍ନିଳିତ ଆବେଗ, ଯାହା ରୂପାନ୍ତରିତ ହୋଇ ଯାଉଥିଲି ଅପୂର୍ବ ଯାତ୍ରା ଡାଇଲଗ୍‌ରେ । ସେ ପ୍ରକୃତରେ ଚେଷ୍ଟାକଲେ ବହୁବର୍ଷ ପରେ ସେଇଭଳି କିଛି ଉଚ୍ଚାରଣ କରିବା ପାଇଁ । ଜମା ହେଲାନାହିଁ । ସେ ଅନୁଭବ କଲେ ନାହିଁ ଅତୀତର ସେଇ ରୋମାଞ୍ଚକର ଶିହରଣ, ଜୀବନର ସେଇ ରାଜକୀୟ ବିକିରଣ । ପଶାକାଠି ଗଡ଼ୁଥାଏ । କେବଳ ମଝିରେ ମଝିରେ ଦେବ ଆଚାର୍ଯ୍ୟଙ୍କର ଦୁଇ ହାତ ଥରୁଥାଏ ଯାହା ।

ଖମଣ ସାହିରୁ ଉଠିଯାଇଥିବା ହରେକୃଷ୍ଣ ପହଞ୍ଚିଗଲେ ପଶାଖେଳ ଆସର ପାଖରେ । ଦୁଇହାତ ରଖିଥାନ୍ତି ଅଣ୍ଟା ଉପରେ । ତାସ୍ ଖେଳିବାରେ ଧୁରନ୍ଧର ହରେକୃଷ୍ଣ ଅନେକ ବର୍ଷ ପୂର୍ବେ ରଜ ଏବଂ ଅଷ୍ଟମୀ ଭଳି ଦିନମାନଙ୍କରେ ଖାସି କାଟୁଥିଲେ । ଯେତିକି ଟଙ୍କାରେ ଖାସି କଣା ଯାଇଥାଏ, ସେତିକି କଟା ମାଂସ ଭାଗ ହୁଏ । କାହାର ଚାରିଅଣାର ମାଂସ ଦରକାର ହେଲେ ଗୋଟିଏ ଭାଗକୁ ସମାନ ଚାରୋଟି ଭାଗରେ ବିଭକ୍ତ କରିବାକୁ ପଡ଼ୁଥିଲା । ଦିନେ ସେ କହୁଥିଲେ—"ଯୁଗ କ'ଣ ହେଲାଣି ଦେଖ । ଆମ ଅମଳରେ ହଳେ ବଳଦ ପାଇଁ ଯେତିକି ଟଙ୍କା ଦରକାର ହେଉଥିଲା, ସେତିକି ଟଙ୍କାରେ ଆଜିକାଲି ଖାସିଟେ ପାଇବା ମୁସ୍କିଲ । ସେଥିରେ ପୁଣି ସୁନା ରୂପା ଭଳି ମାଂସ ଓଜନ ହେଉଚି । କ'ଣ ଟି ସେଇଟା ? କିଲୋରେ । ସେର ଫେର କେତେ ବର୍ଷରୁ ଗଲାଣି ଉଭେଇ କେଉଁଆଡ଼େ ।" ଭାଗବତ ସେଟ୍‌ଟିଏ କିଣିଚନ୍ତି । କହାତ ଅସୁବିଧା ନ ହେଲେ ସଞ୍ଜବେଳେ ନାତୁଣୀ ଅଧ୍ୟାଏ ଭାଗବତ ପଢ଼େ । ଚୁପ୍‌ଚାପ୍ ବସି ଶୁଣନ୍ତି । କେଉଁ ଜାଗାରେ ଭଲ ଲାଗିଲେ କିମ୍ବା ବୁଝି ନ ପାରିଲେ ଆଉ ଥରେ ପଢ଼ିବାକୁ କହନ୍ତି ।

—"ପିଉସା ବସ୍ । ଟିଆହେଲୁ କାହିଁକି ?" ଦେଖଣାହାରିଙ୍କ ମଧ୍ୟରୁ କେହି ଜଣେ କହିଲା ।

—"ବସିବି କ'ଣ ପାଇଁ ? ଏଠି ତ ଭୂମର ପଶାପାଲି ଚାଲିଚି । ଭାବିଥିଲି ତାସ୍‌ଖେଳ ହେଉଥିବ । ଯାଏଁ, ଦ'ବାଜି ଖେଳି ଆସେ ।" ଟିକିଏ ହତାଶା ଥିଲା ତାଙ୍କ ସ୍ୱରରେ ।

—"ତାସ୍ ଖେଳିବୁ ତ ? ଚାଲ, ଲକ୍ଷ୍ମୀ ମାର୍କେଟକୁ । ଚାରି-ପାଞ୍ଚଟା ଜାଗାରେ ତାସ୍ ଖେଳ ଚାଲିଚି ସେଠାରେ । ମଝିରେ ବାଜୁଚି ରେଡ଼ିଓ ।" ପ୍ରସ୍ତାବ ଦିଆଗଲା ହରେକୃଷ୍ଣଙ୍କୁ ।

ସେ କିଛି କହିଲେ ନାହିଁ । ବାରନ୍ଦା ଉପରକୁ ଉଠିଆସି ବସିଲେ । ଦୁଇ ହାତରେ ଗାମୁଛା ଧରି ମୁହଁ ଓ ଚନ୍ଦାମୁଣ୍ଡ ପୋଛିଲେ । କହିଲେ—"ନାହିଁ, ସେଠାକୁ ଯିବିନାହିଁ । କିଛିଦିନ ତଳେ ଯାଇଥିଲି ସେଠାକୁ । ଦଶ ପନ୍ଦରଟା ଟୋକା ଖାଲି ହେଁ ହେଁ ଫେଁ ଫେଁ ହେଉଥାନ୍ତି ଯେ କାହିଁରେ କ'ଣ । ଫୁସ୍‌ଫାସ୍ ହୋଇ କ'ଣ କହୁଥାନ୍ତି ଆଉ ହସି ହସି ଗଡ଼ି ଯାଉଥାନ୍ତି । ତାଙ୍କ ଭିତରୁ ଦଳେ କେଜାଣି ଚାରି ପାଞ୍ଚ ମାସ ହେଲା ଖିଅର ହୋଇ ନ ଥାନ୍ତି କି ତେଲ ଲଗେଇ ନ ଥାନ୍ତି । ଲୁଙ୍ଗି ପିନ୍ଧା, ଲମ୍ବା ଚୁଟି ଆଉ କଲି ରଖିଥିବା ଏଇ ନଶୁଆ ଟୋକାଗୁଡ଼ାକ ଯାହା ହେଉଥାନ୍ତି ସେ'ଦିନ ! ସେ ସ୍ଥାନ ଆମଭଳି ପୁରୁଣାକାଳିଆ ଲୋକଙ୍କ ପାଇଁ ନୁହଁ; ନବ୍ୟସଭ୍ୟ ଫେସନବାଲା ଟୋକାଙ୍କର ଆଡ଼୍‌ଡ଼ାସ୍ଥଳୀ ହେଉଚି ସେଇ ଜାଗା ।"

ପଶାଖେଳ ଚାଲିଥିଲା । ମଝିରେ ମଝିରେ ଦରକାର ହେଉଥିବା ନିର୍ଦ୍ଦିଷ୍ଟ ଦାନଟିଏ ପାଇବା ସକାଶେ ପଶାକାଠିକୁ ନିର୍ଦ୍ଦେଶ ଦିଆଯାଉଥିଲା ଉଚ୍ଚସ୍ୱରରେ ।

ରାସ୍ତା ଉପରେ ଛାଇଗୁଡ଼ାକ ଲମ୍ବା ହୋଇଯାଉ ଥିଲେ । ପଶାଖେଳ ସରିବାର ସମ୍ଭାବନା ନ ଥିଲା । ସେତିକବେଳେ ସେଠାରେ ଯେଉଁ ଲୋକଟି ପହଞ୍ଚିଗଲା, ତାକୁ ଚିହ୍ନିବା ପାଇଁ କିଛି ସମୟ ଲାଗିଥିଲା ସମସ୍ତଙ୍କ ପାଇଁ । ଅନନ୍ତ କିଛିଦିନ ହେଲା କୁଆଡ଼େ କେଜାଣି ପଳେଇଥିଲା କାହାକୁ କିଛି ନ କହି । କାହାକୁ ବା କହିଥାନ୍ତା ସତରେ । ଏକମାତ୍ର

ଆପଣାର ଲୋକ ଦେବ ଆଗ୍ରୱାଲଙ୍କ ସହିତ ଅନେକ ଦିନରୁ ତା'ର କୌଣସି ସମ୍ପର୍କ ନ ଥିଲା ।

ନିତାନ୍ତ ଅପରିଷ୍କାର ଦେଖା ଯାଉଥିଲା ଅନନ୍ତ । ଦଶ ପନ୍ଦର ଦିନର ଧଳା-କଳା ମିଶା ନିଶ ଦାଢ଼ୀ । ଇତସ୍ତତଃ ରୁଖୁରା ମଇଳା କେଶ । ମଇଳା ଚିରା ଲୁଗା ଓ ଗାମୁଛା । ତମ୍ବାଳିଆ ଦେହ କଳା ଦିଶୁଚି । ଆଣ୍ଠୁ ପର୍ଯ୍ୟନ୍ତ ଧୂଳି-ଧୂସରିତ । ହାଡ଼ୁଆ ଦେହ । ତା' ବୟସର ସବୁ ଲୋକ ସକ୍ରିୟ ଓ କାର୍ଯ୍ୟକ୍ଷମ ଅଛନ୍ତି । କିନ୍ତୁ କାହିଁକି କେଜାଣି, ଅନନ୍ତ ବୁଢ଼ା ହୋଇଗଲା ନିର୍ଦ୍ଦିଷ୍ଟ ସମୟ ଆଗରୁ । ପାଦ ଭଲକରି ପକେଇ ପାରୁନାହିଁ ପୃଥିବୀ ଉପରେ ।

କାହିଁ କେଉଁ ଯୁଗରୁ ଅଥବ ହୋଇ ଶୋଇ ପଡ଼ିଥିବା କରୁଣ ମୂର୍ଚ୍ଛନାଟେ ସଞ୍ଚରିଗଲା ଦେବ ଆଗ୍ରୱାଲଙ୍କ ପ୍ରତି ରକ୍ତକଣିକା ଓ ଶିରା-ପ୍ରଶିରାରେ । ସବୁଜ ଅତୀତର ଧ୍ୱଂସାବଶେଷ ସତେ ଯେପରି ଗୁହାଁରିହିଥିଲା ତାଙ୍କ ଆଡ଼କୁ ମୁରୁର୍ଣ ମୁହଁ ଉପରେ ତୃପ୍ତିର ହସ ନେଇ । ଦେବ ଆଗ୍ରୱାଲ ପଣାକାଠି ଧରି ଚାହିଁ ରହିଥିଲେ ସେଇ ମୁହଁଟିକୁ । ସେଇଭଳି ଚାହିଁଥିବା ଅବସ୍ଥାରେ ଗୋଟାଏ କମ୍ପନ ସୃଷ୍ଟି ହୋଇଗଲା ତାଙ୍କର ଦୁଇ ଓଠ ଓ ତଣ୍ଟି ପାଖରେ । ସମସ୍ତ ଧ୍ୱଂସାବଶେଷର ଏକମାତ୍ର ପରିଚୟ ଓ ପ୍ରତୀକ ହୋଇ ସେ ଲୋକଟା ବସିଥିଲା ଏବଂ ସ୍ମିତ ହସୁଥିଲା ।—"ତୁ ଅନନ୍ତ, ନା ? କୁଆଡ଼େ ଥିଲୁ ଏତେ ଦିନଯାଏ ?" ଦେବ ଆଗ୍ରୱାଲଙ୍କର ଏହି ପ୍ରଶ୍ନଟି ଅନ୍ୟ ଜଣେ ପଚାରିଲା ।—"ଏମିତି ବୁଲୁଚି ।" ସେ କହିଲା ବିନା ପ୍ରତିବାଦରେ ଭାଗ୍ୟକୁ ଗ୍ରହଣ କରିନେଇଥିବା ଲୋକଭଳି । "ବହୁ ଦୂର ଗାଁରେ ଜଣେ ସାଧୁ ଅଛନ୍ତି ବୋଲି ଶୁଣିଲି । ଯାଇଥିଲି ତାଙ୍କ ପାଖକୁ । ରାଧାକାନ୍ତ କେଉଁଠି ଭଲରେ ଅଛି । ଫେରିବାରେ ଆହୁରି ତା'ର ଡେରି ହେବ ବୋଲି କହିଲେ । ତା'ପରେ ଏ ଗାଁ ସେ ଗାଁ ହୋଇ ଏଇକ୍ଷଣି ଫେରୁଚି ।

ଚିଲମ ପ୍ରସ୍ତୁତ କର, ଗଞ୍ଜେଇରେ ମିଶା ସିଗାରେଟ୍‌ର ତମାଖୁ— ଆଦେଶଟା ପ୍ରାୟ ପହଞ୍ଚିଯାଇଥିଲା ଦେବ ଆଗ୍ରୱାଲଙ୍କ ଜିଭ ପାଖକୁ; କିନ୍ତୁ

ଆପଣା ସ୍ତ୍ରୀଏ ଏ ଆଦେଶ ନିଜକୁ ଫେରାଇ ନେଲା ତାଙ୍କ ଭିତରକୁ । ବାସ୍ତବିକ୍ ରଜ ପାଇଁ ସେ କିଛି ଗଞ୍ଜେଇ ଆଣିଚନ୍ତି, କିନ୍ତୁ ଅନନ୍ତକୁ କହିପାରିଲେ ନାହିଁ ତାହା ପ୍ରସ୍ତୁତ କରିବାକୁ ।

—"ଭୋକ ଲାଗିଲାଣି", ସେ କହିଲା । "ତୁମ ଘରେ ଚକୁଳି ପିଠା ହୋଇଥିବ । ଖଣ୍ଡେ ଖାଇ ପାରିଲେ ଯାଇ ଦେହରେ ପ୍ରାଣ ପଶିବ ।" ମୁହୂର୍ତ୍ତେ ଡେରି ନ କରି ସେ ଘର ଆଡ଼କୁ ଗଲା ।

ସେ ଯିବା ପରେ ଦେବ ଆଚାର୍ଯ୍ୟ ଦେଖଣାହାରୀଙ୍କ ମଧ୍ୟରୁ ଜଣକୁ କହିଲେ ଚିଲମ ରେଡ଼ି କରିବା ପାଇଁ ।

ସନ୍ଧ୍ୟା ସାତଟା ସୁଦ୍ଧା ପଶାଖେଳ ଭାଙ୍ଗିଲା । ପଳେଇ ଗଲେ ସେ ଯୁଆଡ଼େ । ଦେବ ଆଚାର୍ଯ୍ୟ ସଜାଡ଼ି ରଖିଲେ ପଶା ପାଲି । ଶତରଞ୍ଜି-ଗୁଡ଼ାକୁ ଭଙ୍ଗାଭଙ୍ଗି କଲେ । ଏ କାମ ଅନନ୍ତର ଥିଲା । ଅନନ୍ତ ଅଛି, କିନ୍ତୁ କାମଟା ତା ହାତରୁ ହସ୍ତାନ୍ତର ହୋଇ ଯାଇଚି । ଦୋକାନରେ ସନ୍ଧ୍ୟା ଧୂପ ଦେଲେ ଗୋଡ଼ହାତ ଧୋଇ ହେବା ପରେ । ଜଞ୍ଜିରରେ ଓହଳାଇ ଦେଲେ ଲଣ୍ଠନ । ବିଡ଼ି, ଦୋକ୍ତା, ଲୁଣ ଇତ୍ୟାଦି ବିକଲେ ଗରାଖମାନଙ୍କୁ । ରଜ ସକାଶେ ବେଶୀ ବିକିବଟା ନାହିଁ । ଶୂନ୍‌ଶାନ୍ ହୋଇଗଲା ସବୁ । ବର୍ତ୍ତମାନ ଦୋଳି ଗୀତ ଶୁଭୁଚି ଅନେକ ଦୂରରୁ, ଅନେକ କଣ୍ଠରୁ ।

ଦେବ ଆଚାର୍ଯ୍ୟ ଆସିଲେ ଘରକୁ । ପିଣ୍ଡାରେ ବସିଚି ଅନନ୍ତ । ଶାଳପତ୍ରରେ ତିଆରି ହୋଇଥିବା ଗୋଟିଏ ଖଲି ତା ସାମନାରେ । ସେ ପିଠା ଖାଉଚି ଗୁଡ଼ ସହିତ । ଦେବ ଆଚାର୍ଯ୍ୟ ଯଥେଷ୍ଟ ଆଶ୍ୱସ୍ତ ହେଲେ । ଆଗ୍ରହ ଓ ସହାନୁଭୂତି ନେଇ ଇନ୍ଦୁ ଠିଆ ହୋଇଥିଲା ସେଠେଇ ଘର ଦରଜାକୁ ଧରି ।

—"ଆଉ ଗୋଟିଏ ପିଠା ଦେବି ?" ସେ ପଚାରିଲା ।

—"ନାହିଁ । ପେଟ ହୋଇଗଲାଣି ।" ଅନନ୍ତ ସନ୍ତୋଷରେ

**ସ୍ୱଳ୍ପ କହିଲା** ।

ଟିକଏ ଇତସ୍ତତଃ ହେଲା ଇନ୍ଦୁ । ପରୁଚିବ କି, ରାଧାକାନ୍ତ କଥା ? କାହିଁକି କେଜାଣି, ସେ ଚୌକାଠ ତାଙ୍କ ସ୍ମୃତିରେ ଅତୁଟ ରହିଛି ଆଜଯାଏ । ଏ ଗାଁକୁ ଆସିବାର କେତେଟା ଦିନ ପରେ ସେ ମୁଗ୍ଧ ହୋଇ କହିପକାଇଥିଲା––"ତୁମେ ସତରେ ଭାରି ସୁନ୍ଦର ।" ଆଉ ଥରେ ତା'ର ହାତ ଉପରେ ପାପୁଲି ବୁଲାଇ ଆଣି ରାଧାକାନ୍ତ ମନ୍ତବ୍ୟ ବାଢ଼ିଥିଲା—"ତୁମଭଳି ଏତେ ଗୋରା ମଣିଷ ଆଉ କେହି ନାହାନ୍ତି ଏ ଗାଁରେ । କେଡ଼େ ନରମ ତୁମ ହାତ !" ଏଭଳି କଥା କେହି କହିନାହାନ୍ତି ଆଜି ପର୍ଯ୍ୟନ୍ତ, ଦେବ ଆଚାର୍ଯ୍ୟ ବି ନୁହନ୍ତି । ସେ ବୁଝିପାରି ନାହିଁ, ଗୋଟାଏ ଅପରିଣତ ବୟସର ପିଲା ଏ ଦୁଇଟି କହିଥିବା କଥା ଭିତରେ ଏମିତି କ'ଣ ଅଛି । ଅଥଚ ବେଳେବେଳେ ଏ କଥା ମନେପଡ଼େ, ଗୋଟାଏ ଶିହରଣ ସ୍ୱର ସୃଷ୍ଟି କରେ ତାଙ୍କ ଭିତରେ । ମନେ ପଡ଼ଯାଏ, ରାଧାକାନ୍ତର ସେଇ ବିସ୍ମୟାଚ୍ଛନ୍ନ ସରଳ ମୁହଁଟି ।

—"ତୁମ ରାଧାକାନ୍ତର କୌଣସି ଖବର ମିଳାଲା ନାହିଁ ?" ସେ ପଚାରି ଦେଲା ।

କିଛି ସମୟ ପାଇଁ ହାତ ଅଟକି ଗଲା ଅନନ୍ତର । ତାକୁ ବୋଧହୁଏ ସଂଘର୍ଷ କରିବାକୁ ପଡ଼ିଲା ଉଛୁଳି ଆସୁଥିବା ଆବେଗକୁ ମୁକ୍ତ ନ କରିବା ସକାଶେ । ତା'ପରେ ପ୍ରାୟ ସହଜ ସ୍ୱରରେ ସେ କହିଲା ସାଧୁଙ୍କ କଥା ଓ ତାଙ୍କର ଭବିଷ୍ୟତବାଣୀ । ଆତ୍ମୀୟତାର ଏହି ପରିବେଶ ବେଶ୍ ଭଲ ଲାଗୁଥିଲା ଦେବ ଆଚାର୍ଯ୍ୟଙ୍କୁ । ସେ କହିଲେ—"ଅନନ୍ତ, ତୁ ଆଜି ରାତିରେ ଆ । ଏଇଠି ଖାଇବୁ ।"

—"ମୁଁ ଆଗରୁ ତାଙ୍କୁ କହି ସାରିଛି", ଇନ୍ଦୁ କହିଲା ।

ଅନନ୍ତ ତଥାପି ଖାଇସାରି ନ ଥାଏ । ଦେବ ଆଚାର୍ଯ୍ୟ ବାହାରି ଆସିଲେ । ଲକ୍ଷ୍ମୀ ମାର୍କେଟ ବାସ୍ତବିକ ଆଲୋକିତ ଓ କୋଳାହଳମୟ । ସାମନାରେ ଗୋଟାଏ ଷ୍ଟୁଲ ଉପରେ ବୋଧହୁଏ ମହାଦେବଙ୍କ ପେଟ୍ରୋମାକ୍ସଟିଏ ଜଳୁଥାଏ । ତିନି-ଚାରିଟା ଦଳ ତାସ୍ ଖେଳୁଥାନ୍ତି । ସେମାନଙ୍କର ଉଚ୍ଚ ସ୍ୱରର ଯୁକ୍ତି ତର୍କ, ହୋ ହୋ ହସରେ ମୁଖରିତ ହୋଇଯାଇଥାଏ ଚଯ୍ ଅଞ୍ଚଳ । ରେଡ଼ିଓରେ କ'ଣ ବାଜୁଛି, ତାହା

ଶୁଣାଯାଉ ନ ଥାଏ ଜମା । କେହି ଆଗ୍ରହୀ ନ ଥିଲେ ସେଥିପ୍ରତି । କିଛି ସଂଖ୍ୟକ ଦର୍ଶକ ଉପଭୋଗ କରୁଥାନ୍ତି ପହିଲି ରଜକୁ ସେଇଠି ।

ତାଙ୍କୁ ଦେଖିବା ମାତ୍ରେ କେହି ଜଣେ ଆଗ୍ରହ ଓ ଶ୍ରଦ୍ଧାର ସହିତ କହିଲି—"ଆରେ ଆରେ, ଦେବ ଅଜା ଯେ ! ତୁମ ମଉଜ ଛାଡ଼ି ତୁମେ ଏଣେ କୁଆଡ଼େ ? ଆସ ଆସ, ଖେଳିବ ?" ଆହୁରି ଚାରି-ପାଞ୍ଚ ଜଣ କହି ପକାଇଲେ—"ହଁ ହଁ, ଆସ, ଖେଳିବ ।"

ବେଶ୍ ଭଲଲାଗିଲି ତାଙ୍କୁ । କାମ ଅଛି ପିଲେ, ତୁମେ ଖେଳ, କହି ସେ ଆଗେଇଲେ ଲକ୍ଷ୍ମୀ ମାର୍କେଟ୍ ଆଡ଼େ । ନମାଇଁର ସାନଭାଇ ନନ୍ଦାର ବ୍ୟସ୍ତଥିଲି ବିକି ବଟା କରିବାରେ । ସେ କହିଲି ଯେ ନନା ଘରେ ଥିବେ । ଘଟଗାଁ ଯାଇଥିଲେ । ଫେରି ଆସିଥିବେ । ମୁହଁ ଫେରାଇବା ପୂର୍ବରୁ ଦେବ ଆଗ୍ରହୀ ଥିଲି ଥରେ ଦେଖିଦେଲେ ଦୋକାନକୁ । ଯାଁ' ତୁଳନାରେ ତାଙ୍କ ଦୋକାନ ବାସ୍ତବିକ କେଡ଼େ ହାସ୍ୟାସ୍ପଦ । ତୁଳନା କରାଯାଇ ପାରେନା କୌଣସି ଦିଗରୁ । ମାଲ ଭର୍ତ୍ତି ହୋଇଛି । ସେ ଦେଖିଥିବା ଯେ କୌଣସି ଦୋକାନ ସହିତ ସମକକ୍ଷ ହୋଇପାରେ । କାନ୍ଥ ସାରା ଟଙ୍ଗା ହୋଇଛି ମୁଖ୍ୟତଃ ଅଧା ଲଙ୍ଗଳା ଝିଅମାନଙ୍କର ଉତ୍କଟ ରୁଚିହୀନ ଫଟୋ ସମ୍ବଳିତ କ୍ୟାଲେଣ୍ଡରର ଗୁଡ଼ାଏ । ଏମାନଙ୍କ ତୁଳନାରେ ବହୁଦିନରୁ ତାଙ୍କ ଦୋକାନରେ ଥିବା ଦେବଦେବୀଙ୍କର ତାରିଖ ବିହୀନ କ୍ୟାଲେଣ୍ଡରର ପୁରୁଣା ଓ ମଇଳା ଜଣା ପଡ଼ୁଛି ।

ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି ସେ ତଳକୁ ଓହ୍ଲାଇଲେ । ଠିଆ ହେଲେ ତାସ୍ ଆସର ପାଖରେ । କେହି ଜଣେ ତାଙ୍କ ହାତ ଧରି ଜୋରକରି ବସେଇ ଦେଲି ତଳେ ଏବଂ ବସିବା ମାତ୍ରେ ଠିଆ ହୋଇ ପଡ଼ିଲେ ସେ କାମର ବାହାନା କରି । କେତେଟା ଟୋକାଙ୍କ ପାଟିରୁ ସଦ୍ୟ ପିଆଯାଇଥିବା ହାଣ୍ଡିଆ ଗନ୍ଧ ବାହାରୁଥିଲି । ଏଇ ମଦ ପିଇ କୋହ୍ଲ ସମ୍ପ୍ରଦାୟର ଲୋକମାନେ ମାଦଳ ଓ ନାଗରା ଧରି ଜନ୍ମ ଆଲୁଅ-ଭଜା ଧୂଳି ଧୂସରିତ ପଡ଼ିଆରେ ନାଚନ୍ତି । ତାଙ୍କ ଦୋକାନ ବାରନ୍ଦାର ଗଞ୍ଜେଇ ଧୂଆଁ କିନ୍ତୁ ତାଙ୍କୁ ଜଣା ପଡ଼ିଲି ଆଭିଜାତ୍ୟପୂର୍ଣ୍ଣ । ଲକ୍ଷ୍ମୀ

ମାର୍କେଟ ଓ ତାଙ୍କ ଦୋକାନ ମଧ୍ୟରେ ରହିଥିଲା ଅନେକ ପାର୍ଥକ୍ୟ । ଗୋଟାଏ ସ୍ପୃ ରୁଷର ବ୍ୟବଧାନ ।

ନମାଇଁ ଘରେ ଥିଲା । ତାଙ୍କୁ ଦେଖିବା ମାତ୍ରେ ଆଗ୍ରହର ସହିତ ପଚାରିଲା—"କ'ଣ ହେଲା ମାମୁଁ ?"

—"ତୋ ଦୋକାନରୁ ଏଇ ଫେରୁଛି । ତୋ'ଠି ଟିକିଏ କାମ ଥିଲା ।" ଦେବ ଆଚାର୍ଯ୍ୟ କହିଲେ ।

—"ମୁଁ ଯାଇଥିଲି ବ୍ଲକ୍ ଅଫିସକୁ । ଗୋଟେ ପୋଲ କରିବା ପାଇଁ କଣ୍ଟ୍ରାକ୍ଟ ନେଉଛି, ସେଇ ସନ୍ଧାନରେ । ବସ । ଚା' ପିଇବ ?" ନମାଇଁ ପଚାରିଲା ।

—"ଚା ?" ଦେବ ଆଚାର୍ଯ୍ୟ ଆଶ୍ଚର୍ଯ୍ୟ ହେଲେ । ଏବେ ତା'ହେଲେ ଚା' ତିଆରି ହେଲାଣି ଘରେ ? ସେ ମନା କଲେ । ହଠାତ୍ ତାଙ୍କୁ ଭାରି ଅବସନ୍ନ ଓ ଦୁର୍ବଳ ଲାଗିଲା । ଭାବିଲେ, କିଛି ନ କହି ପଳେଇବେ । ସାଇକେଲ ବାହାର କରି ଯିବେ ଘଟଗାଁକୁ, କିନ୍ତୁ ଅନ୍ଧାର ରାସ୍ତାରେ ଯିବାପାଇଁ ଇଚ୍ଛା ନ ଥିଲା । ଡାଇନାମୋ ବଲ୍‌ବଟା କେତେଦିନ ହେଲା ଫିଉଜ୍ ହୋଇ ଯାଇଛି ବୋଲି ଟୋପାଏ ବି ମହୁ ନ ଥିବା ଗୋଟାଏ ମହୁଫେଣା ଭଳି ସେଇଟା ଅଯଥା ଲାଗି ରହିଛି ସାଇକେଲରେ ।

—"କଥା କ'ଣ କି, ଠାକୁରଙ୍କ ସେବା ପାଇଁ ମୋ ଦୋକାନରେ ସଉଦା ନାହିଁ । ତୁ ଟିକିଏ ଚଳେଇ ନେ ।" ଅଗତ୍ୟା କହିବା ପାଇଁ ପଡ଼ିଲା ତାଙ୍କୁ । ଜଣାପଡ଼ିଲା, ସେ ଯେପରି ଆତ୍ମସମର୍ପଣ କରୁଛନ୍ତି ।

—"କିଛି ଚିନ୍ତା ନାହିଁ ।" କହିଲା ନମାଇଁ । "କାଲି ପାଇଁ ମୋ ଦୋକାନରୁ ସଉଦା ଯିବ ।" ହଠାତ୍ ଗୋଟାଏ ନୂଆ କଥା ଭାବିବା ଭଳି ପୁଣି କହିଲା—"ଗୋଟାଏ କାମ କର, ମୋ ଦୋକାନରୁ ଏଇ ଜିନିଷ ସବୁ ଧାରି ନେଇ ତୁମେ ମନ୍ଦିରକୁ ପଠାଅ । ମୋତେ ପରେ ଶୁଝିଦେବ । କାଲି ଦିନକ ପାଇଁ ଠାକୁରଙ୍କ ଖାତାରେ କାହିଁକି ମୋ ଦୋକାନ ନାଁ ଲେଖା ହେବ ?"

ମନ ନ ଥିଲି ପ୍ରସ୍ତାବଟା । ଦେବ ଆଗ୍ରଯ୍ୟ ପ୍ରାୟ ରାଜି ହୋଇ ଯାଇଥିଲେ । ପରେ କିନ୍ତୁ ମତ ପରିବର୍ତ୍ତନ କଲେ । କାଲି କ'ଣ ସତରେ ସେ ସଉଦା ଆଣି ପାରିବେ ? କହିଲେ—"ନାଇଁ, ସେମିତି କରନା । ମୋ ଦେହ ଭଲ ରହୁନାଇଁ । କେବେ ମୁଁ ସଉଦା ଆଣିବି, ତା'ର କିଛି ଠିକ୍ ଠିକଣା ନାଇଁ । କାଲିଠାରୁ ତୁ ସଉଦା ଦେ ।"

କାଲିଠାରୁ । ଦୁର୍ବଳତା ପ୍ରକାଶ ପାଇଗଲି ଆପଣା ଗ୍ରୁଏଁ । ଦେବ ଆଗ୍ରଯ୍ୟ ଘରଆଡ଼େ ଗଲାବେଳେ ଘୋର ଅସହାୟ ପରାଜିତ ବୋଧ କଲେ । ସେ ଯେମିତି ଛେଉଣ୍ଡ ହୋଇ ଯାଇଚନ୍ତି ।

ନିମାଇଁର ଅଭାବ କ'ଣ ? ଯେଉଁ ଜିନିଷ ଉପରେ ହାତ ଥୋଉଚି, ତାହା ଯେପରି ସୁନାରେ ପରିଣତ ହୋଇଯାଉଚି । ଏବେ ପୁଣି କଣ୍ଟ୍ରାକ୍ଟର ହେବ ! ନୂଆ ହୋଇ ଖୋଲିଥିବା ପୋଷ୍ଟ ଅଫିସ୍‌ର ସେ ପୋଷ୍ଟମାଷ୍ଟର । ଔଷଧ କାରବାର ଗ୍ଲୁଲିଛି । ପୁଣି ଗ୍ଲୁଲିଚି ଶାଳମଞ୍ଜି ଓ ମହୁଲି ସଂଗ୍ରହ । ଫୁରୁସତ୍ ମିଳୁନାଇଁ ତାଙ୍କୁ । ଏଥିପାଇଁ ଦୋକାନ କଥା ନିହାର ବୁଝୁଚି । ନିମାଇଁ ଅନୁପସ୍ଥିତ ରହିଲେ ମଦ ସହିତ ତାସ୍ ଖେଳର ଆସର ଜମି ଯାଉଚି ଆହୁରି ବେଶୀ । ଉଚ୍ଛୃଙ୍ଖଳ ଓ ଅଶ୍ଳୀଳ ଢଙ୍ଗରେ ।

ସେଇଟା ଥିଲି ସର୍ବଶେଷ ଧକ୍କା । ରାଜି ତିନି ଦିନର ତାସ୍-ପଶା ଖେଳ ସହିତ ଗଞ୍ଜେଇ ସେବନ ଓ କେତେବେଳେ କପର ରାଜକୀୟ ଢଙ୍ଗରେ ବେପରୁଆ ହୋଇ ପଶାକାଠିମାନଙ୍କୁ ନିର୍ଦ୍ଦେଶ ଦେବା କିମ୍ବା ଆଉ କିଛି କହିବା । ଜୀବନ ସଙ୍କୁଚିତ ହୋଇ ଆସୁଥିଲି, ଗୋଟାଏ ହେମାଳିଆ ଭୃତ୍ତି ଅଧିକାର କରିଥିଲି ତାଙ୍କ ସତ୍ତାକୁ । ନିଗୁଟିଆ ପବନରେ ବାଡ଼େଇ ହେଉଥିଲି ତାଙ୍କର ଥୁଣ୍ଟା ଅଭ୍ୟନ୍ତର ଉପରେ । ଏଭଳି ପରିବେଶ ଭିତରେ କିଛି ହୋଇପାରେ ? କେଉଁଠୁ କପର ଆସିବ ନାମହୀନ ଅଜଣା ମହକ ଓ ରଙ୍ଗ ? ଏଇଭଳି ଥିଲି ତାଙ୍କର ଅବସ୍ଥା ରାଜବେଳକୁ । ତଥାପି ସ୍ୱପ୍ନ ପାଇଁ ଆତୁର ତାଙ୍କ ମନ ଫାଙ୍କି ଦେବାକୁ ଚେଷ୍ଟା କରୁଥିଲି ତାଙ୍କୁ । କିଛି ହୋଇନାହିଁ । ସବୁ ଠିକ୍ ଅଛି । ସବୁ ଠିକ୍ ହୋଇଯିବ । ଇଚ୍ଛା ଅନୁଯାୟୀ ଜୀବନ ଗଢ଼ି ଗ୍ଲୁଲିବ ଅନୁମୋଦିତ

ରାସ୍ତାରେ । ଏମିତି ସମ୍ଭାବନାଟେ ଥିଲା । ଥିଲା ଏଇଭଳି ବଦାସ୍ୱପ୍ନଟେ । ରଜ ସରିଗଲା । ସବୁ ନିସାଡ଼, ମୂର୍ଚ୍ଛିତ ହୋଇ ପଡ଼ିରହିଲା ।

ସେଇଟା ସର୍ବଶେଷ ହିକା ନୁହେଁ ତ ଆଉ କ'ଣ ? ଆଉ କେହି ଜାଣି ନ ଥିଲେ ବି ସିନା, ସେ କିନ୍ତୁ ନିଃସନ୍ଦେହ ଥିଲେ ଯେ ସରିଗଲା ଦୋକାନର ଆୟୁଷ । ସବୁ ଫମ୍ପା ହୋଇ ଆସୁଚି । ଜଙ୍କ୍ ଲଗି ଯାଉଚି ଗୃହଆଡ଼େ । ଯେମିତି ଯାହା କଲେ ବି କିଛି ହେଉନାହିଁ ଜମା । ଧକେଇ ହେଉଚି ଖାଲି । ଆଉ ହେବ ନାହିଁ ।

ଦିନେ-ଦୁଇଦିନର ନୁହେଁ; ବାର-ତେର ବର୍ଷର ଦୋକାନ । କେବଳ ଦୋକାନ ନୁହେଁ, ତାଙ୍କ ଆତ୍ମା, ତାଙ୍କ ବଞ୍ଚି ରହିବା, ତାଙ୍କ ସ୍ୱପ୍ନର ଏଇଟା ଥିଲା ଗୋଟାଏ ଅବତାର । ଏହାର ବାରନ୍ଦା ଥିଲା ତାଙ୍କ ଚେତନାର ସଂପ୍ରସାରଣ । ସେ ନିଜେ ଏଇ ଦୋକାନ । ଏ ଦୋକାନ ତାଙ୍କର ପାର୍ଥିବ ସଂସାରକୁ କ'ଣ ଦେଇଚି, କ'ଣ ନ ଦେଇଚି, ସେ ତ ଅଲଗା କଥା । ଏହା କିନ୍ତୁ ତାଙ୍କର ଆତ୍ମିକ ସତ୍ତାକୁ ମହିମାମୟ କରିଚି । ଏହାର କବାଟରେ ତାଲା ଝୁଲିବା ଅର୍ଥ, ତାଙ୍କର ଆତ୍ମିକ ଓ ଆବେଗ-ଗତ ଜୀବନର ପରିସମାପ୍ତି ଘଟିବା । ପରିସମାପ୍ତି ଆସିଯାଇଥିଲା ।

ସରି ଯାଇଥିଲା ରଜ । ତଥାପି ଡାଁ ଭାଁ ଗଛମୂଳେ ନିର୍ବାକ୍ ହୋଇ ଠିଆହୋଇ ରହିଥିଲେ ଦୋଳିମାନେ । ଘାସ ଉଠୁଚି ଆସୁଚି ବସୁଧା ଭିତରୁ । କ୍ଷେତରେ ଧାନଗଛ । ସୂର୍ଯ୍ୟର ଦମ୍ଭ ଭାଙ୍ଗିଗଲାଣି । ଆକାଶରେ ବାଦଲ । ଲଗାଣ ବର୍ଷା ଆରମ୍ଭ ହେଲେ ବେଉଷଣ ଗୁଳିବ ଧାନ କ୍ଷେତରେ ।

ସକାଳ ଆଠଟାବେଳେ ତଥାପି ଥିଲା ସେଇ ଜରୁରୀ ତତ୍ପର-ଶୀଳତା । ପାଣି ଓ କାଠ ଇତ୍ୟାଦି ଧରି ମନ୍ଦିରକୁ ଯିବା ଲୋକଟି ଅପେକ୍ଷା କରିଥାଇପାରେ ଦୋକାନ ବାରନ୍ଦାରେ । ତେବେ କପରି ତାଙ୍କୁ ଶୁଣିବାକୁ ପଡ଼ିଚି—"କୁଆଡ଼େ ଯାଇଥିଲ କଓ, ଏତେବେଳ-ଯାଏଁ ? ଖରା ଟାଣ ହୋଇ ଯାଉଚି । ପାଉଚୁ ବାନ୍ତିଯିବ । ବଅ ଚଞ୍ଚଳ ବାହାରି କରି ଠାକୁରଙ୍କ କନକ ।"

ତର ତର ହୋଇ ପହଞ୍ଚିଲେ ଦେଖନ୍ତି, ଦୋକାନ ବାରନ୍ଦା ଫାଙ୍କା, ଗଛମୂଳର ହୋଳ ଭଳି । ଏଥିନେ ବୁଲା କୁକୁରଟେ ଶୋଇଥିଲା ଗୋଟାଏ କୋଣରେ ଗୋଲ ହୋଇ । ତାଙ୍କୁ ଦେଖିବା ମାତ୍ରେ ଅତର୍କ ହୋଇ ଉଠି ଆସିଲା । ଠିଆ ହେଲା ରାସ୍ତାରେ ଓ ପଛଗୋଡ଼ ଟେକି କାନମୂଳ କୁଣ୍ଡେଇଲା । ଝାଡ଼ଝୁଡ଼ି ହେଲା । କୁଆଡ଼କୁ ନ ଅନେଇ ପଳେଇଲା । ସେ ଦୋକାନ ଖୋଲିଲେ । ବସିଲେ ମାଲିକର ଆସ୍ଥାନ ଉପରେ । ଏବଂ ବସି ରହିଲେ । ସେ ଆଶା କରୁଥିଲେ ଯେ ଠାକୁରଙ୍କ ପାଖକୁ ଯାଉଥିବା ଲୋକଟି ଆସନ୍ତା ତାଙ୍କ ପାଖକୁ ଏବଂ ବିରକ୍ତ ହୋଇ ଆପତ୍ତି କରନ୍ତା—"ନାଇଁ, ସେ ନମାଇଁ ଦୋକାନକୁ ଯିବ ନାଇଁ । ଗୋଟେ ବି ସଉଦା ନାଇଁ ସେଠାରେ । ତୁମେ ବାହାର କରିଦିଅ ଠାକୁରଙ୍କ ଜିନିଷ ।" ଆହା, କେଡ଼େ ମଧୁର ଲାଗନ୍ତା ଏଭଳି ବିରକ୍ତି ଓ ଆପତ୍ତି ।

—"କିରେ, ଯାଉଚୁ କୁଆଡ଼େ ?" ଦୀର୍ଘ ସମୟ ବସି ସାରିବା ପରେ ମନ ହୁଏ ଅନ୍ୟମାନଙ୍କ ସହିତ ମିଳାମିଶା କରିବା ପାଇଁ ।

—"ଏମିତି ଯାଉଚି ।" ଜବାବ ଆସେ । କୁଆଡ଼େ ଓ କାହିଁକି ସେ ଗତି, ତା'ର ଉତ୍ତର ମିଳେ ନାଇଁ । କିମ୍ବା—"ଗଲା କାଲି ରାତିରୁ ଗାଈଟା ଖାଲି ଗଁ ଗଁ ହେଉଚି ।" କିମ୍ବା—"ଯାଉଚି, ଝିଅ ଘରକୁ । ତା' ପୁଅର ଏକୋଇଶା ।" ଇତ୍ୟାଦି ।

ଆଉ ଦିନେ ଦେଖିଲାବେଳକୁ ଅଣ୍ଡିରା କୁକୁଡ଼ାଟେ ଦୋକାନ ବାରନ୍ଦାରେ ଠିଆହୋଇ କେକେରେ କେ ବୋଲି ଚିତ୍କାର କରୁଚି ଖର-ଦର୍ପରେ । ପଳେଇ ଗଲା । ଗୋଡ଼େଇଲା ଗୋଟେ ମାଈ କୁକୁଡ଼ାକୁ ।

—"କିରେ ପିଲେ, ଯାଉଚ କୁଆଡ଼େ ?"

ଆଠ-ଦଶଟା ପିଲା ଅଟକି ଗଲେ ଦୋକାନ ସାମନାରେ, ଚାହିଁଲେ ପରସ୍ପର ମୁହଁକୁ । ସେମାନଙ୍କ ସମ୍ପର୍କରେ କେବେ ବି ଆଗ୍ରହୀ ହୋଇ ନ ଥିବା ଲୋକଟା ଠିଆ ହୋଇଚି ବାରନ୍ଦା ଧାରରେ ।

—"ଇଏ ଆଉ ସାହୁ ରାଜେନ୍ଦ୍ରର ପୁଅ ପରା ? କ'ଣ ଯା ନାଁ ? ପଚାରିଲେ ଦେବ ଆଶ୍ଚର୍ଯ୍ୟ ଉଦ୍ଦେଶ୍ୟହୀନ ଭାବରେ ।

—"ସ୍ୱା ନାଁ ବଟ । ବଟକୃଷ୍ଣ ।" କେହି ଜଣେ ଉତ୍ତର ଦେଲା ।

—"ତୋ ନାଁ କୈଳାସ ?"

—"ନାଇଁ, ନାଇଁ ସିଏ କୈଳାସ ନୁହେଁ ।" ସଂଶୋଧନ କଲା ଆଉ ଜଣେ । "ତା ବଡ଼ ଭାଇର ନାଁ ହେଉଚ କୈଳାସ । ଇଏ ବୈକୁଣ୍ଠ ।"

ଦେବ ଆଗ୍ରହ୍ୟ ହସିଲେ ଟିକଏ । ସବୁ ପରିଚୟ କେମିତି ଗଣ୍ଡଗୋଳିଆ ହୋଇ ଯାଇଚ । ବସ୍କୁଟ-ଲଜେନ୍ସ ଆଉ ଅଛି ଯେ ଯାଚବେ ? କୌଣସି ଗୋଟେ ଟୋକାକୁ କୁତୁକୁତୁ କରିବେ କି, ବାରନ୍ଦା ଉପରେ ଗଡ଼ିବୁଲି ସେ ଆକ୍ରାମାକ୍ରା ହେବା ପର୍ଯ୍ୟନ୍ତ ? ନା, ଥାଉ । ସେମାନେ ଯାଉଥିଲେ । କହିଲେ ଦେବ ଆଗ୍ରହ୍ୟ—"ଚଗଲା ହେବନାଇଁ ପିଲେ । ଗଛ ଚଢ଼ିବ ନାଇଁ । ପାହାଡ଼ ଉପରକୁ ଯିବନାଇଁ ଜମା ।"

ଅପରାହ୍ଣରେ ବି ଦୋକାନ ଖୋଲେ କେଜାଣି କାହିଁକି ? ଗରାଖ ପଚାରନ୍ତି—"କ'ଣ, ନନା ? ସଉଦା ଆଣିଲଣି ନା ଖାଲି ଦୋକାନ ଖୋଲି ବସିଚ ?"

—"ଆସିବ, ଆସିବ । ଏମିତି ବ୍ୟସ୍ତ ହେଲେ ଚଳିବ କେମିତି ? ଯେତେବେଳେ ପୁଣି ଦୋକାନ ଖୋଲିବ, ଦେଖିବୁ ସେତେ-ବେଳେ ।" ସତେ ଯେପରି ଗରାଖକୁ ଆଶ୍ୱାସନା ଦଅନ୍ତି ସେ ।

—"କ'ଣ ପାଇଁ ତେବେ ବସିଚ, ଏଠି ?"

ଏମିତି ପ୍ରଶ୍ନ ପଚାରିବା ଉଚିତ ନୁହେଁ । ଦେବ ଆଗ୍ରହ୍ୟଙ୍କ ଅପ୍ରତିଭ ମୁହଁ ଯଥାଯଥ ଉତ୍ତରଟିଏ ଖୋଜେ । ସେ ନିଜେ ବି ଜାଣନ୍ତି ନାଇଁ, କାହିଁକି ସେ ବସୁଚନ୍ତି ମିଛ ଦୋକାନରେ । ଏଠାରେ ତଥାପି ଆସ୍ଥାନ ଜମେଇ ରହିଥିବା ଗନ୍ଧ ଭଲ ଲାଗେ ତାଙ୍କୁ ? ନା, ଘରେ ବସିବା ପାଇଁ ଭଲ ଲାଗେନାଇଁ ? ନା, ସେ ଅପେକ୍ଷା କରନ୍ତି ଅନ୍ୟ ଲୋକମାନଙ୍କୁ, ନିଜ ନିଃସଙ୍ଗତାକୁ ଦୂର କରିବା ପାଇଁ ? କେଜାଣି ?

ସେତେବେଳେ ଦିନ ଦଶଟା ବି ବାଜି ନାହିଁ । ଦେବ ଆଗୃହୀୟ ଦୋକାନରେ ଗୃହ ପକେଇଲେ । ଆସିଲେ ଘରକୁ । ପିନ୍ଧିଲେ କମିଜ । ଚହା ଓ ବାବୁଲ ଖାଉଚନ୍ତି ପଖାଳ, ପୋଷାକପତ୍ର ପିନ୍ଧିସାରି । ସ୍କୁଲ ଯିବେ । ଦୁଇବର୍ଷର ସବାସାନ ଏବଂ ଶେଷ ପୁଅକୁ ଇନ୍ଦୁ ତେଲ ଲଗେଇ ଦେଉଚି ଗାଧୋଇ ଦେବବୋଲି ।

ସାଇକେଲ ଧରି ବାହାରି ଗଲେ । କଠଉ ଯୋଡ଼ ନଈ ପାଖରେ ସାଇକେଲରୁ ଓହ୍ଲେଇବାକୁ ପଡ଼େ, ପୋଲ ନାହିଁ ବୋଲି । ନଈ ଆରପାଖକୁ ଆସି ପୁଣି ସାଇକେଲ ଚଢ଼ିବାବେଳେ ଅଟକି ଗଲେ । କୁଆଡ଼େ ଯାଉଚନ୍ତି ସେ ? କାହିଁକି ? କ୍ଷଣକ ସ୍ତମ୍ଭୀଭୂତ ହୋଇଗଲେ ସେ । ସେ ଜାଣନ୍ତି ନାହିଁ ।

. ସାଇକେଲ ଫେରାଇଲେ । କମିଜ ଖୋଲି ବସିଲେ ଖଟରେ । ବିଞ୍ଚଣାଟେ ଧରି ବିଞ୍ଚିହେଲେ ।

—"କୁଆଡ଼େ ଯାଉଥିଲ ପରା ?" ଇନ୍ଦୁ ପଚାରିଲା ।

—"କାହିଁ, କୁଆଡ଼େ ?" ଦେବ ଆଗୃହୀୟ ଓଲଟା ପଚାରିଲେ ।

ଇନ୍ଦୁ କହିଲା ନାହିଁ କିଛି । ହସିଲା । ଚମତ୍କାର ଦେଖାଗଲା । ସବୁବେଳେ ସେ ଭଲ ଦେଖାଯାଏ, ଛଅଟା ଛୁଆର ମା' ହେବା ପରେ ବି । ଆଗ ଭଳି ସ୍ୱାସ୍ଥ୍ୟ, ଗୋରା ଦେହ । ଦେବ ଆଗୃହୀୟଙ୍କ ପାଟିରୁ ବାହାରିଗଲା—"ତୁମେ ଆଗଭଳି ଦିଶୁଚ । କେହି କହିବ ନାହିଁ, ତୁମେ ଛଅଟା ପିଲାର ମା' ବୋଲି ।"

ଇନ୍ଦୁ ମୁଗ୍ଧ ହେଲା, ସାଧାରଣ ସ୍ତ୍ରୀ ଲୋକକୁ ମିଠାକଥା କହିଲେ, ଯେମିତି ସେ ମୁଗ୍ଧ ହେବା କଥା । କହିଲା—"ସାନପୁଅ ଦେଖାଯାଉଚି ତୁମଭଳି ।"

—"ନାଇଁ ଭୁମଭଳ ।" ଦେବ ଆଗୃର୍ଯ୍ୟ କହୁଲେ ମ୍ଳାନ ପ୍ରତ୍ତିବାଦ କର ।

—"ସମସ୍ତେ କହୁଚନ୍ତ ଭୁମଭଳ ହୋଇଚ ।"

—"ସମସ୍ତେ କହୁଚନ୍ତ ନା ଭୁମେ କହୁଚ ?" ପଗୃରଲେ ସେ ।

—"ମୁଁ ବ କହୁଚ ।"

ଯ୍ୟା'ପରେ ମୀରବତା । ସବୁ ଭାଷା ଯେପର ସରଗଲା ଏଇ କେତେପଦ ମାମୁଲ କଥାରେ । ଦେବ ଆଗୃର୍ଯ୍ୟ ଚନ୍ତାକଲେ, କଛୁ ଗୋଟାଏ ମଜାକଥା କହୁବାକୁ । କଛୁ ନ ହେଲେ ବ ଯାହାପାଇଁର ଅଭଜ୍ଞତା କୁହାଯାଇପାରେ । କେଉଁ ଅଭଜ୍ଞତା କହୁବେ ? ତା'ପରେ କ'ଣ ହେଲା, ତାଙ୍କର ମନେନାଇଁ । ଅସମୟରେ, ବୋଧହୁଏ ପ୍ରଥମଥର ପାଇଁ ସେ ଶୋଇପଡ଼ଲେ ଦଉଡ଼ଆ ଖଟରେ; ନଶ୍ଚିନ୍ତ ହୋଇ ସାବଲୀଳ ଚନ୍ତାହୀନ ମୁହଁ ନେଇ ।

ସ୍ୱୋଷେଇ ଘରୁ ଫେର ଇନ୍ଦୁ ଦେଖିଲା, ଦେବ ଆଗୃର୍ଯ୍ୟ ଶୋଇଚନ୍ତ ଆଗଭଳ । ଦୁଇ ହାତ ରହୁଚ ତକଆର ଦୁଇ ପାଖରେ । ଚୁପ୍‌ଗୃପ୍ ସେ ଆଉ ଗୋଟିଏ କୋଠରକୁ ଗଲାବେଳେ ଅଟକଗଲା ଏବଂ ଆବଷ୍କାର କଲା ଭଯ୍ୟଙ୍କର ଜନଷଟି । ତା'ର ଭ୍ରୂ କୁଞ୍ଚତ ହୋଇଗଲା । ପାଟି ଉନ୍ମୁକ୍ତ ହୋଇଗଲା ଆଶଙ୍କା ଓ ଭୟରେ । ଦେବ ଆଗୃର୍ଯ୍ୟଙ୍କର ଦୁଇ ପାପୁଲ କମ୍ପୁଚ । ଚୁପ୍‌ହୋଇ ପଡ଼ ରହୁଚ ଏବଂ ପୁଣି ଛଟପଟ ହେବାଭଳ ଦେଖାଯାଉଚି, ଭୂତଳଶାୟୀ ହୋଇଥିବା ଚଢ଼େଇଟେ ଛଟପଟ ହେବାଭଳ । ଖୁବ୍ ମନୋଯୋଗୀ ହୋଇ ନ ଦେଖିଲେ ଦୁଇ ହାତରେ ଗୃଲଥିବା ଏଇ ଅସ୍ଥିର ପ୍ରକ୍ରିୟାଟା ନଜରକୁ ଆସିବ ନାଇଁ; କନ୍ତୁ ଅସ୍ଥିରତା ଥିଲା । ସେଇଟା ଥିଲା ଗୋଟାଏ ବାସ୍ତବତା, ଗୋଟାଏ ସତ୍ୟ—ତାଙ୍କୁ ଭଲ ଲାଗୁ ବା ନ ଲାଗୁ ।

ଏଥର ଅସହାୟ ଦେଖାଗଲା ଇନ୍ଦୁର ମୁହଁ । ସେ ସଳଖ ହୋଇ ଠିଆହେଲା । ଗ୍ଚହିଁଲା ଖୋଲା ଦରଜା ଆଡ଼େ, କୌଣସି ଉପାୟ ଆଶାରେ । ପୁଣି ଦୁଇ ହାତ ପାପୁଲିକୁ । ଖୁବ୍ ଆସ୍ତେ ହାତ ଦୁଇଟା ଯେପରି ନାହିଁ ନାହିଁ ର ସଙ୍କେତ ଦେଉଚନ୍ତି । ଦେବ ଆଗ୍ଚର୍ଯ୍ୟଙ୍କର ଗ୍ଭିତ ଓ ପେଟ ନିଃଶ୍ୱାସ ପ୍ରଶ୍ୱାସ ଅନୁସାରେ ଉଠ୍‌ପଡ଼୍ ହେଉଥିଲା ସ୍ୱାଭାବିକ ଭାବରେ । ଦୁଇଗୋଡ଼, ଆଙ୍ଗୁଳି । ସବୁ ସ୍ୱାଭାବିକ । ସମସ୍ତ ସ୍ୱାଭାବିକତାର ଅନ୍ତରାଳରେ କେଉଁଠି କିଛି ଗୋଟାଏ ଘଟୁଚି । ଦେହ ଭିତରେ ଘଟୁଚି ଭୂମିକମ୍ପଟାଏ । ଏହାର ତରଙ୍ଗ ଲମ୍ବିଆସୁଚି କେବଳ ଦୁଇ ହାତର ପାପୁଲି ଓ ଆଙ୍ଗୁଳି ପର୍ଯ୍ୟନ୍ତ । ଆସ୍ତେ ଆସ୍ତେ କମ୍ପୁଚି, ନାହିଁ ନାହିଁର ସଙ୍କେତ ଦେଉଚି, ଛଟପଟ ହେଉଚି ।

ଇନ୍ଦୁ ଢୋକ ଢୋକିଲା । ଏଇକଥା ଆଗରୁ ସେ ଥରେ କହିଥିଲେ । କିଛି କିନ୍ତୁ ଜଣାପଡ଼ୁ ନ ଥିଲା । ଦେଖି ନ ଥିଲା ଅବକ୍ଷୟର ଏହି ହସ୍ତାକ୍ଷରକୁ । ଏବେ ତାଙ୍କ ମୁହଁ ଟିକିଏ ହାଡ଼ୁଆ ଦିଶୁଚି । ଗାଲ ପଶି-ଯାଉଚି ଭିତରକୁ । ଆଗଭଳି ଚିକ୍‌କଣ, ଦାଉ ଦାଉ ଦେଖାଯାଉ ନାହିଁ । ଆଖି ଗ୍ଚରିପାଖରେ କଳାଦାଗ ଓ ଗହ୍ୱର । କେଶ ପତଳା ହୋଇ ଯାଉଚି । ଦେବ ଆଗ୍ଚର୍ଯ୍ୟ କଡ଼ ଲେଉଟାଇଲେ । ବାମ ପାପୁଲି ଉପରେ ଥୋଇଲେ ମୁଣ୍ଡ । ଡାହାଣ ପାପୁଲି ବିଛଣା ଉପରେ ଲଦି ହୋଇ ରହିଲା । ଇନ୍ଦୁ ଲକ୍ଷ୍ୟକଲା । ନା, ଆଉ କିଛି ନାହିଁ । ସ୍ୱାଭାବିକ ସୁଠିହୀନ ମଣିଷ ଜଣେ ଶୋଇଚି ଆରାମରେ । ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ବାହାରି ଆସିଲା । ଇନ୍ଦୁ ଯୁା'ପରେ ବିସ୍ମୟକର କାମଟିଏ କଲା । ଠିଆହେଲା ଆରସି ଆଗରେ ଏବଂ ଶାଢ଼ୀ ପଣତରେ ମୁହଁକୁ ଝାଳମୁକ୍ତ କଲା । ଅସଜଡ଼ା କେଶକୁ ଶୃଙ୍ଖଳିତ କଲା ପାନିଆଁରେ । ଦୁଇ ଓଠ କାମୁଡ଼ିଲା ଆହୁରି ଲାଲ କରିବା ପାଇଁ । ନିଜକୁ ଦେଖି ହସିଲା । ଚକ୍ ଚକ୍ ଦାନ୍ତ ଦେଖାଇଲା । ମୁହଁକୁ ଏପାଖ ସେପାଖ କଲା ଏବଂ ରୋଷେଇଘରକୁ ଗ୍ଚଲିଗଲା ଆଉ ଦେବ ଆଗ୍ଚର୍ଯ୍ୟଙ୍କ ଆଡ଼େ ନ ଗ୍ଚହିଁ ।

ଇନ୍ଦୁ ନ ଉଠେଇ ଥିଲେ ସେ ଆହୁରି କେତେ ବେଳଯାଏ ଶୋଇଥାନ୍ତେ କେଜାଣି ? ମଧ୍ୟାହ୍ନ ଭୋଜନ ପରେ ସେ ପୁଣି ଫେରି ଆସିଲେ ବିଛଣାକୁ । ସାନପୁଅ ଶୋଇଚି । ସେ ଆସ୍ତେ କବାଟ ଆଉଜେଇ

ଆଣିଲେ । ଗଡ଼ପଡ଼ଲେ ଖଟ ଉପରେ । ଶୋଇବା ପାଇଁ ବୃଥା ଚେଷ୍ଟା କଲେ ନାହିଁ । ସେ ଜାଣନ୍ତି, ଆଉ ନିଦ ହେବନାହିଁ ।

ରୋଷେଇ ଘରେ ଅବଶିଷ୍ଟ କାମ ଶେଷ କରୁଚି ଇନ୍ଦୁ । ବାସନ ଇତ୍ୟାଦି ମାଜି ସାରିବା ପରେ ସେ ବିଶ୍ରାମ ନେବ । ବାସନ ମାଜିବା ପାଇଁ କୌଣସି ଲୋକ ନିଯୁକ୍ତ କରିବା ସମ୍ଭବ ହୋଇନାହିଁ । ପ୍ରାୟ ଦେଢ଼ଘଣ୍ଟା ପରେ ରୋଷେଇ ଘର ବନ୍ଦହେବା ଶବ୍ଦ ଶୁଭିଲା । ହାତ ଓ ମୁହଁ ପୋଛୁ ହେଉଥିବା ଅବସ୍ଥାରେ ଇନ୍ଦୁ କୋଠରୀକୁ ଆସିଲା ଓ ଆଗଭିଳି କବାଟ ବନ୍ଦକଲା । ପୁଅ ପାଖରେ ସପଟିଏ ପକାଇ ଶୋଇବାକୁ ଚେଷ୍ଟା କଲା । ନିଦ ଆସୁନାହିଁ ବୋଧହୁଏ । ଇତସ୍ତତଃ ହେବାର ଶବ୍ଦ ଶୁଭୁଚି । ଆହୁରି ମଧ୍ୟ ଶୁଭୁଚି ଚୁଡ଼ିର ରୁଣ୍‌ଝୁଣ୍ ଶବ୍ଦ ଅସ୍ପଷ୍ଟ ଭାବରେ ।

—"ଶୋଇ ପଡ଼ିଲଣି ?" ଇନ୍ଦୁ ପଚାରିଲା ।

—"ନା ।"

ତା'ପରେ ନୀରବତା । ଇନ୍ଦୁ ଆଉ କିଛି କହିଲା ନାହିଁ । ବାଧ୍ୟ ହୋଇ ସେ ପଚାରିଲେ—"କିଛି କହିବ ?"

—"ତୁମେ ଡାକ୍ତରଖାନା ଯାଇଥିଲ ?" ସେ ପଚାରିଲା ।

—"କାହିଁକି ?"

—"ତୁମ ହାତ ଏମିତି ହେଉଚି । ଔଷଧ ଖାଇଲେ ଭଲ ହୋଇଯାଆନ୍ତା ।" ଇନ୍ଦୁ ପ୍ରସ୍ତାବ ଦେଲା ଆତ୍ମୀୟତାର ସହିତ ।

ଇତି ମଧ୍ୟରେ ସେ ତିନି-ଚାରିଥର ଔଷଧ ଖାଇ ସାରିଲେଣି, ଅଥଚ ଇନ୍ଦୁକୁ ଜଣାନାହିଁ । ଅନେକ ଦିନ ତଳେ ହାତ ଏମିତି ହେଉଚି ବୋଲି ସେ ଇନ୍ଦୁକୁ କହିଥିଲେ । ଇନ୍ଦୁ ଫୋପାଡ଼ିଲା ଭଳି ଜବାବ ଦେଇଥିଲା—"ମୁଁ ଡାକ୍ତର ହୋଇଚି ଯେ ମୋତେ କହୁଚ ? ଯାଉନ, କୋଉ ଡାକ୍ତରକୁ ଦେଖେଇବ ? ମୋତେ କହିଲେ ମୁଁ କ'ଣ ଭଲ କରିଦେବ ?" ସେ ଆଦୌ ବ୍ୟସ୍ତ ହୋଇ ନ ଥିଲା ସତରେ କ'ଣ ହେଉଚି ଦେଖିବା ପାଇଁ । କେବେ ପଚାରି ନ ଥିଲା ଡାକ୍ତରକୁ ସେ ହାତ ଦେଖେଇଚନ୍ତି କି ନାହିଁ ।

ମିରବ ରହିବେ ବୋଲି ଦେବ ଆଗ୍ରହୀ ଭାବୁଥିଲେ, କିନ୍ତୁ କହିଲେ—"ଆଜି ତେବେ ହାତର ଅବସ୍ଥା ତୁମେ ଦେଖିଲ ? ବହୁଦିନ ତଳେ ଏକଥା କହିଥିଲି, ତୁମେ କ'ଣ ଜବାବ ଦେଇଥିଲ, ତୁମର ମନେଥିବ ।"

ଦେବ ଆଗ୍ରହୀ ଯାହା ଭାବିଥିଲେ, ତାହା ହିଁ ହେଲା । ବାଷ୍ପାକୁଳ ହୋଇପଡ଼ିଲା ଇନ୍ଦୁର ସ୍ୱର । ତା ତ୍ରୁଟି ଦର୍ଶେଇବା ମାନେ ସେ ଏମିତି ହୁଏ ଏବଂ ଓଲଟା ତାଙ୍କ ଉପରେ ସମସ୍ତ ଦୋଷ ଲଦିଦେଇ ଆକ୍ରମଣାତ୍ମକ ହୋଇପଡ଼େ । ତାହା ହିଁ ହେବାକୁ ଯାଉଥିଲା ବୋଧହୁଏ । କହିଲା— "କେତେବେଳେ କ'ଣ ଟିକିଏ କହିଦେଲେ ଇଏ ତାକୁ ମନେ ରଖିଥିବେ ସବୁଦିନ ପାଇଁ । ତୁମେ କ'ଣ କିଛି କୁହନାହିଁ ? ମୁଁ କହିଦେଲି ବୋଲି ତୁମେ ଡାକ୍ତର ପାଖକୁ ବି ଯିବ ନାହିଁ ?"

—"ଯାଇଥିଲି । ଗୁରୁଥର । ଔଷଧ ଆଣିଥିଲି । ଖାଇଛି ।" ଶାନ୍ତ ସ୍ୱରରେ ସେ ଜବାବ ଦେଲେ ।

ଇନ୍ଦୁ ଅପ୍ରସ୍ତୁତ ହୋଇପଡ଼ିଲା କି ? କେଜାଣି ? ସେମିତି ହେବା ତା'ର ପ୍ରକୃତି ନୁହେଁ । ତେବେ ସେ ଆଉ କିଛି କହିଲା ନାହିଁ । ସପ ଉପରୁ ଉଠିଗଲା ବାହାରକୁ । ପୁଣି ଫେରିବାବେଳେ ଦେବ ଆଗ୍ରହୀ ବସିଥିଲେ ବିଛଣାରେ । କହିଲେ—"ରୁହ ଟିକିଏ ।"

ଇନ୍ଦୁ ତାଙ୍କ ପାଖରେ ଠିଆହେଲା । ଦେବ ଆଗ୍ରହୀ ଏତେ ବର୍ଷ ଧରି ଯେଉଁ ଦୋକାନ ଗୁବକାଠି ପଇଡାରେ ବାନ୍ଧି ରଖିଥିଲେ ନିଜ ସତ୍ତ୍ୱର ଗୋଟିଏ ଅଙ୍ଗଭଳି, ତାହାକୁ ଫିଟାଇଲେ । ଇନ୍ଦୁଆଡ଼େ ବଢ଼େଇଦେଇ କହିଲେ—"ରଖିଥାଅ ।"

—"ଦୋକାନ ଗୁବକାଠି ? ମୋତେ ଦେଉଛ ଯେ ?" ସେ କିଛି ବୁଝିପାରି ନ ଥିଲା ।

—"ଦୋକାନରେ ଆଉ କିଛି ନାହିଁ । ଏଇଟାକୁ ଧରି ବୁଲିବି କାହିଁକି ? ଏଇଟା ମୋ ଦେହରେ ବାଜିବା ମାନେ ଭାରି କଷ୍ଟ ଲାଗିବ । ପାଖରେ ରଖିଥାଅ । ଦରକାର ହେଲେ ମାଗିବି ।" ବୁଝେଇବାକୁ ଚେଷ୍ଟା କରୁଥିଲେ ଦେବ ଆଗ୍ରହୀ ।

ସୀତମତ ଆପତ୍ତି କରିବାର ସ୍ୱର—"କ'ଣ ହେଲା ? ଦୋକାନ ବନ୍ଦ କରିଦେବ ?"

—"ସବୁଦିନ ପାଇଁ ନୁହେଁ ।" ଦେବ ଆଗ୍ରୱାଲଙ୍କ ସ୍ୱର ଉଦାସ ଓ ଗମ୍ଭୀର ହୋଇ ପଡ଼ୁଥିଲା । ଆଖି ଛଳ ଛଳ ହୋଇ ଯାଉଥିଲା । ସବୁଦିନ ପାଇଁ ନୁହେଁ । ଶୋଲା ଲୋନ୍ ବହୁ କଷ୍ଟରେ ପରିଶୋଧ କରି ଦେଇଛି । ଯେଉଁ ଦୋକାନରୁ ମୁଁ ସଉଦା ଆଣେ, ସେଇଠି ଅନେକ ଟଙ୍କା ଶୁଝିବାକୁ ପଡ଼ିବ । ବାକି ଟଙ୍କା ଆଦାୟ ହୋଇଗଲେ ଚିନ୍ତା ରହନ୍ତା ନାହିଁ । ଠାକୁରଙ୍କ ଟଙ୍କା ଯେକୌଣସି ଦିନ ମିଳିଯିବ । ନିମାଇଁ ଷ୍ଟେଟ୍‌ମେଣ୍ଟ ପଠେଇସାରିଛି ବୋଲି କହୁଥିଲା । ସେ ଯାଚୁଥିଲା କିଛି ଟଙ୍କା । ଦୋକାନଟା ଚାଲୁଥାଉ ବୋଲି ସେ କହୁଥିଲା । କିନ୍ତୁ ବର୍ତ୍ତମାନ କିଛି ହେବ ନାହିଁ । ବଡ଼ କଥା ହେଲା, ମୋ ପାଖରେ ଗରାଖ କାହାନ୍ତି ? ସବୁ ଯାଉଚନ୍ତି ନିମାଇଁ ଦୋକାନକୁ । ଏତେଗୁଡ଼ାଏ କଥା କହିସାରି ଦେବ ଆଗ୍ରୱାଲ ଦମ୍ ନେଲେ । ଧୋତିକାନି ଉଠାଇ ମୁହଁ ପୋଛିଲେ ।

—"ମୁଁ ତୁମ କଥା ବୁଝିପାରୁ ନାହିଁ ।" ଅଧୈର୍ଯ୍ୟ ହେବାଭଳି ଇନ୍ଦୁ କହିଲା—"ଆମ ଦୋକାନ ତେବେ ବନ୍ଦ ହୋଇଯିବ ?"

—"କିଏ କହିଲା ?" ଦେବ ଆଗ୍ରୱାଲ ସଚେତକ ଚ୍ୟାଲେଞ୍ଜ କଲେ । "ଦୋକାନ ନ ଖୋଲିଲେ ମୁଁ ବଞ୍ଚିବି କିପରି ? ଦୋକାନ ବାରନ୍ଦାରେ ନ ବସିଲେ ମୁଁ ପାଗଳ ହୋଇଯିବି । ଲୋକେ ଆସିବେ ଖେଳ ଚାଲିବ, ଗପସପ ଚାଲିବ ।" ଟିକିଏ ବିଶ୍ରାମ ନେଇ ସେ କହି ଚାଲିଲେ—"ମୁଁ ଭାବୁଚି ବଡ଼ ଦୋକାନଟିଏ ବସେଇବି । ବହୁତ ବଡ଼ । ଏତେ ବଡ଼ ଯେ, ସମସ୍ତେ ଚାଲିଆସିବେ ମୋ ପାଖକୁ ଅନ୍ତତଃ ଦୋକାନ ଭଳି ଦୋକାନଟେ ଦେଖିବା ପାଇଁ । ଚକ୍ ଚକ୍ ମସ୍ତବଡ଼ ଘରଟେ ତିଆରି ହେବ । ଜଣେ ଦୁଇଜଣଙ୍କୁ ରଖିବାକୁ ହେବ କେବଳ ବିକ୍ରି କରିବା ପାଇଁ । ମୁଁ ଟଙ୍କା ବାକ୍ସ ଧରିଥିବି । ଦାମ୍ ଅସୁଲ କରୁଥିବି । ଆଉ ଅଳ୍ପଦିନ ପରେ ହିଁ ଖୋଲିବି ଏଇ ଦୋକାନ ।"

ଦେବ ଆଗ୍ରୱାଲଙ୍କର କଥାରେ ଏତେ ଦୃଢ଼ତା ଓ ଅନ୍ତରଙ୍ଗତା ଥିଲା ଯେ ଇନ୍ଦୁ ଅଭିଭୂତ ହୋଇପଡ଼ିଲା ! ଗୋଟାଏ ମସ୍ତବଡ଼ ସ୍ୱପ୍ନ ଓ

ଯୋଜନା ଯେପରି ଲେଖି ହୋଇଗଲା ତା ଆଗରେ । ସେ ସ୍ପଷ୍ଟଭାବରେ ଦେଖିପାରିଲେ ଦେବ ଆଗ୍ରୱାଲ ସମସ୍ତ ବାଣିଜ୍ୟର ସମ୍ରାଟ ହୋଇ ବସିଥିବାର ।

ଏଇଟା କିନ୍ତୁ ଅଭିନୟ ନ ଥିଲା । ଗୋଟାଏ ଆବେଗ, ଗୋଟାଏ ସ୍ପନ୍ଦନମୟ ଲହଡ଼ି ପହଁରିଗଲା ଦେବ ଆଗ୍ରୱାଲଙ୍କ ଦେହରେ । ଏଭଳି ଅନୁଭୂତି ସମ୍ଭବ ହୋଇ ନ ଥିଲା ଅନେକ ଦିନ ହେବ ତାଙ୍କ ପକ୍ଷରେ । ସେ ଗୁହିଁରହିଲେ ଇନ୍ଦୁ ଆଡ଼କୁ ଏବଂ ଏଇଭଳି ଯୁଗ ପରେ ଯୁଗ ତାକୁ ଗୁହିଁ ରହିଥାଆନ୍ତେ । ଏତେ ପାଖରେ ସେ ଥିଲା ଯେ, ତାଙ୍କୁ ଜଣାପଡ଼ୁଥିଲା ସମସ୍ତ ସ୍ୱପ୍ନର ପୃଥିବୀ ସତେ ଯେପରି ତାଙ୍କ ହାତ ପାଆନ୍ତାରେ । ବୋଧହୁଏ ନିଶ୍ଚିତ ହେବା ପାଇଁ ଇନ୍ଦୁ କାନ୍ଧ ଉପରେ ସେ ହାତ ରଖିଲେ । ତା'ପରେ ତାଙ୍କ ପାପୁଲି ମଝିରେ ରହିଥିଲା ଇନ୍ଦୁର ସମର୍ପିତ ମୁହଁ ।

ଦେବ ଆଗ୍ରୱାଲ କହିଲେ—"ଦୋକାନ ନ ଖୋଲିଲେ ବି ଚିନ୍ତା କ'ଣ ? ଏଇ, ତୁମେ ପାଖରେ ଅଛ । କ'ଣ ମୋର ଅଭାବ ଯେ ତରାଜୁ ଧରି ବାଣିଜ୍ୟ କରିବି ? ମୁଁ କ'ଣ ଦୋକାନୀଟିଏ ହେବାପାଇଁ ଯୋଗ୍ୟ ମଣିଷ ? ଦୋକାନଟା ଥିଲା ଗୋଟାଏ ସଉକ, ଯେମିତି ଅନେକ ବର୍ଷ ଆଗେ ମୁଁ ମିଶିଥିଲି ଯାତ୍ରା-ଦଳରେ । ମୁଁ ସ୍ୱପ୍ନପ୍ରବଣ, ଆବେଗ-ସର୍ବସ୍ୱ ମଣିଷ ଜଣେ । ତୁମେ ମୋତେ ଥରେ ସ୍ନେହ କରି ଦେଖ, ସମୁଦାୟ ବିଶ୍ୱକୁ ମୁଁ ଆଣି ଆସିବି ତୁମ ପାଇଁ । ବିଶ୍ୱାସ କର ।"

—"ମୁଁ ତୁମକୁ ଜମା ସ୍ନେହ ଦେଇ ନାହିଁ ?" ଏଭଳି ସ୍ୱର ଦେବ ଆଗ୍ରୱାଲ ଶୁଣି ନ ଥିଲେ ଆଗରୁ ଏତେ ବର୍ଷର ବିବାହିତ ଜୀବନକାଳ ମଧ୍ୟରେ ।

—"ଦେଇଚ । ମନା କରିବି କାହିଁକି ? କିନ୍ତୁ ସେ ମୁହୂର୍ତ୍ତ କେଡ଼େ କ୍ଷଣଭଙ୍ଗୁର ! ତୁମେ ମୋତେ ଆଦେଶ ଦେଇଚ, ମୋ ପାଖରେ ଅଳି କରିନ । ମୋତେ ଉତ୍ସାହିତ କରିବାକୁ ଗୁହିଁଚ, ପ୍ରବଞ୍ଚନା ଦେଇନ । ଟିକିଏ ରୁହ, ମୁଁ ଆଗ କହିସାରେ । ଆମେ ଦୁହିଁଙ୍କ ପାଖରେ ବାଡ଼େଇ ହେଇଚେ, ଆଲିଙ୍ଗନ କରି ନାହାନ୍ତି ।" ଦେବ ଆଗ୍ରୱାଲ ଅନ୍ୟଆଡ଼େ

ମୁହଁ ବୁଲେଇ ନେଲେ । ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ—"ଆଉ ଗୋଟେ କଥା । ମୋର ଏ ହାତ ଆଉ ଭଲ ହେବ ବୋଲି ମୋର ବିଶ୍ୱାସ ନାହିଁ । ମୁଁ ବୋଧହୁଏ ତଳକୁ ତଳକୁ ଖସି ଯାଉଛି ।"

ଦେବ ଆଚାର୍ଯ୍ୟ ଦେଖିଲେ, ଇନ୍ଦୁର ସ୍ୱାଭାବିକ ମୁହଁ ଉପରେ ଦୁଇଧାର ଲୁହ ଝରି ଆସିଛି । ଗୋଟାଏ ଧାର ଗଡ଼ିଗଲା ଓଠ ପର୍ଯ୍ୟନ୍ତ, ଅନ୍ୟଟି ଅଟକି ରହିଲା ନାକ ପାଖରେ । ଦେବ ଆଚାର୍ଯ୍ୟ ଦୁଇ ପାପୁଲିରେ ଲୁହ ପୋଛିଦେଲେ । ଇନ୍ଦୁ ଉଠି ଠିଆହେଲା । ତାଙ୍କ ଆଡ଼େ ପିଠି କରି ଆଲମିରା ଖୋଲିଲା । ବୋଧହୁଏ ଦୋକାନ ଚାବିକାଠି ରଖିଲା ତା ଭିତରେ । ଆଲମିରା କବାଟ ବନ୍ଦ କରି ଠିଆ ହୋଇ ରହିଲା ସେଇ ଜାଗାରେ, ସେଇ ଭଙ୍ଗୀ ନେଇ ।

ଲଗାଣ ବର୍ଷା ଆରମ୍ଭ ହୋଇ ଯାଇଥିଲା । ଦେବ ଆଚାର୍ଯ୍ୟ ବ୍ୟସ୍ତ ରହୁଥିଲେ ବେଉଷଣ କାମରେ । ଘରକୁ ଫେରୁ ଫେରୁ ଦିନ ବାରଟା-ଗୋଟାଏ ବାଜି ଯାଉଥିଲା । ତା'ପରେ ବିଶ୍ରାମ ନେବା କଥା । ବିଲରେ କୋଦାଳ ଧରିବାକୁ ପଡ଼େ ଦରକାର ହେଲେ । କେଉଁ ବିଲରେ କମ୍ ପାଣି ଅଛି, କେଉଁଠି ବେଶୀ । କେଉଁ ହିଡ଼ର ମାଟି ଧସକି ପଡ଼ୁଛି । ଏଭଳି କାମ କରିବାରେ ଅଭ୍ୟାସ ନ ଥିଲା କେବେ । କଷ୍ଟ ଲାଗେ, କିନ୍ତୁ କରିବାକୁ ହୁଏ ।

ଅପରାହ୍ଣଟା କଟେ ଠାକୁରଙ୍କ କୋଠା ବାରନ୍ଦାରେ ଲମ୍ବା ବଉଳ ଗଛମୂଳ ଚକ୍‌କଣ ପଥର ଉପରେ । ଫାଙ୍କା ଲାଗେ, କିନ୍ତୁ ଯନ୍ତ୍ରଣା ଆସେ ସନ୍ଧ୍ୟାବେଳେ । କୁଆଡ଼େ ଯିବାର ନାହିଁ । ମନହୁଏ, ଲକ୍ଷ୍ମୀମାର୍କେଟ ଆଡ଼େ ଯିବାକୁ । ପାଦ ବଢ଼େ ନାହିଁ । କୀର୍ତ୍ତନ ମଉସାଙ୍କ ଘର ପିଣ୍ଡାରେ ବସି ଭାଗବତ ଶୁଣିବାକୁ ଇଚ୍ଛାହୁଏ, ଅଥଚ ଯାଇପାରନ୍ତି ନାହିଁ । ଖାଲି ଇତସ୍ତତଃ ହେବା କଥା । ଦେଖିବାକୁ ପଡ଼େ, ଦୋକାନ ବାରନ୍ଦାରେ ଧୂଳି ଉଡ଼ୁଥିବାର । ଖାଁ ଖାଁ ଲାଗେ । ଚାଳରୁ ପାଣି ଗଳି ବାରନ୍ଦା ଉପରେ ଗୋଟାଏ-ଦୁଇଟା ଗାତ ହୋଇଗଲାଣି । ସମସ୍ତ ମନଯୋଗ ନେଇ ବିଶ୍ୱସ୍ତତାର ସହିତ ଚାବି ରହୁଥାଏ ଆଗ ଭଳି । ସ୍ୱପ୍ନ ହୁଏଛି

ଦେଖୁଥାଏ ଗୃହକାଠିରେ । ତା ଉପରେ ହାତ ବୁଲାଇବାକୁ ପଡ଼େ ଅସୀମ ସ୍ନେହର ସହିତ ।

ସେତେବେଳକୁ ରାତି କେତେ ହେବ କେଜାଣି ? ଦେବ ଆଚାର୍ଯ୍ୟଙ୍କ ନିଦ ଭାଙ୍ଗିଗଲା । ଗୋଟାଏ କାର୍ଯ୍ୟାନ୍ତିତ ସ୍ୱର ତାଙ୍କୁ ଡାକୁଚି କି ? ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଶୁଭିଲା— "ଦେବ ନନା ଶୋଇ ପଡ଼ିଲଣି କି ?"

ଅନନ୍ତ ଡାକୁଚି ବୋଧହୁଏ, ଅଥଚ ଏ ସ୍ୱରର ଚେହେରା ଏମିତି ଥିଲା ଯେ, ଦେବ ଆଚାର୍ଯ୍ୟ ଡରିଗଲେ ଓ ବିଗଳିତ ହୋଇଗଲେ । ଏ ସ୍ୱର ଆସୁଥିଲା ଗାଁର ମାଟି ତଳୁ । ବହୁଦିନ ଧରି ନୀରବ ଓ ପଙ୍ଗୁ ହୋଇ ପୋତି ହୋଇ ଯାଇଥିବା ସ୍ୱରଟେ ମାଟିର ପଲସ୍ତରା ଫଟେଇ ଉଠି ଆସୁଚି ଉପରକୁ । କୋଠରି ଭିତରେ ଥାଇ ଜବାବ ଦେବା ସମ୍ଭବ ନ ଥିଲା । ଖଟରୁ ଉଠିବାକୁ ଗଲାବେଳେ ଶୁଭିଲା ପୁଣି ସେଇ ସ୍ୱର । ଏଥର ନିଃସହାୟତା ଓ ଲୁହ ମାଖି ହୋଇଥିଲା ସେଥିରେ—"ପଟେ ରୁଟି ଦିଅ, ଦେବ ନନା । ଆଉ ଜମା ସମ୍ଭାଳି ହେବ ନାହିଁ ଏ ପେଟକୁ, ଉଠ ।"

ଗୋଟାଏ ଆହ୍ୱାନ ଥିଲା ଏଇଟା । ଭୋକର ଭାଷା ବି ଏମିତି ହୋଇପାରେ । ଜଣାଯାଉଥିଲା ବର୍ଷ ବର୍ଷ ଧରି କ୍ଷୁଧାକୁ ଆଉଜେଇ ନେବା ପାଇଁ ଚାଲିଥିଲା ଗୋଟାଏ ସଂଘର୍ଷ ମାଟିତଳେ । କିନ୍ତୁ ସମସ୍ତ ସଂଘର୍ଷକୁ ହାସ୍ୟାସ୍ପଦ କରି ଏଇ ଭୋକର ଦାବୀ ଭାଷା ଜରିଆରେ ପ୍ରକାଶିତ ହୋଇ ଯାଉଚି । ପୁଣି ଶୁଭିଲା—"ଉଠ, ଦେବ ନନା । ମୁଁ ଏଣେ ଠିଆହୋଇ ପାରୁନାହିଁ ଭଲକରି ।"

ଅନନ୍ତ କାନ୍ଦୁଚି ବୋଧହୁଏ । ଦେବ ଆଚାର୍ଯ୍ୟ ଲଣ୍ଠନ ତେଜିବା-ବେଳେ ଇନ୍ଦୁ ପଚାରିଲା—"ଯାଉଚ, କୁଆଡ଼େ ?"

—"ଅନନ୍ତ ଡାକୁଚି ।" ଉତ୍ତର ଦେଲେ ଦେବ ଆଚାର୍ଯ୍ୟ । ଭୋକରେ ଛଟପଟ ହେଉଚି ସିଏ ।

—"ପଖାଳ ନାହିଁ", ଇନ୍ଦୁ କହିଲା । ଚାରି-ପାଞ୍ଚପଟ ରୁଟି ଅଛି । ମୋ ଛୁଆମାନେ ସକାଳେ ଖାଇବେ ।

ଜବାବ ନ ଦେଇ ଦେବ ଆଚାର୍ଯ୍ୟ ବାହାରକୁ ଗଲାବେଳେ ଇନ୍ଦୁ ତାଙ୍କର ଗୋଟେ ହାତ ଧରି ପକାଇଲା । ପଚାରିଲା—"ତୁମେ ପାଗଳ ନା କ'ଣ ? ରୁଟି କେଇପଟ ତାଙ୍କୁ ଦେଲେ, ମୋ ଛୁଆ ଖାଇବେ କ'ଣ ?"

ଲଣ୍ଠନର ଅଭାବଗ୍ରସ୍ତ ଆଲୁଅରେ ଦେବ ଆଚାର୍ଯ୍ୟ ଚାହିଁଲେ ଇନ୍ଦୁର ମୁହଁକୁ । କହିଲେ—"ଚୁପ୍‌ଚାପ୍ ଶୋଇପଡ଼, ମୁଁ କହୁଚି । ସକାଳ କଥା ମୁଁ ବୁଝିବି ।"

କିଛି ସମୟ ଆଗରୁ ବର୍ଷା ହୋଇ ଯାଇଥିଲା ନିଶ୍ଚୟ । ଚାଳରୁ ପାଣି ପଡ଼ୁଚି ଟୋପା ଟୋପା ହୋଇ, ସେହି ଘରର ଲୁହ ଭଳି । ବୋଧହୁଏ ଆଖିପିଛୁଳାକେ 'ଅନନ୍ତ' ଶୁଖିଲା ରୁଟିତକ ଖାଇନେଲା । ଆଶ୍ଚର୍ଯ୍ୟ, କିଛି ବି କହିଲା ନାହିଁ । ଏପରିକି କୃତଜ୍ଞତାର ଭାଷା ମଧ୍ୟ ହଜଯାଇଥିଲା ତା'ଠାରେ । ନିବିଡ଼ ଅନ୍ଧକାରର ଏକ କଠିନ ଆକାର ଭଳି ସେ ଗଳିରାସ୍ତା ବାଟେ ଚାଲିଗଲା । ଗାଁ ରାସ୍ତାରେ ପହଞ୍ଚିବା ପରେ ଆଉ ଦେଖାଗଲା ନାହିଁ ।

ପରଦିନ ଏଇ ଘଟଣା ତିକ୍ତତାରେ ପରିଣତ ହୋଇ ଯାଇଥିଲା । ସକାଳେ ବିଲଆଡ଼େ ବାହାରିବା ବେଳକୁ ଇନ୍ଦୁ ସ୍ୱଭାବସୁଲଭ ତୀକ୍ଷ୍ଣ ସ୍ୱରରେ କହିଲା—"ଠିଙ୍ଗ ଠିଙ୍ଗ ହୋଇ ଯାଉଚ କୁଆଡ଼େ ? ଛୁଆମାନେ କ'ଣ ଖାଇବେ, ସେ ବ୍ୟବସ୍ଥା କରିଦିଅ ।"

ଦେବ ଆଚାର୍ଯ୍ୟ ଇନ୍ଦୁଆଡ଼କୁ ଚାହିଁ ସ୍ମିତ ହସି କହିଲେ—"ଚୂଡ଼ା କି ମୁଢ଼ି ଗଣ୍ଡେ ଲେଖାଏଁ ଦେଇଦିଅ । ଦିନେ ରୁଟି ନ ଖାଇଲେ କିଛି ଅପରାଧ ହୋଇଯିବ ନାହିଁ ।"

—"କେଉଁଠି ଚୂଡ଼ା କି ମୁଢ଼ି ରଖିଚ, ମୋତେ ଦେଖେଇ ଦେଲେ ସିନା ମୁଁ ସେମାନଙ୍କୁ ଦେବି ?" ଇନ୍ଦୁର ସ୍ୱର ଓ ଭାଷା ଶାଣିତ ଓ କଟୁ ହୋଇ ଯାଉଥିଲା ।

ଦେବ ଆଚାର୍ଯ୍ୟ ଡାକିଲେ ଚବିକୁ—"ଆ, ମା' ମୋ ସାଙ୍ଗରେ । ଆର ସାହିରୁ ଚୂଡ଼ା ନେଇ ଆସିବୁ ।"

କିଛିଦିନ ପରେ—

ରବି ହସ ହସ ମୁହଁ ନେଇ କହିଲା—"ବାପା, ଗୋଟେ କଥା କହିବି । ରାଗିବ ନାହିଁ ?"

ଦେବ ଆଚାର୍ଯ୍ୟ ଥକାମକା ହୋଇ ବସିଥିଲେ ପିଣ୍ଡାରେ କାନ୍ଥ ଉପରେ ଡେରି ହୋଇ । ବଡ଼ ଝିଅକୁ ଚାହିଁଲେ ଏବଂ ତାଙ୍କ ମୁହଁ ଏକ ନାହିଁ ନ ଥିବା ତୃପ୍ତି ଓ ଆତ୍ମୀୟ ଭାବରେ ଉଜ୍ଜ୍ୱଳ ହୋଇ ପଡ଼ିଲା । ସୁନ୍ଦର ସ୍ୱାସ୍ଥ୍ୟ, ଚମତ୍କାର ଦେହର ରଙ୍ଗ, ନିତାନ୍ତ ଶାନ୍ତଶିଷ୍ଟ ଓ ଆପଣାର କରିନେବା ଭଳି ବ୍ୟବହାର । ଆହୁରି ଭଲ ଦେଖା ଯାଆନ୍ତା, ଯଦି ସେ ଭଲ ଜାମା ପେଣ୍ଟ ଯୋଗାଇ ଦେଇପାରନ୍ତେ, ମୁହଁରେ ଯଦି ସେ ସ୍ନୋ-ପାଉଡ଼ର ଟିକିଏ ମାରିବାକୁ ପାଉଥାଆନ୍ତା । ସେ ରବି ଆଡ଼େ ଚାହିଁଲେ କିଛି ନ କହି । ତାଙ୍କ ମୁହଁ ସୂଚେଇ ଦେଉଥିଲା ଯେ, ରବି କଥାକୁ ସେ ଶୁଣିବେ ଆଗ୍ରହର ସହିତ । —"ବାପା, ମୁଁ ମାଟ୍ରିକ୍ ପଢ଼ନ୍ତି ।" ରବି ପ୍ରସ୍ତାବ ବାଢ଼ିଲା ଟିକିଏ ସଙ୍କୁଚିତ ହୋଇ । ଶ୍ରେଣୀରେ ସବୁବେଳେ ପ୍ରଥମ ସ୍ଥାନ ଅଧିକାର କରୁଥିବା ରବି ହୁଏତ ସ୍ୱପ୍ନ ଦେଖିଥିଲା ଯେ, ଏଇ ଭଲ ପଢ଼ିବା ହିଁ ହେବ ତା ଜୀବନର ନିର୍ଭରଯୋଗ୍ୟ ଅବଲମ୍ବନ । ଘରେ ଯାହା ଅସୁବିଧା ଥିଲେ ବି ବାପା ତାକୁ ମନା କରିପାରିବେ ନାହିଁ ଏଇ ବ୍ୟାପାରରେ । ସେ ଚାହୁଁଥିଲା ନିଜକୁ ଆହୁରି ସଂପ୍ରସାରିତ ଓ ମାର୍ଜିତ କରିବା ପାଇଁ ।

ରବି ଯଦି ଦେବ ଆଚାର୍ଯ୍ୟଙ୍କର ଗୋଟିଏ ହାତ, ଗୋଡ଼ କମ୍ପା ଏପରିକି କଲିଜାଟା ମାଗି ଥାଆନ୍ତା, ସେ ଆଦୌ କ୍ଷୁବ୍ଧ ହୋଇ ନ ଥାନ୍ତେ । ସେ ବସି ରହିଲେ ନିର୍ବାକ୍ ହୋଇ, ଅପାରଗତାର କଠୋରତା ଭିତରେ ପେଷି ହୋଇ, ଖୁବ୍ କ୍ଲାନ୍ତ ଓ ରୁକ୍ଷ ହୋଇ । ଅନେକ ସମୟ ପରେ ପଚାରିଲେ—"କେମିତି ପଢ଼ିବୁ ? ହାଇସ୍କୁଲ ଏଠୁ ଦଶ କିଲୋମିଟର ବାଟ । କେମିତି ପଢ଼ିବୁରେ, ମା ?" ଶେଷଆଡ଼କୁ ତାଙ୍କ ସ୍ୱର ଟିକିଏ କମ୍ପି ଉଠିଥିଲା ।

ରବି ସମ୍ଭବତଃ ଜାଣି ନେଇଥିଲା, ଏମିତି ଉତ୍ତରଟେ ସେ ପାଇବ ବୋଲି । ତଥାପି ତା ମୁହଁ ଶୁଖିଗଲା । ଗୋଟାଏ ଜନିଷ

ଅନିବାର୍ଯ୍ୟ ବୋଲି ଜାଣିଲେ ମଧ୍ୟ, ତା'ର ସାମନାସାମନି ହେଲେ ସବୁବେଳେ ଏମିତି ହୁଏ । ଅନିବାର୍ଯ୍ୟତା ସମସ୍ତ ସ୍ୱପ୍ନ ଓ ଯୋଜନାର ପରିପନ୍ଥୀ । ଦେବ ଆଚାର୍ଯ୍ୟ ଭାବୁଥିଲେ, ଅଭାବ ଓ ନୈରାଶ୍ୟ ଭିତରେ ମଧ୍ୟ ସ୍ୱପ୍ନ ଓ ଯୋଜନା ପାଇଁ ଜାଗା ଟିକିଏ ଥାଏ । ଚିନା ପଚାରିଲା— "ଘରେ ତେବେ ବସି ବସି ମୁଁ କରିବି କ'ଣ ?" ଏ ପ୍ରଶ୍ନଟା ବାସ୍ତବିକ୍ ସେ ଦେବ ଆଚାର୍ଯ୍ୟଙ୍କୁ ପଚାରି ନ ଥିଲା । ପଚାରିଥିଲା ନିଜକୁ । କିନ୍ତୁ ଉଚ୍ଚାରିତ ହୋଇଗଲା ସେଇଟା ।

କୌଣସି ଉତ୍ତର ନ ଥିଲା ଦେବ ଆଚାର୍ଯ୍ୟଙ୍କର । ଚିନା ନିଜେ ବି ଜାଣି ନ ଥିଲା, କେଉଁ ନିର୍ମମ ପ୍ରଶ୍ନଟେ ପଚାରି ଦେଲା ସେ ବାପାଙ୍କୁ । ଦେବ ଆଚାର୍ଯ୍ୟଙ୍କ ସାମନାରେ ଚିନା ନ ଥିଲା । ଥିଲା ଗୋଟାଏ ପ୍ରଶ୍ନ-ବାଚକ ଚିହ୍ନ । ଏ ଚିହ୍ନ ଦାବି କରୁଥିଲା ଉତ୍ତରଟିଏ । ଘରର ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କୀୟ ଉତ୍ତରଟିଏ ଖୋଜୁଥିଲା ଏ ପ୍ରଶ୍ନ ।

—"ଚିନା କ'ଣ ପଚାରୁଚି ପରା ?" ଇନ୍ଦୁ କହିଲା । "ଜବାବ ଦେଉନ ? ଚୁପ୍ ହୋଇ ବସିଲ କାହିଁକି ?"

ଦେବ ଆଚାର୍ଯ୍ୟଙ୍କର ନୀରବତା ଏତେ କଠିନ ଓ ଶକ୍ତିଶାଳୀ ଥିଲା ଯେ, ତାହା ତରଙ୍ଗେଲେ ନାହିଁ ପତ୍ନୀର ବଦ୍ଧମୂଳ ଇଙ୍ଗିତରେ; ଭାଙ୍ଗିଗଲା ନାହିଁ ସ୍ଥିର କରୁପାଯୁ ଜିଜ୍ଞାସାରେ ।

ଜଣାପଡ଼େ, ଗୋଟାଏ ବିଗ୍ରହ-ଲୁଣ୍ଠିତ ମନ୍ଦିର ଭିତରେ ସେ ଏକୁଟିଆ ଠିଆ ହୋଇଚନ୍ତି । ମନ୍ଦିରର କାନ୍ଥ ଅନେକ ଦିନରୁ ଭୁଲିଗଲାଣି ଆଳତି ସମୟର ଘିଅଦୀପର ଶିଖା କପର ଦେଖାଯାଏ । ଶଙ୍ଖ, ହୁଳହୁଳି ଓ ଝାଞ୍ଜ ଶବ୍ଦର ପ୍ରତିଧ୍ୱନି କେବେଠୁ ହଜିଗଲାଣି ମନ୍ଦିରର ଗମ୍ବୁଜରେ । ଗୋଟାଏ ହୁଁ...ହୁଁ...ଶବ୍ଦ ମାଡ଼ିବସିଥାଏ ସେହି ମନ୍ଦିରର ଅଭ୍ୟନ୍ତରକୁ । ଦୋକାନ ଭିତରେ ଠିଆହେଲେ ସେମିତି ଲାଗେ । ଅଥଚ କେତେବେଳେ କପର, କାହିଁକି କେଜାଣି ସେ ଖୋଲନ୍ତି ଦୋକାନର ଦ୍ୱାର । ଭିତରେ ଠିଆ ହୋଇ ରହନ୍ତି ହଲ୍‌ଚଲ୍ ନ ହୋଇ ।

ବେଳେବେଳେ ହାତ ପାପୁଲି ଦୁଇଟା ଉଠାଇ ଆଣନ୍ତି ମୁହଁ ସାମନାକୁ । ଗୋଟାଏ ଆରିଶି ଧରିବା ଭଳି ପାପୁଲି ଦୁଇଟାକୁ ଦେଖନ୍ତି

ଅସୀମ ମମତା ଓ ସ୍ନେହର ସହିତ । ସେ ଜାଣନ୍ତି ଯେ, ସେଇ ଆଙ୍ଗି ଭିତରେ ନାହିଁ ନାହିଁର ଚରମତମ ସଙ୍କେତ ପ୍ରତିଫଳିତ ହୋଇଥାଏ । ତଥାପି ସେ ବହୁ ପୁରୁଣା ତକିଆକୁ ଧରନ୍ତି । ଏଣେତେଣେ ଗୁହିଁବା ପରେ ଖାଲି ଜାଗ୍ ଦୁଇଟା ଥୋଇଦିଅନ୍ତି ତକିଆର ଦୁଇ ପାଖରେ । ତକିଆ ଟେକିବାମାତ୍ରେ ତଳୁ ଉଠିଆସେ ତକିଆର ଦୁଇ ପାଖରେ ଥିବା ଦୁଇଟି ଚରମ ଶୂନ୍ୟତା । ଦେବ ଆଚାର୍ଯ୍ୟ ଆଶ୍ୱସ୍ତ ହୁଅନ୍ତି । କିଏ କହିଲା, ସେ ତକିଆ ଟେକିପାରିବେ ନାହିଁ ବୋଲି ? ଘରର ଅଭାବ, ନା ତାଙ୍କ ଶାରୀରିକ ଦୁର୍ବଳତା ? ଏଇ ତ, ସେ ଉଠାଇ ପାରିଲେ, ଦୃଢ଼ତାର ସହ ଧରିପାରିଲେ ତକିଆକୁ ଆଉ ଅସୁବିଧା କ'ଣ ? ତଥାପି ରହିଚି ଲମ୍ବା ଭବିଷ୍ୟତଟେ । ଗୋଟାଏ ସମ୍ଭାବନାର ଆହ୍ୱାନ ରହିଚି ଆଗରେ । ଏଇ ଜାଗାରେ ମସ୍ତବଡ଼ ଦୋକାନ ଖୋଲିବ । ସେ ନିଜେ ମଧ୍ୟ ଦେଖି ନ ଥିବା ଦୋକାନଟେ । ପ୍ରଶସ୍ତ ବାରନ୍ଦାରେ ଚାଲିବ ତାସ୍-ପଶା ଖେଳ । ପଟେ ଛୁଟିପାଇଁ ଆର୍ତ୍ତନାଦ କରୁଥିବା ଅନନ୍ତ ବସିରହିବ ତାଙ୍କ ଆଦେଶ ପାଳନ କରିବା ପାଇଁ । ଚଲିମ ରେଡ଼ି କର ବୋଲି କହିବାକ୍ଷଣି ସେ ସର୍ବୋତ୍କୃଷ୍ଟ ଗଞ୍ଜେଇ ଦଳିବ, ସର୍ବୋତ୍କୃଷ୍ଟ ସିଗାରେଟ୍‌ର ତମାଖୁ ସହିତ ।

ଅପେରା ଡାଇଲଗ୍ ଶୁଣିନାହିଁ ଏଇ ଗାଁ ଅନେକ ଦିନରୁ । ଏଇଭଳି, ଠିକ୍ ଏଇଭଳି ଖଣ୍ଡା ରହିଥିବ ମୋ ହାତରେ ।

"—ବାପା ।"

ଦେବ ଆଚାର୍ଯ୍ୟ ସଚେତନ ହେଲେ, କେହି ଜଣେ ଡାକୁଚି ତାଙ୍କୁ । ଚମତ୍କାର ଭଙ୍ଗୀନେଇ ସେ ଗୁପ୍ତିର ଜଙ୍କ୍‌ଗ୍ରସ୍ତ ଲମ୍ବା ଛୁରିକୁ ଧରିଥିଲେ ହାତରେ । ତରବର ହୋଇ ତାହାକୁ ଯଥା ସ୍ଥାନରେ ରଖି ପଚାରିଲେ ସ୍ୱାଭାବିକ ସ୍ୱରରେ—"କ'ଣ ହେଲାରେ, ବାପା ?"

ବାବୁଲି ତାଙ୍କ ପାଖକୁ ଚାଲିଆସିଲା । ଗୁରୁତ୍ୱପୂର୍ଣ୍ଣ ଗୁପ୍ତ କଥା ଶୁଣେଇବା ଭଳି କହିଲା—"ତୁମେ କହିଥିଲ, ଆମର ଯାହା ଦରକାର, ତୁମକୁ ଏକୁଟିଆ ବେଳେ କହିବା ପାଇଁ ।"

ଏଭଳି ଉପଦେଶ ଦେଇଥିଲେ ଦେବ ଆଚାର୍ଯ୍ୟ କେଉଁଦିନ ତଳେ । ଛୁଆମାନେ ଆବଶ୍ୟକୀୟ ଜିନିଷଟି ତାଙ୍କୁ ମାଗିବା ବେଳେ ସେ ଅଧିକାଂଶ

ସମୟରେ ଅପ୍ରସ୍ତୁତ ହୋଇ ପଡ଼ନ୍ତି । ନିଜର ଅକ୍ଷମତା ଘୋଡ଼େଇବା ପାଇଁ ଠିକ୍ ଭାଷା ପାଆନ୍ତି ନାହିଁ । ଏଇଭଳି ନିପାରିଲା ମୁହୂର୍ତ୍ତରେ ଇନ୍ଦୁର ପରିହାସ ସହିବା ସମ୍ଭବ ହୁଏ ନାହିଁ ଜମା ।

—"କ'ଣ କହ ?" ଦେବ ଆଚାର୍ଯ୍ୟ ଅଭୟବାଣୀ ଶୁଣେଇଲେ ଜଣେ ଉଦାର ଓ ସକ୍ଷମ ମଣିଷ ଭଳି ।

—"ତୁମେ କହିଥିଲ, ଗଣେଶପୂଜା ଚାନ୍ଦା ଆଜି ଦେବ ବୋଲି । ଏଇ ଦେଖ, ପେଣ୍ଟ୍‌ଟା ଛିଣ୍ଡିଗଲାଣି । ନୂଆ ଜାମା-ପେଣ୍ଟ ଦେବ ବୋଲି ମଧ୍ୟ କହିଥିଲ ।" ବାବୁଲି ନିତାନ୍ତ ଯୁକ୍ତିଯୁକ୍ତ ଅନୁରୋଧ ଉପସ୍ଥାପନ କଲା ତାଙ୍କ ଆଗରେ ।

ବାବୁଲିକୁ ଦୁଇ ହାତରେ ଗ୍ରୀବାରେ ଜାକି ଧରି ଦେବ ଆଚାର୍ଯ୍ୟ ତା' ମୁଣ୍ଡରେ ଚୁମ୍ବନଟିଏ ଦେଲେ । କହିଲେ—"ଆଜି ଆଣି ଦେବି ତୋର ନୂଆ ଜାମା-ପେଣ୍ଟ, ଆଜି । ବୁଝିଲୁ ? ଆଜି । ଚାନ୍ଦା ଟଙ୍କା କାଲି ନେଇ ସ୍କୁଲକୁ ଯିବୁ । ହେଲା ଏଥର ?"

—"ହଁ ।" ଗୋଟିଏ ମୁହୂର୍ତ୍ତ ସେଠାରେ ନ ଅଟକି ବାବୁଲି ଉଡ଼ିଆଁ ମାରି ବାହାରିଗଲା ସେଠାରୁ, ଆକାଶର ଜହ୍ନ ପାଇବାର ପ୍ରତିଶ୍ରୁତି ନେଇ ।

କ'ଣ କରାଯାଇପାରେ ? ଏଇ ପ୍ରଶ୍ନ ନିଜକୁ ପଚାରି ଦେବାମାନେ ଶୁଖିଲା ପଥରର ଆକାଶ ଛୁଆଁ କାନ୍ଥଟେ ଠିଆ ହୋଇପଡ଼େ ମୁହଁ ଓ ଗ୍ରୀବାକୁ ସ୍ପର୍ଶ କରି । କେଉଁଆଡ଼େ ପଳେଇବେ କି ? ଏତିକି ଭାବିବା ମାତ୍ରେ କେଁକଟର ସବସ୍ୱ ସାଇକେଲର ଚେନ୍ ଛିଣ୍ଡିଯାଏ । କୌଣସି ଉପାୟ ଆଉ ମୁଣ୍ଡ ଭିତରକୁ ପଶିବ ନାହିଁ ? ଏତିକି ଚିନ୍ତା କରିବା ସଙ୍ଗେ ସଙ୍ଗେ ଜଣାପଡ଼େ, ତାଙ୍କର ସମଗ୍ର ଦେହ ଓ ମୁଣ୍ଡ ଭିତରକୁ ସଞ୍ଚରି ଯାଉଛି ଦୁର୍ନିବାର ପାରାଲିସିସ୍ ବେଗ । ଉଜୁଡ଼ି ଯାଇଥିବା ବ୍ୟାପକ କ୍ଷେତ ଭିତରେ ସେ ଯେପରି ଠିଆ ହୋଇଛନ୍ତି ପାଳଭୂତ ଭଳି ।

ପିଲେ, ଆସ । ଚାଲିଆସ ବାରନ୍ଦା ଉପରକୁ । ନିଅ, ବିସ୍କୁଟ । ଏଇ ନିଅ, ଲଜେନ୍‌ସ ! ଦେବ ଆଚାର୍ଯ୍ୟଙ୍କ ଆଗରେ ଠିଆ ହୋଇ ନ

ଥିଲେ କୌଣସି ଗାଁ ପିଲା । ତାଙ୍କର ନିଜ ତିନିଟା ଝିଅ ଚାହିଁଥିଲେ ତାଙ୍କୁ ସୀମାହୀନ ଆଗ୍ରହ ନେଇ । ବଢ଼ାଇ ଦେଇଥିଲେ ଦୁଇଟା ଲେଖାଏଁ ହାତ ଜାଲ୍‌ର ଆକାଶରୁ ଜହ୍ନ ଧରିବା ଭଳି । ଦେବ ଆଚାର୍ଯ୍ୟ ସଚେତନ ହୋଇଗଲେ । ପ୍ରକୃତରେ କେହି ନାହାନ୍ତି ତାଙ୍କ ଆଗରେ । ସେ ଠିଆ ହୋଇଚନ୍ତି ସେତେବେଳ ପର୍ଯ୍ୟନ୍ତ ଦୋକାନରେ । ତାଙ୍କ ହାତ କେବଳ ପରିକ୍ରମା କରୁଚି ଶୂନ୍ୟ ଜାଲ୍‌ର ମରୁଭୂମି ଭିତରେ ।

ବାହାରି ଆସିଲେ । ତାଲା ପକେଇଲେ । ଅଭ୍ୟାସବଶତଃ ତାଲାକୁ ଟାଣିଲେ, ସେଇଟା ପ୍ରକୃତରେ ପଡ଼ିଚି ବୋଲି ନିଶ୍ଚିତ ହେବାକୁ । ସାଇକେଲ ବାହାର କଲେ । ଦୁଇ ହାତ ଧରିପାରୁଚି ସାଇକେଲର ହାଣ୍ଡେଲ୍ ଦୃଢ଼ଭାବରେ । ଅସୁବିଧା କ'ଣ ?

ସେଇଦିନ ରାତିରେ, ଅନେକ ଗୁଡ଼ାଏ ରାତିର ବ୍ୟବଧାନ ପରେ ଶୁଭିଲା ପୁରୁଣା ଆହ୍ୱାନ—"ଦେବ ନନା, ଶୋଇପଡ଼ିଲଣି କି ?" ଟିକିଏ ନୀରବତା ପରେ ପୁଣି ସେହି କ୍ଷୁଧା ଓ ଆତୁରତାର ଡାକ— "ଦେବ ନନା ଉଠ । ଦିଅ ରୁଟି ପଟେ । ଆଉ ହେଉନାହିଁ ସମ୍ଭାଳି ଜମା ।"

ଦେବ ଆଚାର୍ଯ୍ୟ ଆଖି ଖୋଲିଲେ । ଅନ୍ଧାର ଘର ଭିତରେ କ'ଣ ଗୋଟାଏ ଦେଖିବା ପାଇଁ ଚେଷ୍ଟା କଲେ । କିନ୍ତୁ କିଛି ଦେଖାଗଲା ନାହିଁ । ଅଥଚ ଆଖି ବନ୍ଦ କରିପାରିଲେ ନାହିଁ ସେ । ବାହାରୁ ଆସୁଥିଲା ସେହି ଡାକ—"ଉଠ ଦେବ ନନା । ଘରି ଭୋକ ଆଜି ।"

ଦ୍ୱାର ଫିଟିଲା ନାହିଁ । ଭୋକର ସ୍ୱର ମଧ୍ୟ ନୀରବ ହୋଇଯାଏ । ନୀରବ ହୋଇଗଲା । ସେ ଡାକ ଫେରିଗଲା ବନ୍ଦ ଦରଜା ପାଖରୁ । ଆଉ ଶୁଭିଲା ନାହିଁ । ଯା'ପରେ ଆଉ କେବେ ଶୁଭି ନାହିଁ ସେ ଡାକ ।

ନମାଇଁର ମୋଟର ସାଇକେଲ ଲକ୍ଷ୍ମୀମାର୍କେଟ୍ ସାମନାରେ ଅଟକିଲା । ବାରନ୍ଦା କଡ଼ରୁ ତିଆରି ହୋଇଥିବା ସ୍ଲୋପିଙ୍ଗ୍ ଉପରଦେଇ ସେ ଗାଡ଼ିଟାକୁ ଉଠାଇନେଲା ଉପରକୁ । ମହି ରୁମ୍‌ର ଦରଜା ଖୋଲି ସାରିଥିଲା ନହାର । ଖଟ ଇତ୍ୟାଦି ଅଛି ସେଠାରେ । ଗାଡ଼ିଟା ସେଇ ରୁମ୍‌ରେ ରହେ । ନହାର ଏବେ ସେଇଠି ଶୋଉଚି, ରାତିରେ ।

ଶୀତଦିନ, ମୁହଁ ସଞ୍ଜବେଳ ହୋଇଥିବାରୁ ବିଶେଷ କୋଳାହଳ ନାହିଁ । ତଥାପି କେତେଟା ପିଲା ବସିଥିଲେ ବାରନ୍ଦାରେ ଓ ନିଜ ନିଜ ମଧ୍ୟରେ ହସାହସି ହେଉଥିଲେ । ଗ୍ରେଟ ଗ୍ରେଟ ନଈ ଉପରେ ପୋଲ ହୋଇଯାଇ ଥିବାରୁ ସାଇକେଲ ଚଳାଚଳ ଅନେକ ବୃଦ୍ଧି ପାଇଚି । ଲକ୍ଷ୍ମୀ ମାର୍କେଟ ସାମନାରେ ଥିବା ଆମ୍ବଗଛ ପାଖରେ କରୁଣା ବୋଲି ଗୋଟେ ପିଲା ଖୋଲିଚି ଜଳଖିଆ ଦୋକାନ । ଦୋକାନ ସାମନା ବେଞ୍ଚରେ କେତେଜଣ ଲୋକ ବସି ଚା' ଖାଉଚନ୍ତି ଓ ଗପସପ ହେଉଚନ୍ତି । ଅନ୍ୟ ଗାଁର ଲୋକ ବୋଧହୁଏ । ସେମାନଙ୍କର ସାଇକେଲ ଠିଆ ହୋଇ ରହିଚି ଦୋକାନ କଡ଼ରେ । ଚା' ଦୋକାନ ପାଖରେ ସିଙ୍ଗାମୁଣ୍ଡାର ସାଇକେଲ ମରାମତି ଦୋକାନ । କେତେବେଳେ କମିତି ଖୋଲା ରହେ ।

ନିମାଇଁ ପାଣି ଗ୍ଲାସେ ପିଇଲା ଓ ନିର୍ଦ୍ଦେଶ ଦେଲା—"ରେଡ଼ିଓଟା ଏତେ ଜୋରରେ ବଜଉଚୁ କାହିଁକି ? କ'ଣ ଶୁଣୁଚୁ ସେଥିରୁ ?" ନିହାର ବନ୍ଦ କରିଦେଲା ସେଇଟା ।

ଗାଇଁକୁ ସେ କେବଳ ସମ୍ମାନ କରେ ନାହିଁ, ଭୟ କରେ ମଧ୍ୟ । ତା ଉପସ୍ଥିତିରେ ଦୋକାନ ବାରନ୍ଦାରେ ଉଚ୍ଛୃଙ୍ଖଳତା ପ୍ରକାଶ ପାଏ ନାହିଁ । ଗାଁର ଜଣେ ଉଦୀୟମାନ ପ୍ରଭାବଶାଳୀ ଲୋକ ହିସାବରେ ସେ ଯଥେଷ୍ଟ ଖାତିର ପାଏ ସମସ୍ତଙ୍କଠାରୁ । ଏବେ ତା'ର କର୍ମ ପରିସର ଅନେକ ବୃଦ୍ଧି ପାଇଚି । କଣ୍ଟ୍ରାକ୍ଟ ମିଳିଯାଉଚି କେବେ କେମିତି । ପୋଷ୍ଟ-ଅଫିସ ଓ ଠାକୁରଙ୍କ କାମ ବୁଝାଶୁଣା କରିବା ପରେ ବେଶୀ ସମୟ ମିଳୁ ନାହିଁ ଅନ୍ୟ କାମ ପାଇଁ । ଏଥିପାଇଁ କିଛି ଟଙ୍କା ଲୋନ୍ କରି ମୋଟର ସାଇକେଲଟେ କିଣିବାକୁ ପଡ଼ିଲା ତାକୁ । ଘାଟଗାଁରେ ଜମି କିଣି ଗ୍ରେଟ ସିନେମା ହଲ୍‌ଟେ କରିବ ବୋଲି ତା'ର ଯୋଜନା ଅଛି ।

ଅନେକ ଥର ତଳେ ନିହାରକୁ ସେ ସତର୍କ କରି ଦେଇଥିଲା, ଦୋକାନ ପାଖରେ ଫେରିକାମୀ ନ ହୁଏ ଯେମିତି । ଗାଁର କେତେକ ଲୋକ ତା ପାଖରେ ଅଭିଯୋଗ କରିଥିଲେ ଯେ, ଲକ୍ଷ୍ମୀ ମାର୍କେଟ ପରିସର ମଧ୍ୟରେ ଅନେକ ଆପତ୍ତିଜନକ କାର୍ଯ୍ୟକଳାପ ଚାଲିଚି । ମଦ ପିଆ

ହେଉଛି ଓ ଆହୁରି କେତେକ ବାଜେ ଧନ୍ଦା ମଧ୍ୟ ଚାଲିଛି । ଏଭଳି ବଦନାମ ସେଠାରେ ଯେପରି ନ ହୁଏ—ନିମାଇଁ ସାବଧାନ କରି ଦେଇଥିଲା ନିହାରକୁ ।

ନିହାରଠାରୁ ଏ କଥା ଶୁଣି ଗୋଟାଏ ପିଲା ତାତି ଯାଇଥିଲା— "ମଦ ପିଇଲେ ଯେ କ'ଣ ହେଲା ? କାହାର ବାପ ସମ୍ପତ୍ତି ଏଥିରେ ଖର୍ଚ୍ଚ ହୋଇ ଯାଉଛି ? ବାଜେ ଧନ୍ଦା ଗୋଟେ କ'ଣ ? କ'ଣ ଆମେ କରନ୍ତୁ ତେବେ ? ଚବିଶ ଘଣ୍ଟା ଗଞ୍ଜଣି ପିଟୁଥା'ନ୍ତୁ, ନା ଭାଗବତ ଶୁଣୁଥା'ନ୍ତୁ ? କେତେଟା ବୁଢ଼ାଙ୍କ କଥା ସବୁବେଳେ ମାନିବାକୁ ଆମେ କ'ଣ ବାଧ୍ୟ ?"

କ'ଣ କରନ୍ତୁ ଆମେ, ତା'ହେଲେ ? ଏଇ ପ୍ରଶ୍ନର ମୁକାବିଲା କରିପାରୁ ନ ଥିଲେ ଏଇ ଶିକ୍ଷିତ-ଅର୍ଦ୍ଧଶିକ୍ଷିତ ବେକାର ପିଲାମାନେ । କୌଣସି କାମ ନ ଥାଏ ତାଙ୍କ ହାତରେ । ଏଥିପାଇଁ ଲକ୍ଷ୍ୟହୀନ ଭାବରେ ସେମାନେ ଅସରନ୍ତି ସମୟ ଖର୍ଚ୍ଚ କରନ୍ତି ଏବଂ ଆବିଷ୍କାର କରନ୍ତି ଯେ, ସମୟ କଟୁନାହିଁ ଜମା । ଘରକୁ ଯାଇ ବୋର୍ ହେବାକୁ ଇଚ୍ଛା ନ କରି ସେମାନେ ବୁଲନ୍ତି, ଏଇଭଳି ନିଜକୁ ଠକିବା ଭିତରେ ସମୟ କଟିଯାଉ ସେମାନଙ୍କୁ ବିବ୍ରତ ନ କରି । କିଛି ଗୋଟାଏ କରିବା ଉଚିତ ବୋଲି ଭାବିବା କ୍ଷଣି ସେମାନେ ହାଇମାରନ୍ତି । ଗୋଟାଏ ଅସାଧାରଣ ଆଳସ୍ୟ ଓହ୍ଲାଇ ଆସେ ସେମାନଙ୍କର ଦେହ ଉପରକୁ ।

ଘରକୁ ଆସି ନିମାଇଁ ଗୋଡ଼-ହାତ ଧୋଇଲା । ଗୁ' କପେ କରିବା ପାଇଁ କହିଲା । ନିଜ କୋଠରିରେ ବସି ଅପେକ୍ଷା କଲା । ପୁରୁଣାକାଳିଆ ଖଞ୍ଜାଘର । ନୂଆ ଘର ତିଆରି ନ କଲେ ରକ୍ଷା ନାହିଁ । ପରିବାର ବଢ଼ୁଛି । ଏ ପୁରୁଣା ଘରର କାଠ ମଧ୍ୟ ଖରାପ ହୋଇ ଆସିଲାଣି । ଜଙ୍ଗଲ ସମ୍ପୂର୍ଣ୍ଣ ସଫା ହେବା ପୂର୍ବରୁ ଅନ୍ୟମାନଙ୍କ ଭଳି ସେ ମଧ୍ୟ ଗୁଡ଼ାଏ କାଠ ସଂଗ୍ରହ କରି ରଖିଛି । ଆର୍ଥିକ ଅବସ୍ଥା ଆଉ ଟିକିଏ ଦୃଢ଼ ହେଲେ ଭଲ ଘର ତିଆରି କରିବ । ଗୁହୁଁ ଗୁହୁଁ ଗାଁ ଚେହେରା ବଦଳି ଯାଉଛି ଖୁବ୍ ଦ୍ରୁତଗତିରେ । ଅନେକ ବର୍ଷ ଆଗେ କେବଳ ଘନଶ୍ୟାମ ଦାଦାଙ୍କର ଭଲ ଘର ଖଞ୍ଜାଟେ ଯାହା ଥିଲା । ଏବେ ଆହୁରି କେତେ ଚୂନପଲସ୍ତରା ଓ ଟାଇଲ-ଛପର ଘର ହୋଇଗଲାଣି ।

ଗାଁ ପିଇସାରିବା ପରେ ସେ ଆସିଲି ଘନଶ୍ୟାମ ଦାଦାଙ୍କ ଘର-ଆଡ଼େ । କେତେଟା ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମ୍ପର୍କରେ ଆଲୋଚନା କରିବା ଦରକାର । ଗାଁ ବ୍ୟାପାରରେ ଏବେ ସେ ବିଶେଷ ଜଡ଼ିତ ହେବାକୁ ଚାହୁଁ ନାହାନ୍ତି । କେହି ତ ମାନୁ ନାହାନ୍ତି କାହାରିକୁ । ଯଦି ସୁବିଧା ଅସୁବିଧା କିଛି ହୁଏ, ତେବେ ଅନେକେ ଯାଆନ୍ତି ନିମାଇଁ ପାଖକୁ ।

ଘନଶ୍ୟାମ ଦାଦାଙ୍କର ପିଲାମାନେ ସହରରେ ରହି ପଢ଼ାପଢ଼ି କରିବା ପରଠାରୁ ଧାନ କରଜ ଲଗେଇବା ସମ୍ଭବ ହେଉ ନାହିଁ । ପିଲାଗୁଡ଼ାକ ଭଲ ପଢ଼ନ୍ତି ବୋଲି ସେ ହାତଖୋଲି ଖର୍ଚ୍ଚ କରନ୍ତି ସେମାନଙ୍କ ପାଇଁ । ଏଥିପାଇଁ ବେଳେବେଳେ ଅଭାବ ଭିତରେ ତାଙ୍କୁ ପଡ଼ିବାକୁ ହୋଇଥାଏ । ନିମାଇଁ ପାଖରୁ ଅନେକ ସମୟରେ ସେ ଧାର ଆଣନ୍ତି । ଗୋଲାରୁ ଲୋନ୍ ଆଣନ୍ତି । ଜଣେ ଲୋକ ଅଭାବଗ୍ରସ୍ତ ହେଲେ ଗାଁ ବ୍ୟାପାରରେ ତା'ର ପ୍ରଭାବ ଆପାତତଃ ନଷ୍ଟ ହୋଇଯାଏ । ଏହା ସତ୍ତ୍ୱେ ନିମାଇଁ ବରାବର ତାଙ୍କର ପରାମର୍ଶ ଆଣେ, ଯଦି କଥାଟା ଗୁରୁତର ହୋଇଥାଏ ।

ଘନଶ୍ୟାମ ଦାଦା ଖଳାରେ ଥିଲେ । ଧାନବାଡ଼ା ଥାକ ମରା ଯାଇଛି ଗୃହପାଖରେ । ଖଳା ଭିତରକୁ ଆସିବା ପାଇଁ ପ୍ରବେଶ ପଥରେ ନିଆଁ ଜଳୁଛି । ପାଖରେ ତିଆରି ହୋଇଛି ପାଲି ଗୋଟିଏ । ତା' ଭିତରେ ମୂଲିଆ କେତେଜଣ ଶୋଇବେ । ଧାନ ଜଗିବେ ଏବଂ ପାହାନ୍ତା ବେଳକୁ ବେଙ୍ଗଳା ପକେଇବେ । ଘନଶ୍ୟାମ ଦାଦା ବସିଥିଲେ ନିଆଁ ପାଖରେ । ହିସାବ କରୁଥିଲେ ଏ ବର୍ଷ କେଉଁ ଜମିରୁ କେତେ ବାଡ଼ା ଆମଦାନୀ ହେଲା । ଗତବର୍ଷ ତୁଳନାରେ କେଉଁଠି ବେଶୀ ହୋଇଛି କି କମିଯାଇଛି ।

ନିମାଇଁକୁ ଦେଖିବା ମାତ୍ରେ ଘନଶ୍ୟାମ ଦାଦା ପଚାରିଲେ— "କିରେ, ଅତୁଳବାବୁଙ୍କ କଥା କ'ଣ ହେଲା ?"

ପ୍ରାଇମେରୀ ସ୍କୁଲର ସହକାରୀ ଶିକ୍ଷକ ଅତୁଳ ବାବୁଙ୍କୁ କେନ୍ଦ୍ର କରି ଗାଁରେ ଚାଞ୍ଚଲ୍ୟକର ଘଟଣା ଘଟିଥିଲା । ନୂଆ ହୋଇ ଗାଁ ସ୍କୁଲରେ ଜଏନ୍ କରିଥିବା ଏଇ ଶିକ୍ଷକ ଜଣକ ରହୁଥିଲେ ସ୍କୁଲ ଅଫିସ୍ ଘରେ । ପାଖ ଗାଁମାନଙ୍କରେ ସ୍କୁଲ ସ୍ଥାପିତ ହୋଇଗଲା ପରେ, ଆମ ଗାଁ ସ୍କୁଲର

ହଷ୍ଟେଲ ଆଉ ଭଲକରି ଚାଲୁ ନ ଥାଏ । ତେବେ, ମାଇନର ସ୍କୁଲରେ ଷ୍ଟାଇପେଣ୍ଡ ପାଉଥିବା କେତେଜଣ ଆଦିବାସୀ ହରିଜନ ଛାତ୍ରଙ୍କୁ ନେଇ କୌଣସିମତେ ହଷ୍ଟେଲ ଚାଲିଥିଲା । ଘର ଅନେକ ଦୂରରେ ହୋଇ-ଥିବାରୁ ଅତୁଲବାବୁ ବାଧ୍ୟହୋଇ ସ୍କୁଲରେ ରହୁଥିଲେ ଏବଂ ଶନିବାର ଦିନ ଯାଉଥିଲେ ଗାଁ'କୁ । ଫେରି ଆସୁଥିଲେ ସୋମବାର ଦିନ ।

କୁମରକୁ ଚିହ୍ନି ନ ଥିବା ଲୋକମାନେ ହିଁ ତା'ର ଦସ୍ତୁମୀସ୍ତୁ ଶିକାର ହେଉଥିଲେ । ଏଭଳି ଲୋକମାନଙ୍କ ଆଗରେ ସେ ଏଭଳି କଥା କହୁଥିଲା, ସତେ ଯେପରି ତା'ର ଇଙ୍ଗିତ ଓ ଅନୁମୋଦନରେ ହିଁ ଦେଶର ଶାସନ ଚାଲିଛି । ଏଭଳି ଲୋକମାନେ ଅଭିଭୂତ ହୋଇ ଯାଉଥିଲେ ଏବଂ ନିଜକୁ ଧନ୍ୟ ମନେ କରୁଥିଲେ କୁମର ଭଳି ଜଣେ ସ୍ୱନାମଧନ୍ୟ ଲୋକ ସେମାନଙ୍କ ସହିତ ଅନ୍ତରଙ୍ଗ ମୁହୂର୍ତ୍ତ କଟାଇଥିବାରୁ ।

ଆଗରୁ ଦରମା ପାଇବାରେ ବୋଧହୁଏ କିଛି ଅସୁବିଧା ଥିଲା । ସେଥିପାଇଁ ଅତୁଲବାବୁ ଏକକାଳୀନ ପାଞ୍ଚମାସର ଦରମା ପାଇଥିଲେ । ସପ୍ତାହକ ପରେ ପରିଶୋଧ କରିଦେବ ବୋଲି ପ୍ରତିଶ୍ରୁତି ଦେଇ ପୂର୍ବସମ୍ମତି ଅନୁଯାୟୀ କୁମର ଏହି ଟଙ୍କା ନେଇଥିଲା ଅତୁଲବାବୁଙ୍କ ଠାରୁ । ତା'ପରର କାହାଣୀ ଥିଲା ସ୍ୱାଭାବିକ ଓ ଚିରାଚରିତ । ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ଟଙ୍କାର ଦେଖା ନ ଥିଲା । ଅତୁଲ ବାବୁ କୁମରର ଅଭ୍ୟାସ ସମ୍ପର୍କରେ ସବୁ ଜାଣିସିବା ପରେ ହତାଶ ହୋଇ ପଡ଼ିଥିଲେ ଏବଂ ଏଇ ହତାଶା କ୍ରୋଧରେ ପରିଣତ ହୋଇଥିଲା । ସେ ଘୋଷଣା କରିଥିଲେ ଯେ ବରଂ ଫାଶୀ ପାଇବେ, କିନ୍ତୁ ଦିନେ ନା ଦିନେ କୁମରକୁ ମର୍ଡ଼ର କରିବେ ।

କୁମର ଅନେକ ଡେରିରେ ଟଙ୍କା ପରିଶୋଧ କଲା, କିନ୍ତୁ ସେଇଦିନ ରାତିରେ ହିଁ ଡକାୟତି ହେଲା ବହୁ କଷ୍ଟ ଓ ସମୟ ପରେ ଫେରି ପାଇଥିବା ସେହି ଟଙ୍କା । ଦୁଇଜଣ ଲୋକ ତାଙ୍କ ଉପରେ ଚଢ଼ଉ କଲେ । ପାଟି ବନ୍ଦ କରି ବାନ୍ଧି ପକାଇଲେ ତାଙ୍କୁ ଖଟରେ ଏବଂ ଟଙ୍କା ନେଇ ପଳାଇଗଲେ ଚୁପ୍‌ଚାପ୍ । ଅତୁଲ ବାବୁ ଥାନାରେ ଏ କଥା

ଜଣେଇଥିଲେ; କିନ୍ତୁ ଘଟଣା ଘଟିବାର ସପ୍ତାହକ ପରେ ତାଙ୍କର ଗୋଟିଏ ଦୂର ସ୍ଥାନକୁ ବଦଳି ହୋଇ ଯାଇଥିଲା ।

ନିମାଇଁ କହିଲା—"ହେବ ପୁଣି ଗୋଟେ କ'ଣ ? କିଛୁ ହେବ ବୋଲି ଆମେ ଆଶା କରିଥିଲେ, ନା ଅତୁଲବାବୁ ନିଜେ ଆଶା କରିଥିଲେ ? ଥାନାରେ ଜଣେଇବା ଗୋଟାଏ କୁଟାଖିଅକୁ ଆଶ୍ରା କରିବା ଭଳି କଥା ଥିଲା ।"

ଅନେକ ସମୟର ନୀରବତା । ନିମାଇଁ କହିଲା-—"ପଞ୍ଚାୟତ ପାଇଁ ଆମ ଗାଁରୁ ଦୁଇଜଣ ମେମ୍ବର ପଠାଇବା କଥା । ଜଣେ ଆଦିବାସୀ-ହରିଜନ ସଂପ୍ରଦାୟର ହୋଇଥିବ ।"

ଏ ସମ୍ପର୍କରେ ବହୁବର୍ଷ ହେଲା ଘନଶ୍ୟାମଦାଦା ନିଜକୁ ଦୂରେଇ ରଖିଥିଲେ । ଆଉ କ'ଣ ଆଗ ଗାଁ ଅଛି ଯେ, ସେ କହିଥିବା ଲୋକ ଜଣକ ମେମ୍ବର ହୋଇଯିବ ? ତା'ଛଡ଼ା, କୁମର ବ୍ୟାପାର ପରେ, ସେ ନିଜକୁ ଏକପ୍ରକାର ଅପରାଧୀ ବୋଲି ମନେ କରୁଥିଲେ । ତାଙ୍କ ଆଗରେ ମେମ୍ବର, ନାଏବ ସରପଞ୍ଚ ଓ ପରେ ସରପଞ୍ଚ ହୋଇ ଲୋକଟା ଗୋଟାଏ ଶୈତାନରେ ପରିଣତ ହୋଇଯାଇଛି । ଆଶ୍ୱାସନାର କଥା ଏଇ ଯେ, ଗତ ସରପଞ୍ଚ ନିର୍ବାଚନରେ ସେ ପ୍ରାର୍ଥୀ ହୋଇ ନ ଥିଲା । ରାଜନୀତିକୁ ଗୋଟାଏ ପେସା ବୋଲି ଅନେକେ ଗ୍ରହଣ କରି ସାରିଥିଲେ । ଏଥିରେ କ୍ଷମତା ଅଛି ବୋଲି ହୃଦ୍‌ବୋଧ ହୋଇଥିଲା ଅନେକ ଲୋକଙ୍କର ଏବଂ କ୍ଷମତା ଯେଉଁଠି, ସେଇଠି ଅର୍ଥ ଓ ପ୍ରତିପତ୍ତି ଥାଏ ଅନିବାର୍ଯ୍ୟ ଭାବରେ । ଏଥିପାଇଁ ଆମ ଅଞ୍ଚଳରେ ପଞ୍ଚାୟତ ନିର୍ବାଚନ ଘମାଘୋଟ ଲଢ଼େଇରେ ପରିଣତ ହୋଇଯାଇଥିଲା । କୁମର ନିଜର ସ୍ଥିତି ସମ୍ପର୍କରେ ସଚେତନ ଥିଲା ବୋଧହୁଏ । ଆହୁରି ମଧ୍ୟ ଜାଣିଥିଲା ଯେ, ନିର୍ବାଚନରେ ଜିତିବା ନିର୍ଭର କରେ ପ୍ରଚୁର ଅର୍ଥ ଖଟେଇବା ଉପରେ । ଏଇଟା ଗୋଟେ ପ୍ରକାରର ଇନ୍‌ଭେଷ୍ଟମେଣ୍ଟ । କୁମର ନିଜେ ପ୍ରାର୍ଥୀ ହୋଇ ନ ଥିଲା ସିନା; କିନ୍ତୁ ନିଜ ରାଜନୈତିକ ଦଳର ପ୍ରାର୍ଥୀକୁ ସାହାଯ୍ୟ କରିବା ବାବଦରେ ବେଶ୍ କିଛି ଟଙ୍କା ଉପାର୍ଜନ କରିପାରିଥିଲା । ଆମ ଗାଁର ସମସ୍ତେ ଆଶ୍ୱସ୍ତ ହୋଇଥିଲେ ଯେକୌଣସି ପଦବୀ ନ ଥିବା କୁମର ଏବେ ଗୋଟାଏ ବାରୁଦବିହୀନ ବାଣ । ତାକୁ ଡରିବାର କୌଣସି କାରଣ ନାହିଁ ।

କିନ୍ତୁ ତା'ର ଭାଗ୍ୟ ଦେଖ । ସେ ଏବେ ବ୍ଲକ୍‌ର ପାର୍ଟି ପ୍ରେସିଡେଣ୍ଟ ! ବି.ଡ଼ି.ଓ. ଅଫିସକୁ ଯିବା ପାଇଁ ହେଲେ ଏବେ ତାକୁ ସ୍ଲିପ୍ ଦେବାକୁ ପଡ଼ୁନ ଥିଲା । ବି.ଡ଼ି.ଓ. ତାକୁ ନମସ୍କାର କରୁଥିଲେ ଏବଂ ପିଅନକୁ ଚ଼ା' ଆଣିବା ପାଇଁ ନିର୍ଦ୍ଦେଶ ଦେଉଥିଲେ । ଥାନା ଅଫିସର ତାକୁ ପଚ୍ଚରୁ ନ ଥିଲେ ସେ କେଉଁ ଖବରକାଗଜ ପଢ଼ୁଛି । ପ୍ରତ୍ୟେକ ଗାଁରେ କୁମର ଭଳି ଅଜସ୍ର ଲୋକ ମୁଣ୍ଡଟେକି ସାରିଥିଲେ ଏବଂ ଲୋକ-ମାନଙ୍କର ସେବା କରିବାରେ ନିଜକୁ ଉତ୍ସର୍ଗ କରିଥିଲେ ।

ଘନଶ୍ୟାମଦାଦା କହିଲେ—"ମେମ୍ବର ପଠେଇବା ସମୟ ତ ହୋଇ ନାହିଁ । ଆମେ ଏବେଠୁ ଚିନ୍ତିଆ ହେବା ଦରକାର କ'ଣ ?"

—"ଦରକାର ଅଛି ।" ଗୋଟାଏ ରହସ୍ୟ ଉଦ୍‌ଘାଟନ କଲା ଭଳି କହିଲା ନିମାଇଁ । "ତୁମେ ଜାଣିନ ଯେ, କୁମର ଦୁଇଜଣ ଲୋକଙ୍କୁ ବାଛି ସାରିଲାଣି ଆମ ଗାଁର ମେମ୍ବର ହେବେ ବୋଲି ।"

ଘନଶ୍ୟାମଦାଦା ସାମାନ୍ୟ ଉତ୍ତେଜିତ ହୋଇ ପଚାରିଲେ—"କ'ଣ ? ତା ମନେ ମନେ ? ତୁ ଏକଥା ଜାଣିଲୁ କେମିତି ?"

—"ମୋର ସବୁ ଜାଗାରେ ଲୋକ ଅଛନ୍ତି ।" ନିମାଇଁ କହିଲା ଯଥେଷ୍ଟ ଦମ୍ଭ ଓ ଆତ୍ମ-ସନ୍ତୋଷର ସହିତ । "ପଞ୍ଚାୟତ ହେଉ ବା ବ୍ଲକ୍ ହେଉ । ସେମାନେ ମୋତେ ଖବର ଦିଅନ୍ତି । ସେ ଟିକିଏ ଦମ୍ ନେବା ପରେ କହିଲା—"ପଞ୍ଚାୟତରେ ସେ ଗଲାକାଲି କହୁଥିଲା, ଏଥର ତା ଲୋକମାନେ ଆମ ଗାଁର ମେମ୍ବର ହୋଇ ପଞ୍ଚାୟତକୁ ଯିବେ ।

—"କରୁ ଯାହା ତା'ର ଇଚ୍ଛା ।" ନିହାତି ଦିକ୍‌ଦାର ଓ ବିରକ୍ତ ହୋଇ ଉତ୍ତର ଦେଲେ ଘନଶ୍ୟାମଦାଦା । "ଆମକୁ କେବଳ ଆମ ଘରେ ଆମ ଗାଁରେ ଟିକିଏ ଶାନ୍ତିରେ ରହିବାକୁ ଦେଉ । ରାଜନୀତି ଖାଇଦେଲା ସବୁ ଜିନିଷକୁ । ଆଉ ଜମା ଭଲ ଲାଗୁ ନାହିଁ ଏ ଗାଁ ।" କହିଲେ ଏବଂ ନିରୁପାୟ ହୋଇ ମୁଣ୍ଡ ଉପରେ ଦୁଇ ହାତ ବୁଲାଇ ଆଣିଲେ ।

—"କ'ଣ ହେଲା ? କରୁ ଯାହା ତା'ର ଇଚ୍ଛା ?" ନିମାଇଁ ପ୍ରସ୍ତୁତ ନ ଥିଲା ଘନଶ୍ୟାମଦାଦାଙ୍କର ନିସ୍ପୃହ ଓ ନିରାସକ୍ତ ଉକ୍ତି ଗ୍ରହଣ

କରିବା ପାଇଁ । "ଛାରଣୀ ଠାକୁରାଣୀଙ୍କୁ ଚକ୍ରୁ କରିବା ପାଇଁ ବସିଛି ସେ ଆମ ଆଗରେ ।"

—"କପରି ?" ଘନଶ୍ୟାମ ଦାଦା ବୁଝି ନ ପାରିଲେ ବି ଗୋଟାଏ ଆଶଙ୍କା ଅନୁଭବ କଲେ ।

ନମାଇଁ ବୁଝାଇବାକୁ ଚେଷ୍ଟା କଲା, ରାଜନୀତି ନାଁରେ କଭଳି ଅମଣିଷପଣିଆର ଯୁଦ୍ଧ ଆମ ଅଞ୍ଚଳରେ ଆରମ୍ଭ ହୋଇଯାଇଛି—"ବହୁବର୍ଷ ଧରି ପଞ୍ଚାୟତ ସମିତି ଚେୟାରମ୍ୟାନ ଭାବରେ ନିର୍ବାଚିତ ହେଉଥିବା ଯୋଗେନ୍ଦ୍ର ବାବୁଙ୍କ ବିରୁଦ୍ଧରେ ଘୃଣ୍ୟମତ୍ରି ଷଡ଼ଯନ୍ତ୍ର ଆରମ୍ଭ ହୋଇ ଯାଇଛି । ତାଙ୍କର ଏକମାତ୍ର ଅପରାଧ ହେଲା ସେ ବିରୋଧୀ ଦଳର ଲୋକ । ତାଙ୍କ ପ୍ରଭାବକୁ ଧ୍ୱଂସ କରାଯିବ । ତାଙ୍କ ହାତରୁ ଠାକୁରାଣୀଙ୍କ ପରିଚାଳନା ଦାୟିତ୍ୱ କାଢ଼ି ନିଆଯିବ । ସେ ଦାୟିତ୍ୱ ରହିବ ଗୋଟାଏ କମିଟି ହାତରେ । କୁମର ଭକ୍ତ ଲୋକ ରହିବେ ସେଇ କମିଟିରେ ।"

ଘନଶ୍ୟାମ ଦାଦା କିଛି କହିପାରିଲେ ନାହିଁ । ଯେଉଁ ସଂସ୍କୃତି, ପରମ୍ପରା ଓ ମୂଲ୍ୟବୋଧ ଭିତରେ ସେ ବଢ଼ି ଆସିଥିଲେ, ସେସବୁ ଅବାନ୍ତର ଓ ହାସ୍ୟାସ୍ପଦ ହୋଇ ଯାଉଛି ବର୍ତ୍ତମାନର ପରିପ୍ରେକ୍ଷୀରେ । ସେ ନିଜକୁ ପରିବର୍ତ୍ତିତ ଧାରା ସହିତ ଖାପ୍ ଖୁଆଇବା ପାଇଁ କେବେ ବି ଚେଷ୍ଟା କରିନାହାନ୍ତି ଏବଂ ସେଥିପାଇଁ ତାଙ୍କ ମନରେ କୌଣସି ପ୍ରକାର କ୍ଷୋଭ ଓ ଅଶାନ୍ତି ନ ଥିଲା । କ୍ରମଶଃ ଗାଁ ବ୍ୟାପାରରୁ ସେ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରୁଥିଲେ ଏବଂ ନିଜର ପାରିବାରିକ ସ୍ଥିତି ମଧ୍ୟରେ ସୀମାବଦ୍ଧ ରହୁଥିଲେ ।

ତେବେ, ଗୋଟାଏ ଯନ୍ତ୍ରଣା ଯେ ସେ ଅନୁଭବ ନ କଲେ, ତାହା ନୁହେଁ । ଯୋଗେନ୍ଦ୍ର ବାବୁ ଅନେକ ବର୍ଷ ଧରି ସେ ଅଞ୍ଚଳରେ ପ୍ରତିଷ୍ଠିତ ଲୋକ ଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ ସେ କିଛିଦିନ ପାଇଁ ଜେଲ ମଧ୍ୟ ଯାଇଥିଲେ । ନିଜ ଦଳର ବଦମାସୀ ଯୋଗୁଁ ସେ ବିରୋଧୀ ଦଳ ସହିତ ସାମିଲ ହୋଇଥିଲେ ଅନେକ ଦିନରୁ । କୌଣସି ବ୍ୟକ୍ତିଗତ ଅଭିପ୍ରାୟ ନ ଥିଲା ରାଜନୀତି କରିବାରେ । ସେ କେବଳ ଚାହୁଁଥିଲେ ସେ ଅଞ୍ଚଳରେ କିଛି କାମ ହେଉ । ହାଇସ୍କୁଲ ସ୍ଥାପିତ ହେଲା, କଲେଜ ମଧ୍ୟ

ଏବେ ଖୋଲିଛି ତାଙ୍କ ଚେଷ୍ଟାରେ । ଠାକୁରାଣୀଙ୍କର ପ୍ରଚୁର ଅର୍ଥର କୌଣସି ହିସାବ ନ ଥିଲା । ସେ ଶୃଙ୍ଖଳିତ କଲେ ଏହି ସମ୍ପଦକୁ । ମାଟିଘର ଦ୍ୱାରା ନିର୍ମିତ ହେଲା ଠାକୁରାଣୀଙ୍କ ମନ୍ଦିର । ପ୍ରକାଣ୍ଡ ଦୋ' ମହଲା କୋଠା ତିଆରି ହେଲା ଠାକୁରାଣୀଙ୍କ ଅର୍ଥରେ । ତଳ ମହଲାରେ ବିଭିନ୍ନ ଦୋକାନ ଖୋଲିଲା, ଉପରେ ବ୍ୟାଙ୍କ୍ ଓ ଲଜିଂ ହାଉସ୍ । ଏଥିରୁ ଆଦାୟ ହେଉଥିବା ସମସ୍ତ ଅର୍ଥ ଗଚ୍ଛିତ ହୋଇ ରହିଲା ଠାକୁରାଣୀଙ୍କ ହିସାବ ଖାତାରେ ।

ଠାକୁରାଣୀଙ୍କ ପ୍ରଚୁର ଅର୍ଥ ଉପରେ ହିଁ ରହିଥିଲା କୁମର ଭଳି ଲୋକର ଶ୍ୟେନ ଦୃଷ୍ଟି । ଯୋଗେନ୍ଦ୍ର ବାବୁଙ୍କୁ ହଟେଇବା ପାଇଁ ବିଧିବଦ୍ଧ ଯୋଜନା ଦରକାର । ଗ୍ରାମପଞ୍ଚାୟତ ମେମ୍ବରମାନେ କୁମର ଭଳି ଲୋକଙ୍କ ପ୍ରତି ଚୂଡ଼ାନ୍ତ ଅନୁରକ୍ତି ଦେଖାଇବା ଦରକାର । ସେମାନଙ୍କ ଭୋଟ ଉପରେ ପଞ୍ଚାୟତ ସମିତି ଚେୟାରମାନ୍‌ର ଭାଗ୍ୟ ନିର୍ଭର କରେ ।

ସବୁକଥା ଶୁଣିସାରିବା ପରେ କିଛି ସମୟ ପାଇଁ ଗୁମ୍ ହୋଇ ବସି ରହିଲେ ଘନଶ୍ୟାମ ଦାଦା । ଅନେକ ଦିନରୁ ଅନୁଚ୍ଚାରିତ ଶତ୍ରୁତା ଲାଗି ରହିଛି ତାଙ୍କର କୁମର ସହିତ; କାରଣ କୁମରର କାର୍ଯ୍ୟକଳାପ ସେ କେବେ ଅନୁମୋଦନ କରିନାହାନ୍ତି । ବାସ୍ତବିକ, ଯେଉଁମାନେ ତାକୁ ସମର୍ଥନ କରି ନାହାନ୍ତି, ସେମାନେ ସମସ୍ତେ ବିରୋଧୀଦଳର ଲୋକ ବୋଲି କୁମରର ଧାରଣା ବଦ୍ଧମୂଳ ହୋଇଛି । ଏଥିପାଇଁ ଅନେକ ଥର ସେ ଘୋଷଣା କରିଛି ଯେ ଗାଁର ଏଇସବୁ ଲୋକଙ୍କୁ ତଳିତଳାନ୍ତ କରି ସାବାଡ଼୍ ନ କଲା ପର୍ଯ୍ୟନ୍ତ ତା ମନରେ ଶାନ୍ତି ନାହିଁ ।

ନିମାଇଁ ମାରିବସିଲା ଭାଙ୍ଗିଲା—"କୁମର କିଏ ଗାଁ ମେମ୍ବର ବାଛିବା ପାଇଁ ? ଗାଁରେ ମିଟିଙ୍ଗ୍ ହେବ । ଆମେ ଯାହାକୁ ମନୋନୀତ କରିବା, ସେ ଯିବ ପଞ୍ଚାୟତକୁ । ତା ଗୁମ୍ଫଗୁମାନେ କୌଣସିମତେ ଆମ ଗାଁରେ ମେମ୍ବର ହୋଇ ପାରିବେ ନାହିଁ ।" ଖୁବ୍ ଉତ୍ତେଜିତ ହୋଇ ପଡ଼ିଲା ନିମାଇଁ । କୌଣସି ରାଜନୀତି ଦଳର ଲୋକ ହୋଇ ନ ଥିଲେ ମଧ୍ୟ, ସେ ଅନ୍ୟମାନଙ୍କ ଭଳି ବିରୋଧ କରୁଥିଲା କୁମରକୁ । ସେ ଏଇ ବିରୋଧର ସ୍ପଷ୍ଟ ଓ ଉଚ୍ଚାରିତ ପ୍ରତୀକ ଥିଲା ।

ଘନଶ୍ୟାମ ଦାଦାଙ୍କ ଖଳାରୁ ଫିରିବାବେଳେ ନିମାଇଁ ଆଉ ଗୋଟାଏ କଥା କହିଲା—"ଆମ ଗାଁର ଯେଉଁମାନେ ଲୋନ୍ ଡିଫଲ୍‌ଟର ହୋଇଛନ୍ତି, ଅଳ୍ପଦିନ ମଧ୍ୟରେ ସେମାନଙ୍କର ଘର କୋରକ ହେବ। କେଉଁ ଦିନ ହେବ ତାହା ଜଣାପଡ଼ି ନାହିଁ। କାହାଘର କୋରକ ହେବ ତାହା ଜାଣିହେଲା ନାହିଁ ସମୟ ନ ଥିଲା ବୋଲି। କାଲି ଗଲେ ସବୁ କଥା ବୁଝି ଆସିବି।" ସେ ବାହାରିଗଲା ସେଠାରୁ ଜରୁରୀ ଗଡଶୀଳତା ନେଇ। ଘନଶ୍ୟାମ ଦାଦା ଚୁପ୍‌ଚାପ୍ ବସି ରହିଥିଲେ। ସେ ଜାଣିଥିଲେ ଯେ, ଗାଁର ଏଇଭଳି ଘଟଣା ଆଉ ତାଙ୍କ ଅକ୍ତିଆରରେ ନାହିଁ। ଗାଁ ଲୋକଙ୍କ ଭାଗ୍ୟ ଅନେକ ଦିନ ହେଲା ନିର୍ଦ୍ଧାରିତ ହୋଇ ଆସିଛି ଅସ୍ପଷ୍ଟ, ଅପରିଚିତ ଫାଇଲ ଦ୍ୱାରା। ସେ ଫାଇଲ୍ ସବୁ କେଉଁଠି ଓ ସେଗୁଡ଼ିକର ରୂପରେଖ କ'ଣ, ତାହା ସେ ବୁଝିବା ପାଇଁ ସକ୍ଷମ କିମ୍ବା ଚେଷ୍ଟିତ ନୁହନ୍ତି।

ଏହା ସହିତ ଆଉ ଗୋଟିଏ କଥା ମଧ୍ୟ ସ୍ପଷ୍ଟ ହୋଇ ପଡ଼ୁଥିଲା ତାଙ୍କ ଆଗରେ। ଗାଁ ମହାଦେବଙ୍କ ଭଳି ବୋଧହୁଏ ଦେଶର ସବୁ ଠାକୁର, ଠାକୁରାଣୀ ସ୍ୱା'ପରେ ବାର୍ଷିକ କିଛି ଭତ୍ତା ପାଇବେ ସରକାରୀ କର୍ମଚାରୀ କିମ୍ବା ଘରୋଇ ଚାକରମାନେ ଯେମିତି ଦରମା ପାଆନ୍ତି। ସେମାନଙ୍କର ସେଇ ଭତ୍ତା ସମ୍ବନ୍ଧରେ ଫାଇଲ ପ୍ରସ୍ତୁତ ହେବ। ସେଇ ଫାଇଲ ପୁଣି ପଡ଼ିରହିବ କେଉଁ ଟେବୁଲ ଉପରେ କାହାର ସମ୍ମତି ଓ ଦସ୍ତଖତକୁ ଅପେକ୍ଷା କରି। ସବୁ ଲୋକଙ୍କର ସମସ୍ତ ପ୍ରକାର ବ୍ୟାପାର ଯେମିତି ଅଦୃଶ୍ୟ ଭାବରେ ବିଭିନ୍ନ ଫାଇଲ ସହିତ ସଂଯୋଜିତ ହୋଇ ଯାଉଛି, ଏକଦା ଆଶା ଓ ବିଶ୍ୱାସର କେନ୍ଦ୍ର ଥିବା ଏଇ ସର୍ବଶକ୍ତିମାନ ଠାକୁର-ଠାକୁରାଣୀମାନେ ମଧ୍ୟ ସଂଯୋଜିତ ହୋଇ ଯାଉଛନ୍ତି କଂକ୍ରିଟ ବିଲ୍ଡିଂ ଭିତରେ ବସୁଥିବା ଅଫିସରଙ୍କ ସହିତ। ସେଇଠି ଏମାନଙ୍କର ମଧ୍ୟ ଭାଗ୍ୟ ନିୟନ୍ତ୍ରିତ ହେବ। ଏ ସଂସାରରୁ ଧର୍ମ ତେବେ ଉଭେଇ ଯାଉଛି। ଅସଂଖ୍ୟ କୁମ୍ଭୀର ଆଡଯାତ ହୋଇ ପ୍ରଲୁବ୍ଧ ଦୃଷ୍ଟି ପକାଉଛନ୍ତି ଠାକୁରାଣୀଙ୍କୁ ଭକ୍ତମାନେ ଅର୍ପଣ କରିଥିବା ବିପୁଳ ନୈବେଦ୍ୟ ଉପରେ।

ଯୁବକ ଜଣକ ଠିଆ ହୋଇ ପଡ଼ିଲା ଲକ୍ଷ୍ମୀ ମାର୍କେଟର ଛକ ଉପରେ। ବିଶ୍ୱାସ କରିପାରୁ ନ ଥିବା ଭଳି ବିସ୍ମୟାଚ୍ଛନ୍ନ ଦୃଷ୍ଟି ବୁଲାଇ

ଆଣିଲି ଗୃହିଆଡ଼କୁ । ଏପଟେ ଜଳଖିଆ ଓ ସାଇକେଲ ମରାମତି ଦୋକାନ ଆରପାଖରେ ବେଶ୍ ଲମ୍ବା ଘରଟେ ବଡ଼ ଟେଳରିଂ ଦୋକାନ ସହିତ । ଭିତରକୁ ପ୍ରବେଶ ନିଷେଧ ବୋଲି ଲେଖାଯାଇଥିବା ନାଲି ସାଇନ୍‌ବୋର୍ଡ଼ । କାନ୍ଥରେ ଟଙ୍ଗା ହୋଇଛି ପୋଷ୍ଟ ବକ୍ସ । ଚିଠି ଉଦରସାତ୍ କରିବା ପାଇଁ ସବୁବେଳେ ତା'ର ପାଟି ଖୋଲା ଅଛି । ତା ପାଖକୁ ଟିଣ କେବିନ୍ ଗୋଟେ । ଷ୍ଟେସନାରୀ ଦୋକାନ କିଛି ଅଛି । ତା ପାଖକୁ ଅପେକ୍ଷାକୃତ ଗ୍ରେଟ କେବିନରେ ଜଣେ ବସିଚି ପାନ-ବିଡ଼ି ବିକିବା ପାଇଁ ।

ପୁଣି ଥରେ ସେ ଚାହିଁଲି ଗୃହିଆଡ଼କୁ, ପରେ ପରେ ନିଜ ଘରି ଆଡ଼କୁ । ଗୃହିଟା ସମୟର ଘରି ଆହୁରି ଲମ୍ବି ଯିବାପାଇଁ ତରତର ହେଉଥିଲି । ଯୁବକ ଜଣକ ପ୍ରଥମେ ଠିକ୍ କରିପାରିଲା ନାହିଁ ସେ ଯିବ କେଉଁଠିକି । ସ୍ଥାନଟା ତାକୁ ଭଲ ଲାଗିଲା ବୋଧହୁଏ । ବେଶ୍ କିଛି ଲୋକ ବସିଚନ୍ତି, ଠିଆ ହୋଇଚନ୍ତି ପ୍ରତ୍ୟେକ ଦୋକାନ ଆଗରେ । ଦଶ-ବାରଟା ସାଇକେଲ ଠିଆ ହୋଇ ରହିଚନ୍ତି ଏଣେତେଣେ । ବାଜୁଚି ଗୋଟେ ରେଡ଼ିଓ ଏବଂ କେଜାଣି କେଉଁ ଭାଷାର ଗୀତରେ ପବନକୁ ଭାରାକ୍ରାନ୍ତ କରୁଚି । ତାସ୍ ଖେଳ ଚାଲିଚି ନିର୍ଧୂମ । କୋଳାହଳରେ ଭରପୂର ପରିବେଶ ।

ସେ ବୋଧହୁଏ ଆଉ ଟିକିଏ ଇତସ୍ତତଃ ହୋଇଥାନ୍ତା; କିନ୍ତୁ ଗୋଟାଏ ଦୁଇଟା ଚିହ୍ନା ମୁହଁ ଲକ୍ଷ୍ୟ କରି ସାରିଥିଲା ସେ । ତାସ୍ ଖେଳାଳୀଙ୍କ ମଧ୍ୟରୁ କେତେଜଣ ତା ଆଡ଼େ ଅନେଇଥିଲେ ଅବିଶ୍ୱାସ୍ୟ ଦୃଷ୍ଟିରେ ।

ସେ ଏଥର ସେଇଆଡ଼କୁ ଗଲାବେଳେ କେହି ଜଣେ ଉତ୍ସାହ ଓ ଆନନ୍ଦର ସହିତ ପ୍ରଶ୍ନ କଲା—"ତୁ ରାଧାକାନ୍ତ ନା ? ଆରେ, ହେ, ଦେଖ ରାଧାକାନ୍ତକୁ ! କବେ, ଯା ଭିତରେ ତୁ ଏଡ଼େ ବଡ଼ଟେ ହୋଇ-ଗଲୁଣି ? ତୋତେ ତ ମୋଟେ ଚିହ୍ନି ହେଉନି !"

ଯା'ପରେ ପରେ ସବୁ କାର୍ଯ୍ୟକ୍ରମ ବାତିଲ୍ ହୋଇଗଲା ଲକ୍ଷ୍ମୀ ମାର୍କେଟରେ । ପ୍ରାୟ ସମସ୍ତେ ଘେରିଗଲେ ରାଧାକାନ୍ତକୁ । ସେ ନିଜେ

କେବେହେଲେ ଆଶା କରି ନ ଥିଲି ଯେ ଏଭଳି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ସେ ପାଇବ ଗାଁ ଭିତରକୁ ପଶିବା ଆଗରୁ । ସେ ବିହ୍ୱଳ ହୋଇ ଯାଉଥିଲା, ବିହ୍ୱଳ ହୋଇ ଯାଉଥିଲେ ଅନ୍ୟମାନେ । ଏତେ ବର୍ଷର ବ୍ୟବଧାନ ସହସା ସଙ୍କୁଚିତ ହୋଇ ଯାଇଥିଲା ଏବଂ ସେ ଅଫୁରନ୍ତ ଆନନ୍ଦରେ ଫେରି ପାଇଥିଲା ତା'ର ଅଜ୍ଞାତ ପରିବର୍ତ୍ତିତ ମୁହଁ ପରିବର୍ତ୍ତିତ ଭୂଗୋଳ ଭିତରେ । ସେମାନଙ୍କର କ୍ରମାଗତ ପ୍ରଶ୍ନର କୌଣସି ଉତ୍ତର ଦେଇ ନ ପାରି ସେ ବସିପଡ଼ିଲା ଲକ୍ଷ୍ମୀ ମାର୍କେଟ ବାରନ୍ଦା ଉପରେ । ନାହିଁ ନ ଥିବା ଆଶ୍ଚର୍ଯ୍ୟଟିଏ ଦେଖିବା ଭଳି ଅନ୍ୟମାନେ ଘେରି ରହିଥିଲେ ତାକୁ ।

ସମସ୍ତଙ୍କୁ ଚୁପ୍ ହେବା ପାଇଁ ଇଙ୍ଗିତ ଦେଇ ରାଧାକାନ୍ତ କହିଲା—"ସବୁ ଶୁଣିବ, ସବୁ କହିବ । ତୁମର ଏଠି ୟୁରିନାଲ୍ କେଉଁଠି ଅଛି, ଆଗ କୁହ ।" ସେ ଉଠି ଠିଆ ହେଲା ।

ୟୁରିନାଲ୍ ! ସମସ୍ତେ ବୋକା ବନିଗଲେ ଏଇ ଗୋଟିଏ ଶବ୍ଦର ଉଚ୍ଚାରଣରେ । ସେମାନେ ଚମତ୍କୃତ ହେଲେ ରାଧାକାନ୍ତର ଗମ୍ଭୀର ସ୍ୱର ଓ କଥା କହିବାର ଭଙ୍ଗୀ ଦେଖି । ସେ ଖୁବ୍ ସହଜରେ ସମସ୍ତଙ୍କ ଠାରୁ ବାଗ ହୋଇ ଯାଉଥିଲା ।

ସେମାନଙ୍କ ଠାରୁ କୌଣସି ଉତ୍ତର ନ ପାଇ ରାଧାକାନ୍ତ ହସିଲା ଟିକଏ ଗମ୍ଭୀର ଭାବେ ସନ୍ତୁଷ୍ଟ ହୋଇ । ବୁଝାଇ କହିଲା—"ମୁଁ ପଚାରୁଥିଲି ତୁମେ ଏଠି ପରିସ୍ରା କର କେଉଁଠି ?"

ରାଧାକାନ୍ତ ଆଉଥରେ ଦୁର୍ବୋଧ ହୋଇ ପଡ଼ିଲା ସେମାନଙ୍କ ଦୃଷ୍ଟିରେ । କେହି ଜଣେ ଉତ୍ତର ଦେଲା—"ସବୁ ଜାଗାରେ । ଏଇଟା କ'ଣ ଟାଉନ୍ ହୋଇଛି ନା କ'ଣ ? ଏ ଗାଁରେ ଥିଲାବେଳେ ତୁ ପୁଣି ମୁତୁଥିଲୁ କେଉଁଠି ?"

ପ୍ରଶ୍ନଟା ରାଧାକାନ୍ତର ତଥାକଥିତ ବ୍ୟକ୍ତିତ୍ୱକୁ ଚୂର୍ମାର କରି ଦେଇଥାଆନ୍ତା । ସେ କିନ୍ତୁ ଚଳେଇ ନେଲା ନିଜକୁ—"ମୁଁ ପିଲା ଥିଲା-ବେଳେ ଏ ସ୍ଥାନ କ'ଣ ଏମିତି ଥିଲା ? ଅବଶ୍ୟ ଏଇଟା ଗୋଟେ ଗ୍ରେଟ ଧରଣର ବଜାର ହୋଇ ଯାଇଛି ।" ଅନ୍ୟମାନେ ଏ ପ୍ରଶଂସା ଶୁଣି କୃତକୃତ୍ୟ ହେବା ବେଳକୁ ରାଧାକାନ୍ତ ଘର ପଛକୁ ଚାଲି ଯାଇଥିଲା ।

ତା' ବୟସର ସବୁ ପିଲାଙ୍କ ଠାରୁ ସେ ବେଶୀ ହୃଷ୍ଟପୁଷ୍ଟ ଥିଲା । ପିନ୍ଧିଥିଲା ବେଶ୍ ଦାମିକା ଇସ୍ତ୍ରୀକରା ପରିଚ୍ଛନ୍ନ ପେଣ୍ଟ ଓ ସ୍ପୋର୍ଟିଙ୍ଗ୍ ଗଞ୍ଜି । ଗୋଡ଼ରେ ଚକ୍ ଚକ୍ କଳା ଜୋତା ଉପରେ ଧୂଳିର ଆବରଣଟିଏ । ସାମ୍ନାକରା ଲମ୍ବା କେଶ ଓ କଲି । ମୋଟା ନିଶ । ବାମ ହାତରେ ଓ୍ୱାଚ୍ ।

ଡାହାଣ ହାତରେ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ବଳା । ପିଲାଦିନେ ତା' ମୁହଁରେ ଥିବା ଦୁଷ୍ଟାମି ଏବେ ଫେଣ୍ଟି ହୋଇ ଯାଇଛି ଆତ୍ମ-ବିଶ୍ୱାସ ସହିତ । ସେ ସୂଚେଇ ଦେଉଥିଲା ଯେ, ସେ ନିଜ ପରିବେଶ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ । ସେ କ'ଣ କହୁଛି ଓ କରୁଛି, ସେ ସମ୍ବନ୍ଧରେ ସେ ଅବହିତ । ନିଜର ଲକ୍ଷ୍ୟ କ'ଣ, ତାହା ସେ ଜାଣେ ଭଲ କରି । ବିଭ୍ରାନ୍ତ କିମ୍ବା ଅପ୍ରସ୍ତୁତ ହେବା ଭଳି କୌଣସି ଲକ୍ଷଣ ତା'ଠାରେ ନ ଥିଲା ।

ଆଗ ମୁହଁ ହାତ ଧୋଇ ହେଲା । ପିଲାର ପାଖରେ ରଖିଥିବା ବଡ଼ ବ୍ରିଫ୍‌କେଶ ଓ ଝୁଲା ବ୍ୟାଗ ଆଡ଼କୁ ଆଖି ଫେରାଇଲା । ପାନିଆ ବାହାର କରି ମୁଣ୍ଡ କୁଣ୍ଡାଇଲା ଓ ଅଣା ଯାଇଥିବା ଗ୍ଲାସ ପାଣି ଓଠ ପାଖକୁ ନେଲା । ବିବ୍ରତ କିମ୍ବା ବ୍ୟସ୍ତ ହେଉ ନ ଥିଲା ସେ । ସମସ୍ତ ସମୟ ଓ ସୁଯୋଗର ସେ ସମ୍ରାଟ ବୋଲି ଧାରଣା ସୃଷ୍ଟି କଲା ଅନ୍ୟମାନଙ୍କ ମନରେ । ଗ୍ଲାସ ତଳେ ରଖି ସେ ସ୍ମିତ ହସିଲା । ଅନ୍ତରଙ୍ଗତାର ହସ ନୁହେଁ ଅନ୍ୟମାନଙ୍କୁ ଦୂରେଇ ରଖି ନିଜକୁ ସାବ୍ୟସ୍ତ କଲା ଭଳି ହସ । ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ସେ ଧୂମପାନ କଲା କୌତୂହଳୀ ଲୋକମାନଙ୍କର ଜିଜ୍ଞାସୁ ଦୃଷ୍ଟିକୁ ବେଖାତିର କରି । ଏଠାକୁ ଆସି ସେ ବୋଧହୁଏ ଗୁରୁତର ତ୍ରୁଟି କରିଛି; କାରଣ ଏ ସ୍ଥାନ ତା'ପାଇଁ ଆଦୌ ଯୋଗ୍ୟ ନୁହେଁ—ଏଭଳି ଗୋଟାଏ ଧାରଣା ସେ ସୃଷ୍ଟି କରିପାରିଲା ଖୁବ୍ କମ୍ ସମୟ ମଧ୍ୟରେ ।

—"ତୁ ଏତେ ଦିନଯାଏଁ ଥିଲୁ କେଉଁଠି ? କ'ଣ କରୁଥିଲୁ ?" କେହି ଜଣେ ସମ୍ଭାଳି ନ ପାରି ପଚାରିଲା ।

—"ଗାଁରେ ଏଥର ରହିବୁ, ନା ପୁଣି ପଳେଇବୁ ?" ଅନ୍ୟ ଜଣେ ପ୍ରଶ୍ନ କଲା ।

ରାଧାକାନ୍ତ ଟିକିଏ ହସି କହିଲା—"ଏଠି ରହିବ ? କ'ଣ ମରିବା ପାଇଁ ? ଏଠି ଅଛି କ'ଣ ?" ତା'ପରେ କହିଲା—"ମିଷ୍ଟର ସିଂ କିଛିଦିନ ପାଇଁ ଛୁଟି ଦେଇଚନ୍ତି । ସାବଧାନ କରି ଦେଇଚନ୍ତି ଯେ ମୁଁ ଯଦି ଠିକ୍ ସମୟରେ ନ ଫେରେ, ତେବେ ସେ ନିଜେ ଆସି ମୋତେ ଏଠୁ ନେଇଯିବେ ।"

—"ଏଣେ ତୋ ବାପ ଖବର ବୁଝିବ କିଏ ?" ପଚାରି ଦେଲା କେହି ଜଣେ ଏଇ ଦାରୁଣ ପ୍ରଶ୍ନଟା । "ସେ କ'ଣ ଏଇଠି ଭିକ ମାଗିବ ? ତାକୁ ବି ସାଙ୍ଗରେ ନେଇ ଯାଉନୁ ?"

ରାଧାକାନ୍ତ ଡରିଗଲା ଏଇ କଥାରେ । ଅନେକ ସମୟ ପର୍ଯ୍ୟନ୍ତ ସେ କେବଳ ସିଗାରେଟ୍ ଟାଣିଲା ଏବଂ ଯୁକ୍ତିଯୁକ୍ତ ଉପାୟ ଖୋଜିବାକୁ ଚେଷ୍ଟା କଲା । କହିଲା—"ସେ ସେଠାକୁ ଯାଇ କରିବ କ'ଣ ? ମୁଁ ତା' ପାଖକୁ ପ୍ରତିମାସ ଟଙ୍କା ପଠାଇବି ।"

ଏକଥା ସତ ଯେ, ଆଲୋଚନାଟା ଏଇ ଦିଗରେ ଗତି କରୁ ବୋଲି ରାଧାକାନ୍ତ ମୋଟେ ଚାହୁଁ ନ ଥିଲା । ତା' ବ୍ୟକ୍ତିତ୍ୱ ଓ ସ୍ପର୍ଦ୍ଧା ସହିତେ ଯେପରି ତରଳ ଯାଉଥିଲା ଏହାଦ୍ୱାରା । ତା' ବାପା ହିଁ ତା' ଜୀବନର ସବୁଠାରୁ ବଡ଼ ଦୁର୍ବଳତା ବୋଲି ସେ ଅନୁଭବ କରୁଥିଲା । ଅନ୍ୟମାନେ ମଧ୍ୟ ଅସ୍ଥିର ହୋଇ ପଡ଼ୁଥିଲେ । ରାଧାକାନ୍ତ ଗୋଟାଏ ଅବିସ୍ମରଣୀୟ, ରୋମାଞ୍ଚକର କାହାଣୀର ବହି ଭଳି ଜଣା ପଡ଼ୁଥିଲା ସେମାନଙ୍କୁ । ଏ ବହିର ପ୍ରତ୍ୟେକ ପୃଷ୍ଠାର ପ୍ରତ୍ୟେକ ଅକ୍ଷର ପଢ଼ିବାକୁ ଚାହୁଁଥିଲେ ସେମାନେ ।

ନୀରବତା ଅପେକ୍ଷା କୌତୂହଳ ଥିଲା ଅଧିକ ଶ୍ରେୟସ୍କର ଓ ଶକ୍ତିଶାଳୀ । କେହି ଜଣେ ପୁରୁଣା ପ୍ରଶ୍ନର ପୁନରାବୃତ୍ତି କଲା—"ଆରେ, କହ ମ, କ'ଣ ହେଲା ଗାଁରୁ ଯିବା ପରେ !"

ରାଧାକାନ୍ତ ମଧ୍ୟ ଚାହୁଁଥିଲା ନିଜ କାହାଣୀ କହି ସମସ୍ତଙ୍କୁ ଚମତ୍କୃତ କରିବା ପାଇଁ । ବାପା ସମ୍ପର୍କୀୟ ପ୍ରଶ୍ନ ଗୋଟାଏ ନିର୍ମମ ପିନ୍ ଭଳି ତା'ର ଅଭ୍ୟନ୍ତରକୁ ଫୋଡ଼ି ପକାଉ ଥିଲା । ଗାଁକୁ ଫେରିଥିବାର ସମସ୍ତ ଉତ୍ସାହ ଏବଂ ଗୌରବ ଗୋଟାଏ ଲୋଗୁକୋଗୁ ବେଲୁନ୍ ହୋଇ ଯାଉଥିଲା ତା ଫଳରେ ।

—"ରାତି କେତେ ହେବ କେଜାଣି ସେତେବେଳେ ?" ରାଧାକାନ୍ତ ଆରମ୍ଭ କଲା । "ନିଦ ଭାଙ୍ଗିଗଲା ବେଳକୁ ଶୁଣିଲି, ବାପା ଘୁଙ୍ଗୁଡ଼ି ମାରୁଚି ପିଣ୍ଡାରେ ଶୋଇ । ମୋତେ ନିସୁକ ମାଡ଼ ମାରି ଶୋଇଚି ନିଶ୍ଚିନ୍ତ ହୋଇ ।" ବହୁ ବର୍ଷ ତଳର ଘଟଣା ମନେ ପଡ଼ିବା ମାତ୍ରେ ଅତୀତର କ୍ଷତ ଓ ତିକ୍ତତା ସତେ ଯେପରି ସତେଜ ହୋଇ ପଡ଼ୁଥିଲା ରାଧାକାନ୍ତ ମନରେ । ତା ସ୍ୱରରେ ତଥାପି ରହିଥିଲା କ୍ଷୋଭ, ପ୍ରତିବାଦ ଓ ସବୁ ଜନକଙ୍କୁ ପ୍ରତ୍ୟାଖ୍ୟାନ କରିବାର ସଂକଳ୍ପ ।

ମୋତେ ଭାରି ଦୁର୍ବଳ ଲାଗୁଥାଏ । ଏତେ ମାଡ଼ ଖାଇବା ପରେ କାହାକୁ ବା ଦୁର୍ବଳ ନ ଲାଗନ୍ତା ? ଭୋକ ହେଉଥାଏ । କାନ୍ଦ ମାଡ଼ୁଥାଏ । ଆଉ ରହିବି ନାହିଁ ଏଠି । ଜମା ରହିବି ନାହିଁ । ଏଇ କଥା ମନ ଭିତରେ ଘୋଷୁଥାଏ । ହୋସ୍ ହେଲା ବେଳକୁ ଦେଖିଲି, ମୁଁ ଏକପ୍ରକାର ଧାଉଁଛି । ମୋ ପଛରେ ଜଣେ ନୁହଁ, ହଜାରେ ଲୋକ ଗୋଡ଼େଇବା ଭଳି ଜଣା ପଡ଼ୁଥାଏ । ପ୍ରାଣ ବିକଳରେ ମୁଁ ଧାଇଁଲି । ସକାଳ ହେବାବେଳକୁ ବସ୍ ଷ୍ଟାଣ୍ଡ । ଗୋଟାଏ ଟ୍ରକ୍ କୁଲି ନେଇ ଲୁହାଖଣି ଆଡ଼େ ଯାଉଥିଲା । ସେଇଠି ଚଢ଼ିଗଲି । ଗୁରିଟା ବେଳେ ମୁଁ ଯେଉଁଠି ଓହ୍ଲେଇଲି, ସେଇଟା ଗୋଟାଏ ବଡ଼ ସହର । ମୁଁ ଘାବରେଇ ଗଲି । ପୁଣି କେମିତି ଘରକୁ ଫେରିଆସିବି ବୋଲି ବିକଳ ହେଲି । ଭୋକରେ ମୋ ହଂସା ଉଡ଼ି ଯାଉଥାଏ ।

ଗୋଟାଏ ଦୋକାନରୁ କେତୋଟା ବରା-ପକୋଡ଼ି ଗୋରିକଲି ପରେ ଧରା ପଡ଼ିଗଲି । ସେ ଦୋକାନୀ ପିଟିଲା ନିର୍ଦ୍ଦୟ ହୋଇ । ଗୋଟେ ପୋଲିସ ତା ଠେଙ୍ଗାରେ ଆହୁରି ପିଟିଲା । ଭାବିଲି, ଜୀବନ ଯିବ ଏଥର ବାହାରି । ବଜାର ଭିତରେ ଘୂରି ବୁଲିଲି । କାହାର ଚାକର ଦରକାର ବୋଲି ନିଜକୁ ଯାଚିଲି । ରାତି ଆଠଟା-ନ'ଟା ବେଳକୁ ରହିଲି ଜଣକ ଘରେ ।

ବଡ଼ ଘର । ଘରପାଖରେ ପାଚେରୀ । ବଗିଚା । ସେ ଘରର ମାଇକିନା ଥିଲା ବଡ଼ ବଦମାସ୍ । ଅନ୍ଧାରେ ହାତ ଦେଇ କାମ କରଉଥିବ ସକାଳୁ ରାତି ପର୍ଯ୍ୟନ୍ତ । ତୁମେ ଯେତେ ଖଟ, ଯେମିତି କର, ମାଇକିନାର ମନକୁ ପାଇବ ନାହିଁ ଜମା । ଦିନେ ମୋତେ କହିଲା—"କରେ, ତୁ ତ ବଢ଼ିଲୁ ବୋଲି ପିଲା । ଦି'ଜଣ ବଡ଼ ମଣିଷଙ୍କ ଭାତ ଖାଉଛୁ । କମ୍ ଖାଇଲେ ସିନା କାମ କରନ୍ତୁ । ଏତେ ଖାଇବାରୁ ଖାଲି ଢୁଳାଉଛୁ, ମାଡ଼ା ଧରି ଯାଉଛୁ ।

ମୋ ଆତ୍ମା ଶୁଖିଗଲା ସେଇ ଦିନ । ଭାବିଲି, ଶଳା-ଶାଳୀ ଦି'ଟାଙ୍କୁ ଦେବି ଏକାଥରକେ ଅଣ୍ଡା କରି । ସୁଯୋଗ ଖୋଜୁଥାଏ । ତାଙ୍କ ଘରେ ସେତେବେଳକୁ ମୋର ରହିବାର ସାତ-ଆଠ ମାସ ହୋଇ ଯାଇଥିଲା । ଗୋଟେ ମାସର ଦରମା ଛାଡ଼ି ଆଉ ସବୁ ଟଙ୍କା ପାଇ

ଯାଇଥାଏ । ଦିନେ ସେ ଶାଳୀର ରିଷ୍ଟ୍ ଓ୍ୱାଚ୍, ଦି'ଟା ସୁନାମୁଦି, ଛଅଶହ ଖଣ୍ଡେ ଟଙ୍କା ଧରି ପଳେଇଲି ସେଠାରୁ ।

ଶୁଣୁଥିବା ଲୋକମାନେ ବିଶ୍ୱାସ କରିପାରୁ ନ ଥାନ୍ତି ରାଧାକାନ୍ତର କାହାଣୀ; କିନ୍ତୁ ପିଲାଦିନୁ ସେ ଯେ ଏଇ ଚରିତ୍ରର ଥିଲା, ସେଥିରେ ସନ୍ଦେହ ନ ଥିଲା କାହାର । ସେମାନଙ୍କ ମନକଥା ସେ ବୁଝି-ପାରିଲା ବୋଧହୁଏ । ବି୍ଫ୍‌କେଶ୍ ବାହାର କରି ରୋଲ୍‌ଡ଼୍ ଗୋଲ୍‌ଡ଼ର ଓ୍ୱାଚ୍‌ଟେ ଦେଖାଇଲା ସମସ୍ତଙ୍କୁ । କହିଲା—"ଏଇଟା ସେଇ ଘଡ଼ି । ମୁଦି ଦି'ଟା ବିକିଦେଲି ହଜାରେ ଟଙ୍କାକୁ, ବେଶୀ ଟଙ୍କା ମିଳିଥାନ୍ତା; ହେଲେ ସେ ହାରାମଜାଦା ବଣିଆ ଜାଣିପାରିଲା ଯେ, ତାହା ଚୋରି ମାଲ ।"

—ଓ୍ୱାଚ୍‌ଟା କରିବୁ କ'ଣ ? ଜଣେ ପଚାରିଲା । "ଏଇଟା ବି ବିକିଦେଲୁ ନାହିଁ ?"

ଉତ୍ତର ଦେଲା ରାଧାକାନ୍ତ—"ଏ ଘଡ଼ିଟା ଖରାପ ବୋଲି ଜାଣିଥିଲେ ମୁଁ ଚୋରି କରିଥାନ୍ତି କାହିଁକି ? ଏଇଟା ଚାଲୁ ନ ଥିଲା । ମୁଁ ବି ମରାମତି ପାଇଁ ଚେଷ୍ଟା କରି ନାହିଁ । ପାଖରେ ଅଛୁ ତ ଅଛୁ ।"

ରାତାରାତି ପଳେଇଲି ସେ ସହରରୁ । ରହିଲି ଗୋଟେ ଲଜ୍‌ରେ । ଛଅମହଲା କୋଠାର ପ୍ରକାଣ୍ଡ ଲଜ୍ । ମାଲିକ ହେଉଛି ଗୁଜୁରାଟି । ଭଲ ବ୍ୟବହାର । ଭଲ ଦରମା । ମୋ କାମ ଥିଲା, ଗୋଟିଏ ମହଲାର ଦଶଟା ରୁମ୍‌ରେ ଯେଉଁମାନେ ରହିବେ, ସେମାନଙ୍କର ବୋଲହାକ ମାନିବା । ବାରନ୍ଦା ସଫା କରିବା ଇତ୍ୟାଦି । ବେଶ୍ ବକ୍‌ସିସ୍ ମିଳୁଥିଲା । ଆରାମରେ ରହିଲି ସେଇଠି ।

ଏତେ ବର୍ଷର ଅନୁପସ୍ଥିତିର ଏଇଟା ବୋଧହୁଏ ଥିଲା କାହାଣୀ । ଏତେ ସଂକ୍ଷିପ୍ତ ! ଶ୍ରୋତାମାନେ ଟିକିଏ ହତାଶ ହୋଇ ପଡ଼ିଲେ ।

—"ଏତେ ଦିନ ଯାଏ ତେବେ ତୁ ସେଇଠି ରହିଲୁ ?" ଜଣେ ପଚାରିଲା ।

ରାଧାକାନ୍ତ ପ୍ରଥମେ ବିପର୍ଯ୍ୟସ୍ତ ହୋଇ କହିଲା—"ନା । ସେଇଠି ଥିଲି ପ୍ରାୟ ଚାରି ବର୍ଷ । ଦରମା ଯେତିକି ପାଉଥିଲି, ବକ୍‌ସିସ୍ ପାଉଥିଲି

ତା'ର ଦୁଇଗୁଣ । ଘର ଭଲ ଚାକିରି ।" ତା'ପରେ ତା' ସ୍ୱରକୁ ଫେରି ଆସିଲା ଉତ୍ସାହ—"ସେଠାରେ ଯଦି ସବୁ ଦିନ ରହିଯାଇ ଥାଆନ୍ତି, ତେବେ ଜୀବନରେ ମଜା ରହିଥାନ୍ତା କେଉଁଠି ? ମୋ ବଦମାସୀ ଯୋଗୁଁ ସେ ଚାକିରି ଗଲା । ପରେଇ ଥିଲା ଅନେକ, କିନ୍ତୁ ବର୍ତ୍ତମାନ ଭାବୁଚି ଯେ, ବଦମାସୀ ଯୋଗୁଁ ଏତେ କଥା ଦେଖିଲି, ଶୁଣିଲି । ଶେଷରେ କାର୍ ଡ୍ରାଇଭର ହେଲି ।"

—"କାର୍ ଡ୍ରାଇଭର ! ତୋତେ ଗାଡ଼ି ଚଳେଇ ଆସେ ? ତେବେ ମୋଟର ସାଇକେଲ ତ ଚଳେଇ ପାରିବୁ ?" ଜଣେ ପଚାରିଲା ବିସ୍ମୟ ଓ ଅବିଶ୍ୱାସ ସହିତ ।

—"କ'ଣ କହିଲୁ ? ମୋଟର ସାଇକେଲ ! ଫୁଃ ! ଇଏ କହୁଚି ମୋଟର ସାଇକେଲ ଚଳେଇ ପାରିବ ନା ନାହିଁ ! ଆବେ, ଟ୍ରକ୍ ଆଣ, ବସ୍ ଆଣ । ଚଳେଇ ପାରୁଚି କି ନାହିଁ ଦେଖ ! କହିଲା, ମୋଟର ସାଇକେଲ ! ଫୁଃ !" ସତେ ଯେପରି କଥାଟା ଗୋଟାଏ ଅପମାନ ହୋଇ ପଡ଼ିଲା ତା'ର ପ୍ରତିଭା ପ୍ରତି ।

—"କିନ୍ତୁ ଲଜ୍‌ରେ କି ପ୍ରକାର ବଦମାସୀ କଲୁ ତୁ ?" ଜଣେ ପଚାରିଲା ।

ହସିଲା ଟିକିଏ ରାଧାକାନ୍ତ । ତୁମର ସବୁ ସେଇ କଥା ଶୁଣିବା ପାଇଁ ନିଶ୍ଚୟ ମନ ହେଉଥିବ । ତେବେ ଘଟଣାଟା ପ୍ରକୃତରେ ସେମିତି କିଛି ଗୁରୁତର ନ ଥିଲା । ଦିନେ ଗୋଟେ ରୁମ୍‌କୁ ଆସିଲେ ସ୍ୱାମୀ-ସ୍ତ୍ରୀ ଦୁଇଜଣ । ସ୍ୱାମୀ-ସ୍ତ୍ରୀ କି ନା କେଜାଣି ? ଲଜ୍‌ରେ ସେମିତି ହଜାରେ ଧନ୍ଦା ଚାଲେ । ତେବେ, ସେ ଦୁଇଜଣ ପ୍ରାୟ ସ୍ୱାମୀ ସ୍ତ୍ରୀ ଥିଲେ । ସ୍ତ୍ରୀ ଥିଲା ଜବରଦସ୍ତ ସୁନ୍ଦର । ଏକବାର ସଲିଡ଼୍ ମାଲ୍ । ବୁଲିଆଡ଼େ ବୁଲି ଯାଇଥିଲେ ବୋଧହୁଏ । ଫେରିଲେ ରାତି ବାରଟା ବେଳକୁ । ଆଉ ସବୁ ରୁମ୍ ବନ୍ଦ ହୋଇ ସାରିଲାଣି ସେତେବେଳେ । ସେ ଦୁଇଜଣ ରୁମ୍‌ରେ ପଶିଲେ । ରୁଟିକାଠି ପାଇଁ ସେଇ ଯେଉଁ କଣା ଥାଏ, ମୁଁ ସେଇବାଟେ ଅନେଇଲି ଭିତରକୁ । ସ୍ତ୍ରୀ ସେତେବେଳକୁ ଲୁଗା ବଦଳଉଥାଏ । ଆଉ କିଛି ଦେଖିବ ବୋଲି ଧଡ଼୍ ଧଡ଼୍ ଛାତିଦେଇ ମୁଁ ଅପେକ୍ଷା କରୁଥାଏ ।

କେହି ଜଣେ ମୋ କାନ ଧରିପକାଇଲା । ଦେଖିଲାବେଳକୁ ଲଜ୍‌ର ମାଲିକ । ମୁଁ ଥରିଲିଣି ଗୋଟାପଣେ । ସେଇଭଳି କାନଧରି ନେଲା ତା' ଟେବୁଲ୍ ପାଖକୁ । ମୋର ଯାହା ଦରମା ପାଇବା କଥା, ମୋତେ ଦେଇସାରି କହିଲା—ଗେଟ୍ ଆଉଟ୍ ! ମୁଁ କାନ୍ଦି ପକେଇଲି । ଆଉ ଦିନେ ଏମିତି କରିବି ନାହିଁ ବୋଲି ଯେତେ କହିଲି, ସେ ମାନିଲା ନାହିଁ ଜମା । ଯାଆବାତ ଲୁଗାପଟା ଧରି ବାହାରି ଆସିଲି । ଦିନ ଦୁଇଟା ପରେ ସେଇ ସହରରେ ମିଷ୍ଟର ସିଂଙ୍କର ଗୃହକର ଭାବରେ ରହିଲି । ପରେପରେ ତାଙ୍କର ଡ୍ରାଇଭର । ଗୋଟେ ବଡ଼ କଣ୍ଟ୍ରାକ୍ଟର ସିଏ । ସେଇଠି ରହିଚି ଆଜଯାଏଁ । ଅବିକା କାମ ନାହିଁ ବେଶୀ । ସେ ଯାଇଚନ୍ତି ଫରେନ୍, କ'ଣ ତା' ନାଁଟା ମନେ ପଡୁନାହିଁ । ଶଳା, ଯେତେସବୁ ଅଖାଡ଼ୁଆ ନାଁ । ହଁ, ଉଗାଣ୍ଡା । ସେଠାରେ କ'ଣ ରେଲପୋଲ କି କ'ଣ ଗୋଟେ ବିଲ୍‌ଡିଂ ହେବ । ସେସବୁ କଥା ମୁଁ ଭଲ କରି ଜାଣି ନାହିଁ ।

ଏତେ ଗୁଡ଼ାଏ ଗପିବା ପରେ ରାଧାକାନ୍ତ ଟିକିଏ ଅବସନ୍ନ ହୋଇ ପଡ଼ିଲା । ପୁଣି ଚା' ପିଇଲା । ସିଗାରେଟ ଲଗାଇଲା । ପଚାରିଲା—“ଆମ ଘରେ କ'ଣ ଶୋଇ ହେବ ? ଏଠି କିଏ ସବୁ ଶୁଅନ୍ତି ? ମୁଁ ବି ଶୋଇ ପଡ଼ନ୍ତି ଏଠାରେ ।”

ଦଶ-ପନ୍ଦର ଜଣ ପିଲା ଏକା ସଙ୍ଗେ ଅନୁମୋଦନ କଲେ ତା' କଥା । ବିରାଟ ସଙ୍କଟର ସମାଧାନ ହୋଇଗଲା ଭଳି ସେ କହିଲା— “ଟିକିଏ ଯାଏଁ । ବୁଲିଆସେ ଘରଆଡ଼ୁ । କ'ଣ କରୁଚି ସେ ବୁଢ଼ା ଦେଖିବା ।” ଧରିଲା ବ୍ରିଫ୍‌କେଶ୍ ଓ ବ୍ୟାଗ୍ । ଆଉ ଗୋଟାଏ ଗୁରୁତ୍ୱପୂର୍ଣ୍ଣ କଥା ମନେ ପଡ଼ିବା ଭଳି ସେ ପଚାରିଲା—“ଦେବ ଆଗ୍ରୱାଲର ଦୋକାନ ଖୋଲିଥିବ । ନୁହେଁ ?”

କେହି ଜଣେ ମନା କରିବା ପରେ ସେ ଟିକିଏ ଗୁମ୍‌ମାରି ଠିଆହେଲା । ଆଉ କିଛି ପଚାରିବା ପାଇଁ ପାଟି ଖୋଲୁଥିଲା, କିନ୍ତୁ ଚୁପ୍ ରହିଲା । ଅଳ୍ପ କେତୋଟି ମୁହୂର୍ତ୍ତର ମାନସିକ ସଂଘର୍ଷ ପରେ ପଚାରିଲା— “ତାଙ୍କ ଘରେ ସମସ୍ତେ ଅଛନ୍ତି ? ସମସ୍ତେ ଭଲ ଅଛନ୍ତି ?”

ଦୁଇଟି ପ୍ରଶ୍ନର ଗୋଟିଏ ଉତ୍ତର ଥିଲା—ହଁ । ରାଧାକାନ୍ତ ପୁଣି ପଚାରିଲା—“ସେ ଘନବୁଢ଼ାର ବନ୍ଧୁକଟା ଅଛି ନା ନାହିଁ ?”

ତା'ର ଏଇ ଔଦ୍ଧତ୍ୟ ଅନେକଙ୍କୁ ମାରବା ଇଶାରଦେଲା କଣ୍ଟ୍ରୁ ସମସ୍ତେ ଯାଇଁ । କେହି ଜଣେ କହିଲା ଅଛି ବୋଲି । ରାଧାକାନ୍ତ ଉତ୍ସାହିତ ହୋଇ ପ୍ରସ୍ତାବ ଦେଲା—"ଅଛି ? ବାଃ ଭଲ ହେବ । କଣ୍ଟ୍ରୁ ଶିକାର କଲେ ଫିଷ୍ଟି ହେବ ।" ତା'ପରେ କିନ୍ତୁ ନିରୁତ୍ସାହିତ ହୋଇଗଲା—"ଏଠାରେ ଆଉ ଜଙ୍ଗଲ କାହିଁ ? ସବୁ ସଫା ହୋଇ ଯାଇଚି । ଆସିବାବେଳେ ବିଶ୍ୱାସ କରିପାରୁ ନ ଥିଲି, ମୁଁ ଗାଁକୁ ଯାଉଚି ବୋଲି । ଗ୍ରାମଆଡ଼େ ଗୃଷ ଜମି । ତେବେ ଦେଖିବା, କାଳେ ଚଢ଼େଇ ମିଳିଯିବେ ଆମ ଭାଗ୍ୟକୁ । ହେଇ, ଦେଖ, ନାଗୁଆଣୀ ପାହାଡ଼ ଲଣ୍ଡା । ଆମ ଗାଁ ପାହାଡ଼ ତ ଆହୁରି ଲଣ୍ଡା । ରଙ୍ଗା, ରାଜକୁସୁମ କୋଳି ଆଉ ଅଛି ନା ନାହିଁ ?"

କେହି ଜଣେ କହିଲା—"ଆଉ ଅଛି ? କୋଳି ଖାଇ ତା' ଗଛ ବି ଖାଇ ସାରିଲେଣି ଲୋକମାନେ । ତୁ ଆଉ ଥରେ ଗାଁକୁ ଆସିଲେ ଦେଖିବୁ, ପଥର ବି ନାହିଁ । ଲୋକେ ଖାଇ ଦେଉଚନ୍ତି ସବୁ ।" ସେ ଲୋକର କଥାରେ ଅନେକ କ୍ଷୋଭ ଥିଲା ।

ରାଧାକାନ୍ତ ଏଇ ମନ୍ତବ୍ୟ ଉପରେ କିଛି କହିଲା ନାହିଁ । ଗାଁଆଡ଼େ ଯିବାବେଳେ ଦୂରରୁ କାହାକୁ ଦେଖିପାରି ଅଟକି ଗଲା । ଆହୁରି ସତର୍କତାର ସହିତ ସେଇଆଡ଼କୁ ଅନେଇ ପଚାରିଲା—"କିଏ ଆସୁଚି, ଦେଖିଲ ? ଘନବୁଢ଼ା ତ ? ନାଁ, ଆଉ କିଏ ?"

ସେ' ଦିଗରୁ ବାସ୍ତବିକ ଘନଶ୍ୟାମ ଦାଦା ଆସୁଥିଲେ । ରାଧାକାନ୍ତ ଜୋରରେ ଆଗେଇଗଲା ସେଇ ଦିଗକୁ ଏବଂ ତାଙ୍କ ସାମନାରେ ଠିଆ ହୋଇ ପଡ଼ିଲା, ସତେ ଯେପରି ତାଙ୍କର ସ୍ମୃତିଗୁଡ଼ିକୁ ଦର୍ଶାଇ ତାଙ୍କୁ ସାବଧାନ କରାଇଦେବା ରାଧାକାନ୍ତର ଉଦ୍ଦେଶ୍ୟ ଥିଲା ।

ଗୋଟାଏ ଉତ୍କଣ୍ଠା ଆଚ୍ଛନ୍ନ କରି ରଖିଥିଲା ଦୋକାନ ପାଖରେ ଠିଆ ହୋଇଥିବା ଲୋକଙ୍କୁ । ଘନଶ୍ୟାମଦାଦା ପ୍ରଥମେ ଭ୍ରୂକୁଞ୍ଚନ କଲେ । ସ୍ମୃତିର ଆଲବମ୍ ଓଲଟାଇଲେ ସାମନାରେ ଠିଆ ହୋଇଥିବା ଲୋକ କିଏ ଜାଣିବା ପାଇଁ । ଅଳ୍ପ ସମୟ ପରେ ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇ ପଡ଼ିଲା । ପଚାରିଲେ—"ତୁ ରାଧାକାନ୍ତ ନା ? କୁଆଡ଼େ ଥିଲୁ ଏତେ ଦିନ

ଯାଏଁ ? ଆଉ ସବୁ ଭଲ ? ବହୁତ ବଡ଼ଟିଏ ହୋଇ ଯାଇଚୁ ସ୍ନା' ଭିତରେ ।" ଦାଦା କହୁଥିଲେ ଘନଷ୍ଟ ଆବେଗରେ ଖୁବ୍ ପ୍ରସନ୍ନ ହୋଇ ।

ଏସବୁ ଶୁଣିବା ପାଇଁ କମ୍ବା ଏ ପ୍ରଶ୍ନର ଉତ୍ତର ଦେବା ପାଇଁ ଧୈର୍ଯ୍ୟ ନ ଥିଲା ରାଧାକାନ୍ତର । ପଚାରିଲା—"ତୁମ ବନ୍ଧୁକଟା ଅଛି ବୋଲି ଶୁଣିଲି ।"

ପ୍ରସଙ୍ଗଟା ଏତେ ଖାପ୍‌ଛଡ଼ା ହୋଇ ପଡ଼ିଲା ଯେ, ଦାଦା ପ୍ରଥମେ କିଛି ବୁଝି ପାରିଲେ ନାଇଁ, ଏତେ ବର୍ଷ ପରେ ଫେରିଥିବା ଏ ଟୋକାର ମତଲବ କ'ଣ ହୋଇପାରେ । ତାଙ୍କ ମୁହଁର ସ୍ମିତହାସ ହଜି ଯାଉଥିଲା । ସେ କେବଳ ହୁଁ ବୋଲି କହିଲେ ।

—"କାଲି ତୁମ ବନ୍ଧୁକଟା ଟିକିଏ ଦେବ । ଜଙ୍ଗଲ ତ ଗଲାଣି ସଫା ହୋଇ । ତଥାପି କାଳେ କିଛି ମିଳିଯିବ ।" ରାଧାକାନ୍ତର ସ୍ୱରରେ ଅନୁରୋଧ ଅପେକ୍ଷା ନିର୍ଦ୍ଦେଶ ବେଶୀ ପ୍ରାଞ୍ଜଳ ଥିଲା ।

ଘନଶ୍ୟାମ ଦାଦା ଗୋଟାଏ ବଡ଼ ଧରଣର ଶକ୍ ପାଇଲେ ବୋଧହୁଏ । ତାଙ୍କ ବନ୍ଧୁକ ଅନେକ ଦିନ ହେଲା ଗୋଟାଏ ବିସ୍ଫୋରଣର ସ୍ୱପ୍ନ ଦେଖି ଦେଖି ସମ୍ଭବତଃ ଶୋଇ ପଡ଼ିଚି ଏବଂ ଭୁଲିଯାଇଚି ଯେ, ତାହାର ଲମ୍ବା ପାଟିବାଟେ ଧ୍ୱଂସାତ୍ମକ ବୁଲେଟ ବାହାରି ଯାଇପାରେ ଏବଂ ଆଗରେ ଥିବା ବସ୍ତୁକୁ ଆଘାତ ଦେଇପାରେ । କିନ୍ତୁ ଏଭଳି ଭାବରେ ବନ୍ଧୁକ ମାଗି ନ ଥିଲେ କେହି ତାଙ୍କୁ ସ୍ନା' ପୂର୍ବରୁ । ସେ ଟୋକାର ଦୁଷ୍ଟାମି ଓ ଅହଙ୍କାରକୁ ସହିଗଲେ କୌଣସି ଜବାବ ନ ଦେଇ ।

—"ଗୁଳି ପଇସା ମୁଁ ଦେଇଦେବି ।" ଦାଦାଙ୍କୁ ଉତ୍ସାହିତ କଲାଭଳି କହିଲା ରାଧାକାନ୍ତ । "ଆଜିକାଲି ଗୁଳି ଦାମ୍ ବହୁତ ବଢ଼ି ଯାଇଚି । କ'ଣ କହୁଚ ? କାଲି ବନ୍ଧୁକଟା ଦେବ ଦୁଇ-ତିନି ଘଣ୍ଟା ପାଇଁ ?"

ଦାଦା ଅପମାନିତ ବୋଧକଲେ । ସେ ଚାହିଁଲେ ରାଧାକାନ୍ତ ମୁହଁକୁ, କିନ୍ତୁ ତା' ସହିତ ଯୁକ୍ତିତର୍କ କରିବା ପାଇଁ ତାଙ୍କର ଇଚ୍ଛା ହେଲା ନାଇଁ । ସେ ନୀରବରେ ଆଗକୁ ପାଦ ବଢ଼େଇଲେ ।

—"ଏ ଶଳା ବୁଢ଼ା କ'ଣ କିଛି କହୁନାହିଁ ?" ରାଧାକାନ୍ତର ଏଇ କଥା ନିତାନ୍ତ ନିର୍ମମ ଥିଲା । ଦାଦାଙ୍କର ମୁଣ୍ଡ ଖରାପ ହୋଇଚନ୍ତି ଏଭଳି ମନ୍ତବ୍ୟ ଶୁଣି । ସେ ବୁଲିପଡ଼ି ଅନେଇଲା ବେଳକୁ ରାଧାକାନ୍ତ ଆଗେଇ ଯାଉଥିଲା ଗାଁ ଆଡ଼େ ।

ଆଶ୍ଚର୍ଯ୍ୟ, ଘର ପ୍ରାୟ ଯେମିତି ଥିଲା ସେମିତି ଅଛି, ଅଥଚ ମଣିଷ ଦେଖାଯାଉଚି ମୁମୂର୍ଷୁ ଓ ଦରମଲା । ମଣିଷ ଏଇଭଳି ଘରେ ଜନ୍ମ ହେବ କୁଆଁ କୁଆଁ ଚିତ୍କାର କରି । ବଡ଼ ହେବ, କର୍ମଠ ହେବ, ବୁଢ଼ା ହେବ, ଅକର୍ମଣ୍ୟ ହୋଇ ମରିବ; କିନ୍ତୁ ଘର ରହିଥିବ ଅପରିବର୍ତ୍ତିତ ହୋଇ । ଏଇ ଯେମିତି ଅନନ୍ତ ପ୍ରାୟ ଭୂଇଁ ଉପରେ ହାମୁଡ଼େଇବାକୁ ବସିଲା ଏଡ଼େ ଚଞ୍ଚଳ । ଦେଖାଯାଉଚି ନିତାନ୍ତ ଅପରିଷ୍କାର । ଚାଲି ପାରୁନାହିଁ ଭଲକରି । ଶାଗ ପଟାଳି ଉପରେ ନଇଁପଡ଼ି କ'ଣ ଦେଖୁଚି କେଜାଣି ? ମାଟିରେ କ'ଣ କିଛି ଲେଖାଥାଏ ? ଆଉ ସବୁ ରହିଚି ଯେମିତି ଥିଲା ସେ ଘର ଛାଡ଼ିବା ବେଳେ । ବାଡ଼, ପିଜୁଳି, ସଜନା, ଅମୃତଭଣ୍ଡା ଇତ୍ୟାଦି ଗଛ । ବାଡ଼ କବାଟ ପାଖରେ ବ୍ୟାଗ୍ ଧରି ରାଧାକାନ୍ତ ଠିଆ ହୋଇଥିଲା । ସମ୍ପୂର୍ଣ୍ଣ ଆବେଗହୀନ ଦୃଷ୍ଟିରେ ଚାହିଁଥିଲା ଏକଲୟରେ କିଛି କାମ କରୁଥିବା ଲୋକଟା ଆଡ଼େ ।

ସେ ଭିତରକୁ ଚାଲି ଆସିଲା । ପିଣ୍ଡା ଉପରେ ବ୍ରିଫ୍‌କେଶ୍ ଓ ବ୍ୟାଗ୍ ରଖିବା ବେଳେ ଦେଖିଲା, କାମ କରୁଥିବା ଲୋକଟିର ପାଣ୍ଡୁର ମୁହଁ ପରିପୂର୍ଣ୍ଣ ହୋଇ ଯାଇଚି, ମଇଳା ଆଖି ଦେଖାଯାଉଚି ଚକ୍ ଚକ୍ । ଲୋକର ଭାଷା ଲେଖାଯିବା ପାଇଁ ସୃଷ୍ଟି ହୋଇଥିବା ଦୁଇଓଠ କମ୍ପୁଥିଲା । ତା'ର ସମଗ୍ର ସତ୍ତା ଯେପରି ଉଦ୍ଭାସିତ ହୋଇ ଯାଉଥିଲା ଏତେ ଦିନଯାଏ ପ୍ରତୀକ୍ଷା କରିଥିବା ତା' ଜୀବନର ଆଲୋକ ଆପଣା ଛାଏଁ ତା' ପାଖକୁ ଫେରିଆସି ଥିବାରୁ ।

ଅସମ୍ଭାଳ ସ୍ୱରରେ ସେ ପଚାରିଲା—"ତୁ ମୋର ରାଧା ନା ? କୁଆଡ଼େ ଥିଲୁ ରେ ବାପ ଏତେ ଦିନଯାଏ ? ଏତେ ଦିନ ଧରି ତୋ' ରାଗ ଯାଇ ନ ଥିଲା ? ଆଜି ମନେପଡ଼ିଲା ଯେ ଏଠାରେ ମୁଁ ଥିବି । ତୋ' ପାଇଁ ଦିନ ରାତି ଝୁରି ହେଉଥିବି ?" କହୁ କହୁ ସେ କାନ୍ଦି ପକାଇଲା ଗୋଟାଏ ଅସାଧାରଣ ଅଭିମାନ ଓ ପରିପୂର୍ଣ୍ଣ ଆବେଗରେ । ସାମନାରେ

ଠିଆ ହୋଇଥିବା ଲୋକଜଣକ ସତରେ ରାଧାକାନ୍ତ ବୋଲି ନିଶ୍ଚିତ ହେବାକୁ ସେ ଦୁଇହାତ ବଢ଼ାଇଲା ତାକୁ ସ୍ପର୍ଶ କରିବା ପାଇଁ ।

ରାଧାକାନ୍ତ ପଛକୁ ଘୁଞ୍ଚି ଆସିଲା, ଧୂଳିମଖା ହାତ ଏଡ଼ାଇବା ସକାଶେ । ଗମ୍ଭୀର ହୋଇ କହିଲା—"ତୁମେ ଏତେ ମଇଳା ଲୁଗାପଟା ପିନ୍ଧିଲେ ଦେହ ଭଲ ରହିବ କିପରି ? ପଇସା ରଖ । କାଲି ସାବୁନ ଲଗାଇ ଗାଧୋଇବ । ଲୁଗାପଟା ସଫା କରିବ । ଆମ ଘରେ କୁକୁଡ଼ା ଅଛି ?"

ଅନନ୍ତ ସ୍ଥିରହୋଇ ପାରୁ ନ ଥାଏ, ଏତେ ଦିନର ପୁଞ୍ଜୀଭୂତ ଆବେଗ ପ୍ରକାଶ କରିବା ପାଇଁ ସୁଯୋଗ ପାଉ ନ ଥାଏ ବୋଲି । ସେ ଖାଲି ଛଟପଟ ହେଉଥାଏ, ସମ୍ପୂର୍ଣ୍ଣ ଭାବରେ ନିର୍ବୋଧ ପାଲଟି ଯାଉଥାଏ ରାଧାକାନ୍ତ ଭଳି ଗୋଟାଏ ପିଲାକୁ ଅଭ୍ୟର୍ଥନା ଜଣାଇବା ପାଇଁ ତା ପାଖରେ କିଛି ନ ଥାଏ ବୋଲି ।

—"ଦୁଇ-ତିନିଟା ଅଛି," ଅନନ୍ତ କହିଲା । ତରତର ହୋଇ ଘର ଭିତରକୁ ଗଲାବେଳେ କହିଲା—"ରହ, ମୁଁ ପାଣି ଢାଳେ ଆଣେ । ଧୋଇହେବୁ ।"

—"ଧୋଇ ହୋଇଛି ।" ରାଧାକାନ୍ତ ସିଗାରେଟ୍ ଲଗାଇ ସାରିଲାଣି ସେତେବେଳେ । "ମୁଁ ଯାଉଛି, ବୁଲିବୁଲି କରି ଫେରିବ । କୁକୁଡ଼ାଟେ ମାରିଥିବ । ଏଇ, ପଇସା ରଖ । ସଉଦା କିଣି ଆଣିବ ।" ରାଧାକାନ୍ତ ପେଣ୍ଟ-ଗଞ୍ଜି ଇତ୍ୟାଦି ଖୋଲି ଚରିତ ଲୁଙ୍ଗି ପିନ୍ଧିଲା ଓ ବାହାରକୁ ବାହାରିଗଲା ।

ଓସ୍ତଗଛ ପାଖରେ ପହଞ୍ଚି ଆଗକୁ ଅନେଇଲା । ଯଥେଷ୍ଟ ଦୂରରେ ଥିବା ଠାକୁରଙ୍କ କୋଠା ବାରନ୍ଦାରେ ଜମିଥିଲେ ଗୁଡ଼ାଏ ଲୋକ । ସେଠାରେ ସୃଷ୍ଟି ହୋଇଥିବା କୋଳାହଳ ଅସ୍ପଷ୍ଟ ଭାବରେ ପହଞ୍ଚୁଥିଲା ତା ପାଖରେ । ସେ ଆଉ ଗାଁ ରାସ୍ତାରେ ନ ଯାଇ ବିଲ ହିଡ଼ ଉପରେ ଚାଲିଲା । ଆଦୌ ଜାଣିପାରି ନ ଥିଲା କେତେବେଳେ ସେ ପହଞ୍ଚି ଯାଇଥିଲା ଦେବ ଆଚାର୍ଯ୍ୟଙ୍କ ଘର ପାଖରେ ।

ସେ ସ୍ତମ୍ଭୀଭୂତ ହୋଇ ଠିଆ ହୋଇଥିଲା । ଝାପ୍‌ସା ଅନ୍ଧାର କୋଠରି ଦ୍ୱାରରେ ଠିଆ ହୋଇଥିଲା ନାରୀ ମୂର୍ତ୍ତିଟିଏ । ତା' ମୁହଁରେ ଥିଲା ବ୍ୟସ୍ତତା, ସାବଧାନତା ଓ ମୁଗ୍‌ଧଭାବ । ରାଧାକାନ୍ତର ସତ୍ତାରେ ଥିବା ଅଜସ୍ର ନକ୍ଷତ୍ରର ବନ୍ଧ ଭାଙ୍ଗିଗଲା ସତେ ଯେପରି । ଝାଳପୂର୍ଣ୍ଣ ଉତ୍ତେଜନାଟେ ତାକୁ ଅସ୍ଥିର କରି ପକାଇଲା । କାନ ପାଖରେ ସେ ଶୁଣିଲା ପ୍ରଚଣ୍ଡ ବିସ୍ଫୋରଣ, ଝଡ଼ ଓ ଘଡ଼ଘଡ଼ିର ଶେଷହୀନ ଆବାଜ୍ । ଗୋଟାଏ ସବୁଜ, ରଙ୍ଗିନ ଓ ବାସ୍ନାମୟ ପବନଟେ ବହିବାକୁ ଆରମ୍ଭ କଲା ଅମାନିଆ ହୋଇ ।

—"ତୁମେ ରାଧାକାନ୍ତ ? କେଡ଼େ ବଡ଼ଟେ ହୋଇଗଲଣି । ଆଜି ଆସିଲ ?" ଦେହର ପରିଧାନ ସଜାଡ଼ି ନେଇ ଇନ୍ଦୁ ପଚାରିଲା । ସେ ଚାହୁଁଥିଲା, ରାଧାକାନ୍ତ ସେଠାରୁ ଚଞ୍ଚଳ ପଳେଇଯିବା ଦରକାର ।

—"ଭାବିଲି, ଯାଏଁ ଟିକିଏ ବୁଲିଆସେ ।" ରାଧାକାନ୍ତର ସ୍ୱର ଏତେ କମ୍ପିତ ଓ ଉତ୍ତପ୍ତ ଥିଲା ଯେ, ସେ ନିଜେ ବିସ୍ମିତ ହେଲା ନିଜକୁ ଶୁଣି । "ତୁମେ ତ ଜମା ବଦଳି ନ । ଆଗଭଳି ଦିଶୁଚ ସୁନ୍ଦର ଆଉ ଗୋରା । ଏବେ ତୁମ ଗାଧୋଇବା ପାଇଁ ପାଣି କିଏ ଆଣି ଦେଉଚ ?"

ଇନ୍ଦୁ କିଛି କହିଲା ନାହିଁ । ଚାହିଁଲା ଚାରିଆଡ଼କୁ । କିଛି କହିବା ପାଇଁ ଚେଷ୍ଟା କଲା । ପାରିଲା ନାହିଁ । ତା'ର ଦୁଇ କାନ୍ଧ ଉପରେ ରାଧାକାନ୍ତର ବଳିଷ୍ଠ ହାତର ସ୍ପର୍ଶ ପାଇବା ମାତ୍ରେ ସେ ନିମ୍ନସ୍ୱରରେ କେବଳ ପ୍ରତିବାଦ କଲା—"ପଳାଅ, ମୁଁ କହୁଚି ପଳାଅ ଏଠାରୁ । ଗଲ, ନା ନାହିଁ ?" ତା' ସ୍ୱପ୍ନ ହଜିଯାଉଥିଲା ଗୋଟାଏ ନିବିଡ଼ ଅନ୍ଧକାର ଭିତରେ ।

ରାଧାକାନ୍ତର ଭାବନା ଜଖମ ହୋଇ ଯାଇଥିଲା ସମ୍ପୂର୍ଣ୍ଣ ଭାବରେ । ସେ ଆଦୌ ଜାଣିପାରୁ ନ ଥିଲା ସେ ଅଛି କେଉଁଠି ଓ କରୁଚି କଅଣ । ତଉଲିଆରେ ମୁହଁ ଓ ଦେହର ଝାଳ ପୋଛୁ ସେ ଆବିଷ୍କାର କଲା ଯେ ଗାଁ ରାସ୍ତାରେ ଠିଆ ହୋଇଚି ସେ । ଅକ୍ଷତର ଦେବ ଆଚାର୍ଯ୍ୟଙ୍କ ଦୋକାନ ବାରନ୍ଦା ସାମନାରେ । ସେଇଟା ପରିତ୍ୟକ୍ତ ଦିଶୁଚି । ନା ଅଛି ତାସ୍-ପଶା ଖେଳର ଆସର, ନା ଅଛି ଦେବ ଆଚାର୍ଯ୍ୟଙ୍କର ଅପେରା

ଡାଇଲଗ ଓ ସନ୍ତୁଷ୍ଟ ଦେଖଣାହାସି, ନା ଅଛି ଅନନ୍ତ ଦେବ ଆଚାର୍ଯ୍ୟଙ୍କର ଆଦେଶ ପାଳନ କରିବା ପାଇଁ । ରାଧାକାନ୍ତ ଗୋଟାଏ ଅସ୍ଥିର ଶିହରଣରୁ ନିଜକୁ ମୁକ୍ତ କରୁଥାଏ । ଟିକିଏ ଦୂରରେ ଠାକୁରଙ୍କ କୋଠା ବାରନ୍ଦାରେ ଜମିଥିବା ଲୋକମାନଙ୍କର ସ୍ଥିତି, ସେମାନଙ୍କର କୋଳାହଳ ସମ୍ପର୍କରେ ସଚେତନ ହେଉଥିଲା । ସେ ଖୁବ୍ ଆସ୍ତେ ଆଗେଇ ଚାଲିଲା ସ୍ୱାଭାବିକ ଢଙ୍ଗରେ ।

ରାଧାକାନ୍ତ ଜାଣି ନ ଥିଲା ଯେ ପଞ୍ଚାୟତକୁ ଦୁଇଜଣ ମେମ୍ବର ପଠେଇବା ପାଇଁ ଗାଁ ଲୋକେ ସେଠାରେ ଜମା ହୋଇଚନ୍ତି । କିନ୍ତୁ କୋଳାହଳ ଓ ଯୁକ୍ତିତର୍କଟା ଚାଲିଥିଲା ତାକୁ ହିଁ କେନ୍ଦ୍ରକରି । ଲକ୍ଷ୍ମୀ ମାର୍କେଟ ପାଖରେ ଘନଶ୍ୟାମଦାଦାଙ୍କୁ ସେ ଯେପରି ଭାବରେ ଅପମାନିତ କରିଥିଲା ସେଥିପାଇଁ ତା' ପ୍ରତି ଛି ଛିକରର ବାତାବରଣ ସୃଷ୍ଟି ହୋଇ ଯାଇଥିଲା ।

ଅନନ୍ତ ନିଜକୁ ଅପରାଧୀ ବୋଲି ମନେ କରୁଥାଏ । ଖୁବ୍ ଆତୁର ହୋଇ କହୁଥାଏ ଯେ, ତା' ପୁଅ ଘନଶ୍ୟାମଦାଦାଙ୍କ ପାଖରେ କ୍ଷମା ମାଗିବ ଏଭଳି ବ୍ୟବହାର ଦେଖାଇଥିବାରୁ । ପୁଅ ତରଫରୁ ସେ ନିଜେ ହାତଯୋଡ଼ି କ୍ଷମା ମାଗିବା ଭଙ୍ଗୀରେ ଠିଆ ହୋଇଥିଲା । ଘୋଷଣା କରୁଥିଲା ଯେ, ଦରକାର ହେଲେ ସେ ନିଜେ ରାଧାକାନ୍ତକୁ ଶାସ୍ତି ଦେବ, ଅନେକ ବର୍ଷ ପୂର୍ବେ ଯେମିତି ସେ ଦେଇଥିଲା ।

ନିଜ ନାଁ ଶୁଣି ରାଧାକାନ୍ତ ଠିଆହୋଇ ପଡ଼ିଲା କୋଠା ସାମନାରେ । ସମସ୍ତଙ୍କୁ ଚାଲେଞ୍ଜ କଲାଭଳି, ହେୟ ଜ୍ଞାନ କଲାଭଳି ଠିଆ ହେଲା । କୋଳାହଳ ହଜିଗଲା ନୀରବତା ମଧ୍ୟରେ ।

—"ତୁ ଆଜି ବାବୁଙ୍କୁ ଦୋକାନ ପାଖରେ କ'ଣ କହିଲୁ ?" ଖୁବ୍ ହକ୍‌ଦାର ହେଲାଭଳି ଅନନ୍ତ ରାଧାକାନ୍ତକୁ ପଚାରିଲା । ଏକଥା ସତ ଯେ ସେ ସଉଦା ପାଇଁ ଦୋକାନକୁ ଯାଉଥିଲା । ହାତରେ ଧରିଥିଲା ତେଲ ଆଣିବା ପାଇଁ ଗୋଟେ ବୋତଲ ।

—"କେଉଁ ବାବୁ ? କାଇଁ, ମୁଁ କାହାରିକୁ କିଛି କହି ନାହିଁ ।" ଶାନ୍ତ ଓ ଦୃଢ଼ ସ୍ୱରରେ ଜବାବ ଦେଲା ରାଧାକାନ୍ତ । ପ୍ରାୟ ସମସ୍ତ ଲୋକ

ଦେଖୁଥିଲେ ତାଙ୍କୁ ଅନେକ ବର୍ଷ ପରେ । ଚୁପ୍ ହୋଇ ଯାଇଥିଲେ ତା' ତେଜ ଦେଖି ।

କେହି ଜଣେ କହିଲା—"ତୁ ଆଜ ଧନଭାଇଙ୍କୁ ବନ୍ଧୁକ ମାଗି ନ ଥିଲୁ ?"

—"ହଁ । କ'ଣ ହେଲା ?" ଓଲଟା ପଚାରିଲା ସେ ।

—"ସେମିତି କ'ଣ କେହି କହେ ? ତୁ ଏତେ ବଡ଼ ପିଲାଟେ ହେଲୁଣି । ବୟସ୍କ ଲୋକମାନଙ୍କୁ କେମିତି ବ୍ୟବହାର କରାଯାଏ, ଜାଣି ପାରିଲୁ ନାହିଁ ?" ଅନ୍ୟ ଜଣେ ମନ୍ତବ୍ୟ ପ୍ରକାଶ କଲା ।

ବ୍ୟସ୍ତ ହୋଇ ଅନନ୍ତ କହିଲା—"କ୍ଷମା ମାଗିଦେ, ମୁଁ କହୁଛି କ୍ଷମା ମାଗ । ତୋ ପେଟ ଚିପିଦେଲେ ବାବୁଙ୍କ ଘର ଭାତ ବାହାରି ପଡ଼ିବ । ତୁ ଗାଁରେ ପହଞ୍ଚିବା କ୍ଷଣି ବଦନାମ ଅର୍ଜନ କରିବା ଆରମ୍ଭ କଲୁଣି ?"

ରାଧାକାନ୍ତ ଟିକିଏ ଆମୋଦିତ ହେବା ଭଳି ଠିଆ ହୋଇଥିଲା । ପଚାରିଲା—"ବନ୍ଧୁକ ମାଗିଦେଲେ କ'ଣ ଭୁଲ୍ ହୋଇଯାଏ ? ମୁଁ ତାଙ୍କୁ କ'ଣ କହିଲି ଯେ କ୍ଷମା ମାଗିବି ?"

—"ତୁ ତାଙ୍କୁ ଶଳା ବୁଢ଼ା ବୋଲି କହିଲୁ ?" ଅନ୍ୟ ଜଣେ ପଚାରିଲା । ସେ ଗାଁର ଜଣେ ମୁରବି । ତୁ ଏମିତି କ'ଣ ଯେ ଏଭଳି କଥା ତାଙ୍କୁ କହିବୁ ?"

ରାଧାକାନ୍ତ ପ୍ରଥମେ ଟିକିଏ ଦବିଗଲା । କିନ୍ତୁ କହିଲା ଆତ୍ମ-ବିଶ୍ୱାସର ସହିତ—"ମୁଁ ତାଙ୍କ ସାମନାରେ କହିନାହିଁ । ସିଏ ଠାରୁ ଆହୁରି ଖରାପ କଥା ଏ ଦେଶର ପ୍ରଧାନମନ୍ତ୍ରୀଙ୍କୁ ବି ଲୋକେ କହୁଚନ୍ତି ।"

ସେ ଯିବା ପାଇଁ ବାହାରି ଥିଲା; କିନ୍ତୁ ଅନନ୍ତ ଏଥର ପାଟିକଲା —"ରାଧା, ଖବରଦାର ଯାଆନା କହୁଛି । କ୍ଷମା ମାଗ । କହ, ତୋର ଦୋଷ ହୋଇଛି । ଆଉ ସେମିତି କହିବୁ ନାହିଁ ।"

ରାଧାକାନ୍ତ ବଦ୍ରୁପର ହସ ହସି ଆଗେଇବା ବେଳେ ଅନନ୍ତ ଧରି ପକାଇଲା ତା' ହାତ । ରାଧାକାନ୍ତ ବୋଧହୁଏ ଭାବିଲା ଯେ ବାପା ତାଙ୍କୁ ପୁଣି ଥରେ ବାଡ଼େଇବା ପାଇଁ ଆସୁଛି । କ୍ଷିପ୍ରତାର ସହିତ ସେ ଅନନ୍ତର ବେକକୁ ଦୁଇ ହାତ ପାପୁଲିରେ ଧରି କହିଲା—"ମୁଁ ଆଉ ସେ ଆଗ

ରାଧାକାନ୍ତ ହୋଇ ନାହିଁ । ବୁଝିଲୁ, ଧକ ଧକ ହେଉଥିବା ଏ ଚଣ୍ଡିକୁ ଚପିଦେବ, ମୋ ଦେହରେ ଯନ୍ଦ ହାତ ଲଗେଇଚୁ । ଏମାନେ କେହି ତୋ ପିଠିରେ ପଡ଼ିବେ ନାହିଁ ।”

ଘଟଣାଟା ଏତେ ଅପ୍ରତ୍ୟାଶିତ ଓ ଅଭୂତପୂର୍ବ ଥିଲା ଯେ କେହି କିଛି କହି ପାରିଲେ ନାହିଁ, ବୁଝିପାରିଲେ ନାହିଁ । ଏ ପ୍ରକାରର ଘଟଣା ଆଗରୁ କେବେ ଘଟି ନ ଥିଲା ଆମ ଗାଁରେ । ବାପ ପୁଅ ମଧ୍ୟରେ ଝଗଡ଼ା ହୋଇଚି, କିନ୍ତୁ ସମସ୍ତଙ୍କ ସାମନାରେ ପୁଅ ତା' ବାପାକୁ ମାରିବା ପାଇଁ କେବେ ପ୍ରସ୍ତୁତ ହୋଇ ନ ଥିଲା । ରାଧାକାନ୍ତ ଛାଡ଼ିଦେଲା ଅନନ୍ତର ନିର୍ଲଜ୍ଜ ବେକ । ଆଗେଇ ଚାଲିଲା କିଛି ହୋଇ ନ ଥିବା ଭଳି ।

ଇନ୍ଦୁ ନିର୍ବାକ୍ ହୋଇ ଠିଆ ହେଲା କୋଠରି ଭିତରେ କିଛି ସମୟ ପାଇଁ । ପିନ୍ଧିଥିବା ଲୁଗା ସଜାଡ଼ି ନେଲା । ବାହାରକୁ ଆସିବା ବେଳେ ଜଣା ପଡ଼ିଲା ଯେ ଖାଲି ଦେହ ନୁହେଁ, ଚିନ୍ତା ଶକ୍ତି ମଧ୍ୟ ଅକାମୀ ହୋଇ ଯାଇଚି । ସେ ନିଜକୁ ସନ୍ତୁଳିତ କରିବା ପାଇଁ ଚେଷ୍ଟା କଲା । ଶାଢ଼ୀ ପଣତରେ ମୁହଁ ପୋଛି ନିଜକୁ ବୁଝାଇବାକୁ ଚାହୁଁଥିଲା ଯେ, ଅଭିଜ୍ଞତାଟା ବୋଧହୁଏ ମାମୁଲି, ଗୁରୁତ୍ୱହୀନ । ଏହାକୁ କେନ୍ଦ୍ର କରି ଅଯଥା ଚିନ୍ତାଶୀଳ ଓ ନିଜକୁ ଅପରାଧୀ ବୋଲି ଭାବିବାରେ କୌଣସି ମାନେ ନାହିଁ । ସେ ହସିବାକୁ ଚେଷ୍ଟା କଲା, କିନ୍ତୁ ତା'ର ମୁହଁ କୌଣସି ପ୍ରସନ୍ନତାକୁ ଅନୁମତି ଦେଲା ନାହିଁ ।

ସେ ପିଣ୍ଡା ଉପରକୁ ଆସି ବସିଲା । ଅନ୍ୟମନସ୍କ ଭାବରେ ଲକ୍ଷ୍ୟ କଲା ନିବିଡ଼ ହେଉଥିବା ଅନ୍ଧକାର ଆଡ଼େ । ତା'ପରେ ହଠାତ୍ ଏ କ'ଣ ହେଲା ? ପ୍ରଥମେ ଛଳ ଛଳ ହେଲା ଆଖି । ସେ ଗ୍ରେଷେଇ ଘର ଆଡ଼କୁ ଯିବାବେଳେ ତା'ର ଦୁଇଗାଲ ଭିଜି ଯାଇ ସାରିଥିଲା ଲୁହରେ । ନିଜକୁ ସହଜ କରିବାକୁ ଗଲାବେଳେ ଦୁଇ ଓଠ କମ୍ପିବାକୁ ଆରମ୍ଭ କଲା । ପରେ ପରେ ସମଗ୍ର ଦେହ ଦୋହଲି ଗଲା ଗୋଟାଏ ଅକଥନୀୟ କୋହରେ । ସେ ଦୁଇ ପାପୁଲିରେ ମୁହଁ ଢାଙ୍କି ଅସହାୟ ଭାବରେ ନିଜକୁ ସମର୍ପଣ କରିଦେଲା ଏଇ କୋହର ତୋଡ଼ ପାଖରେ । ନିର୍ଲଜ୍ଜ ସର୍ବହରା ଭଳି ସେ କାନ୍ଦୁଥିବା ବେଳେ ପହଞ୍ଚିଗଲା ଝିଅ ଚନା । ଇନ୍ଦୁ ନିଜେ ବି ଜାଣିପାରିଲା ନାହିଁ ଚନା ବିପର୍ଯ୍ୟୟର ହେତୁ ବୋଲି ସେ ଭାବିଲା କାହିଁକି ।

ପଚାରିଲା—"ଏତେବେଳ ଯାଏ କେଉଁଠି ଥିଲୁ ପୋଡ଼ାମୁହିଁ ? ବଢ଼ିଲା ଝିଅଟେ ଏତେ ଡେରି ପର୍ଯ୍ୟନ୍ତ କେଉଁଠି, କ'ଣ କରୁଥିଲୁ ?"

ଶିବା ଶଙ୍କିତ ହୋଇଗଲା ମା'ର ଏଭଳି ଆଚରଣରେ । ମା'ର ସ୍ୱର ଜଣାପଡ଼ୁଚି ବିପର୍ଯ୍ୟସ୍ତ । ଲୁହ ଓ କୋହ ଭିତରେ ରହି ସେ ସ୍ୱର ସତେ ଯେପରି ଛଟପଟ ହେଉଥିଲା ନିର୍ଦ୍ଦ୍ୱନ୍ଦ୍ୱରେ ଆତ୍ମପ୍ରକାଶ କରିବା ପାଇଁ । ଅଥଚ ଶିବା ବୁଝିପାରିଲା ନାହିଁ କେଉଁଠି ଥିଲା ତା'ର ତ୍ରୁଟି । ଏତିକବେଳେ ଘରକୁ ଫେରିବା ନୂଆ ନ ଥିଲା ତା' ପାଇଁ । କେବେ, କୌଣସି ଦିନ ଏ ବାବଦରେ କୈଫିୟତ ମଗାଯାଇ ନ ଥିଲା ତା'ଠାରୁ ।

ଏହା ସତ୍ତ୍ୱେ ସେ ଯେପରି ପଛଘୁଞ୍ଚା ଦେଉଥିଲା । ଡରିଯାଇ ଉତ୍ତର ଦେଲା—"ଏଇଠି ଥିଲି । ତାଙ୍କ ଘରେ । କୁଆଡ଼େ ଯାଇନାହିଁ ।"

ଇନ୍ଦୁ ଏକରକମ ଧାଇଁଗଲା ଶିବା ପାଖକୁ । ସେ କିଛି ବୁଝିବା ପୂର୍ବରୁ, ପ୍ରତିବାଦ କରିବା ପୂର୍ବରୁ ଇନ୍ଦୁର ଶକ୍ତ ଗୋଇଠା ଓ ବିଧା ଅଜାଡ଼ି ହୋଇ ପଡ଼ିଲା ତା' ଉପରେ । ଏହି ପ୍ରକ୍ରିୟା ଯେତେ ଭୟାନକ ଭାବରେ ଗ୍ଭଲିଥାଏ, ଇନ୍ଦୁର ସଙ୍ଗହରା କାନ୍ଦଣା ସେତିକ ବୃଦ୍ଧି ପାଉଥାଏ । ପରେ ପରେ, ବାବୁଲି ପହଞ୍ଚିବା ମାତ୍ରେ ଇନ୍ଦୁ ତାକୁ ଧରିଲା ପାଗଳୀଙ୍କ ଭଳି ଏବଂ ସେହି ଆଚରଣର ପୁନରାବୃତ୍ତି ହେଲା ।

ସମସ୍ତଙ୍କର କାନ୍ଦଣା ଘରର ପରିବେଶକୁ ଉଚ୍ଛନ୍ନ କରି ପକାଇଥିଲା । ସେହିଭଳି କାନ୍ଦୁଥିବା ଅବସ୍ଥାରେ ଇନ୍ଦୁ ଘୋଷଣା କଲା— "ଘରର ସମସ୍ତଙ୍କୁ ମାରିବି । ଜାଳିଦେବି ଏ ଘର । ମରିବି ତା'ପରେ । ମୁଁ ମରିବି । ତା' ଆଗରୁ ଏ ଘରର ଚିହ୍ନ ବି ରଖିବି ନାହିଁ । ମୁଁ ଆଗ ଗାଧୋଇ ଆସେ । ଛି, ଛି, ଏ ଘର କି ଅପରିଷ୍କାର !"

ସେ ବାହାରିଗଲା ପୋଖରୀ ଆଡ଼େ । ପଞ୍ଚାୟତକୁ ଦୁଇଜଣ ମେମ୍ବର ପଠେଇବା ସଂକ୍ରାନ୍ତୀୟ ମିଟିଂ ଶେଷ ହେବା ପରେ ଦେବ ଆଚାର୍ଯ୍ୟ ଘରକୁ ଆସି ଦେଖିଲେ, ସବୁ ଅଲଗା ଜଣାପଡ଼ୁଚି । ବଡ଼ ଛୁଆ ଦି'ଟା ଘରର ଗୋଟିଏ କୋଣରେ ବସିଚନ୍ତି ଜାକିଜୁକି ହୋଇ । ନିର୍ଯ୍ୟାତିତ କୋହରେ ବଣୁଚନ୍ତି ଜଡ଼ସଡ଼ । ସବୁ ଶୁଣି ସାରିବା ପରେ ମନକୁମନ କହିଲେ—ଆସୁ ସେ ବଦମାସ୍ ମାଇକିନା । ଅଯଥାରେ ଏ ଘରକୁ ନରକ କରିଦେଲାଣି । ମୁକାବିଲାଟେ ଦରକାର । ଅବେଳରେ କାହିଁକି ଯାଇଚି ଗାଧୋଇବାକୁ ?

ଏତେ କଥା ରୂହ୍‌ସ୍ୟ ଶୁଣିବା ପାଇଁ ରାଧାକାନ୍ତର କେବେ ବି ଧୈର୍ଯ୍ୟ ନ ଥିଲା । ସେ ଦେଖୁଥିଲା, ତା' ଗାଁର ଲୋକମାନେ କିଛି ଗୋଟାଏ ଗୁରୁତର କଥା ଆଲୋଚନା କଲାଭଳି ନମ୍ର ସ୍ୱରରେ କ'ଣ ସବୁ କହୁଥିଲେ ଏବଂ ପରେ ପରେ ହତାଶ ଓ ଅସହାୟ ଦେଖା ଯାଉଥିଲେ । ସତେ ଯେପରି ସେମାନେ ଗୋଟାଏ ଭୟଙ୍କର ଓ ଅସମାଧିତ ସଙ୍କଟ ଦେଖୁଥିଲେ । ସେମାନଙ୍କ ଆଗରେ ଏବଂ ତାହାର ମୁକାବିଲା କରିବାକୁ ସକ୍ଷମ ହେଉ ନ ଥିବାରୁ ପଛଘୁଞ୍ଚା ଦେଉଥିଲେ । ଗାଁରେ ବେଶ୍ କିଛି ଦିନ ରହିବା ପରେ ସଙ୍କଟଟା କ'ଣ, ତାହା ସେ ଜାଣିପାରିଥିଲା । ଆଶ୍ଚର୍ଯ୍ୟ ହେଉଥିଲା ଯେ, ତାହାକୁ ଗାଁର ଲୋକମାନେ ଗୋଟାଏ ସଙ୍କଟ ବୋଲି ଭାବୁଥିଲେ । ତାକୁ କେବଳ ନିର୍ଦ୍ଦେଶ ଦେବା-ମାତ୍ରେ ସେ ଗୋଟାଏ ଘଣ୍ଟାରେ ସାବାଡ଼୍ କରି ଦିଅନ୍ତା ସେହି ସଙ୍କଟକୁ ।

—"ତୁ ଯେତେ ସହଜ ବୋଲି କଥାଟା ଭାବୁଚୁ, ତାହା ପ୍ରକୃତରେ ସେତେ ସହଜ ନୁହେଁ ।" ନିମାଇଁ କହିଲା ।

ଗୋବିନ୍ଦର ନୂଆ ତିଆରି ଘର ବାରନ୍ଦାରେ ନିମାଇଁ ବସିଥିଲା । ମୋଟରସାଇକେଲ ଚଳେଇବାରେ ତାକୁ ସାହାଯ୍ୟ କରୁଥିବା ରାଧାକାନ୍ତ ମଧ୍ୟ ବସିଥିଲା ତା' ପାଖରେ । ଅନନ୍ତ ଯେମିତି ଦେବ ଆଚାର୍ଯ୍ୟଙ୍କର ସହକାରୀ ଭାବରେ କାମ କରୁଥିଲା, ରାଧାକାନ୍ତ ମଧ୍ୟ ପରିବର୍ତ୍ତିତ ଜୀବନ-ଧାରାରେ ସେଇଭଳି ନିମାଇଁର ଥିଲା ସହଯୋଗୀ । ରାଧାକାନ୍ତ ନିଜେ ମଧ୍ୟ ଏଭଳି ତୁଳନାକୁ ଯଥାର୍ଥ ବୋଲି ମନେ କରୁଥିଲା । ଆଦୌ କ୍ଷୁବ୍ଧ ହେଉ ନ ଥିଲା ସେ ନିମାଇଁ ସହିତ ଏଣେତେଣେ ବୁଲିବା ପାଇଁ । ଅସ୍ଥିରତା ଓ ଧୈର୍ଯ୍ୟହୀନତା ଥିଲା ତା' ଚରିତ୍ରର ଅନ୍ୟ ଏକ ଦିଗ । ତା' ଭିତରେ ରହିଥିବା ଜୀବନର ଶକ୍ତି ପ୍ରକାଶିତ ହେଉଥିଲା ତା' ଗତିଶୀଳତାରେ ।

—"କ'ଣ କହିଲୁ ?" ଟିକିଏ ଉତ୍ତ୍ୟକ୍ତ ହୋଇ ପଡ଼ିଲା ରାଧାକାନ୍ତ । ତା ପାରିବାପଣିଆକୁ ସତେ ଯେପରି ନିମାଇଁର ମନ୍ତବ୍ୟ ଟିକ୍‌କରି ଦେଲା । "ସହଜ ନୁହେଁ ? ମୋତେ ଛାଡ଼ିଦିଅ, ସବୁ କଥା ବୁଝିବା ପାଇଁ । ଦେଖ, ମୁଁ କ'ଣ କରୁଚି ।"

ନମାଇଁ କିଛି କହିଲା ନାଇଁ ଯା'ପରେ । ଗୋବିନ୍ଦ ଅନେକବେଳୁ ବସିଥିଲା ଚୁପ୍ ହୋଇ । ତା ଘର କୋରକ ହେବାପାଇଁ ଯାଉଛି ବୋଲି ଶୁଣିବା ପରଠାରୁ ସେ ବିଚଳିତ ହୋଇ ପଡ଼ିଥିଲା । କ୍ରମଶଃ ତା ଭିତରେ ଗୋଟାଏ ପ୍ରଚଣ୍ଡ କ୍ରୋଧ ଆତ୍ମପ୍ରକାଶ କରିବା ପାଇଁ ଭିଡ଼ମୋଡ଼ି ହେଉଥିଲା । ସେ ଚାହୁଁଥିଲା, ନମାଇଁ ଓ ରାଧାକାନ୍ତ ତା ଘର ବାରନ୍ଦାରୁ ଉଠିଗଲେ ସେ ଥଣ୍ଡା ମେଜାଜ୍‌ରେ ନିଜର କର୍ମପନ୍ଥା ନିର୍ଦ୍ଧାରଣ କରିବ ।

—''ତୁ କ'ଣ କରିପାରିବୁ ବୋଲି ଭାବୁଚୁ ?'' ନମାଇଁ ସ୍ୱରରେ ଚ୍ୟାଲେଞ୍ଜ ଅପେକ୍ଷା ଅନୁସନ୍ଧିତ୍ସା ଥିଲା ବେଶୀ । ''ଗୋଟାଏ ଅମଣିଷ ଏମିତି ଅନ୍ୟାୟ କରିଚାଲିଚି, ତାକୁ ସଂଶୋଧନ କରିବୁ କିପରି ?''

ବିନା ଦ୍ୱିଧାରେ କହିଲା ରାଧାକାନ୍ତ—''ତୁମେ ସବୁ ମାଇଚିଆ ବୋଲି ଏଭଳି କଥା କହୁଚ । ମୁଁ ମିଷ୍ଟର ସିଂଙ୍କର ଡ୍ରାଇଭର । ଏସବୁ ବ୍ୟାପାରର ସମାଧାନ କିପରି କରାଯାଏ, ମୋତେ ଜଣା ଅଛି । ଗୋଟେ ଇଞ୍ଜିନିୟର ମିଷ୍ଟର ସିଂଙ୍କୁ ବଡ଼ ହଇରାଣ କରୁଥିଲା । ଇଞ୍ଜିନିୟରମାନେ ସ୍କୁଟର ଚଢ଼ିବାର ତୁମେ ଦେଖିଛ ? ଚାକିରି କରିବାର କେଇଟା ବର୍ଷ ପରେ ସେମାନେ କାର୍ କିଣନ୍ତି । କିନ୍ତୁ ଏଇ ଇଞ୍ଜିନିୟରଟା ଥିଲା ନିହାତି ଟାଣୁଆ ପ୍ରକୃତିର । କାମ ଯଦି ଠିକ୍ ହୋଇ ନ ଥିବ, ତେବେ କାହାରି କଥା ଶୁଣିବ ନାଇଁ, ସେ ଶଳା ମିଷ୍ଟର ସିଂ ତା ଟ୍ରାନ୍ସଫର ପାଇଁ ଚେଷ୍ଟା କଲେ । ଚଞ୍ଚଳ ନ ହେବାରୁ ଦିନେ ସେ ଇଞ୍ଜିନିୟର ଓ ତା' ସ୍ତ୍ରୀକୁ ନେଇ ଆସିଲେ ନିଜ ଘରକୁ ମିଛ କଥା କହି । ମିଷ୍ଟର ସିଂ କହିଲେ, ଶଳା କାମ କରିବୁ, ନା ତୋ ସ୍ତ୍ରୀକୁ ତୋ ଆଗରେ ଏଇଠି ଲଙ୍ଗଳା କରାଯିବ ?''

ଗୋବିନ୍ଦର ଅନ୍ୟମନସ୍କତା ଅପସରି ଯାଇଥିଲା ଅନେକ ବେଳୁ । ନମାଇଁ ସହିତ ସେ ଶୁଣୁଥିଲା ରାଧାକାନ୍ତର କଥା । ଗୋଟାଏ ଲୋମ-ହର୍ଷଣକାରୀ କାହାଣୀ ଭଳି ଲାଗୁଥିଲା । ସେମାନଙ୍କର ବୋଧହୁଏ ବିଶ୍ୱାସ ହେଉ ନ ଥିଲା ଯେ, ସଭ୍ୟ ଲୋକମାନଙ୍କ ମଧ୍ୟରେ ଏଭଳି ଘଟଣା ଘଟେ । ରାଧାକାନ୍ତ ବଡ଼ ଲଗାଇଲା । ଗାଁକୁ ଆସିବାର ମାତ୍ର ଦୁଇଦିନ ପରେ ଗୁପ୍ତ କଥା ହେଉଚି ବୋଲି କହି ସିଗାରେଟ୍ ଟାଣିବା ବନ୍ଦକରି ସାରିଥିଲା ସେ । ତା'ଛଡ଼ା ଯେଉଁ ସିଗାରେଟ ସେ ଟାଣେ, ତାହା ପାଖରେ କେଉଁଠି ମିଳୁନାଇଁ ବୋଲି ସେ ନିଜ ତରଫରୁ କୈଫିୟତ ଦେଇଥିଲା ।

"ତା'ପରେ ହେଲା କ'ଣ ?" ଗୋବିନ୍ଦ ଉତ୍ସୁକତାର ସହିତ ପଚାରିଲା ।

ବଡ଼ ଫୋପାଡ଼ ଦେଇ କହିଲା ରାଧାକାନ୍ତ—"ହେବ ଆଉ କ'ଣ ? ମିଷ୍ଟର ସିଂର କାମ ହୋଇଗଲା ।"

ଦୀର୍ଘଶ୍ୱାସ ତ୍ୟାଗ କରି ନିମାଇଁ କହିଲା—"ଏସବୁରେ ମୁଁ ଆଉ ଜମା ମୁଣ୍ଡ ଖେଳେଇବି ନାହିଁ । ଗାଁର ଅବସ୍ଥା ତେଣିକି ଯାହା ପାରି ତାହା ହେଉ, ମୋ ଧନ୍ଦା ଭଲ ତ ମୁଁ ଭଲ । କିଏ କ'ଣ କଲା, ସେଥିରେ ମୋର ଯାଏ ଆସେ କେତେ ?"

—"ଗୋଟେ କାମ କରି ପାରିବ ?" ଚମତ୍କାର ଉପାୟଟେ ବତାଇବା ପାଇଁ ରାଧାକାନ୍ତ ଯାଉଥିଲା ।

—"କ'ଣ୍ ?"

—"ସେ ଶଳାର ହାତଟେ କି ଗୋଡ଼ଟେ ଭାଙ୍ଗି ଦେଉନ ?" ସମସ୍ୟାର ସମାଧାନ ପାଇଁ ତାହା ହିଁ ଥିଲା ସବୁଠାରୁ ସହଜ ବାଟ । ସହଜ ସ୍ୱରରେ କହିଲା ରାଧାକାନ୍ତ ।

—"କ'ଣ କହିଲୁ ?"

—"ନ ହେଲେ ଆହୁରି ଉପାୟ ଅଛି । ତାକୁ କୁହ, ସେ ଯଦି ଭଲ ମଣିଷ ନ ହୁଏ, ତେବେ ତା' ବଡ଼ିଲା ଝିଅକୁ ହରଣଚାଳ କରାଯିବ, ନ ହେଲେ ଧର୍ଷଣ କରାଯିବ ।"

ନିତାନ୍ତ ଶାନ୍ତ ଓ ସ୍ୱାଭାବିକ ଢଙ୍ଗରେ ଏଭଳି କଥା କହୁଥିବା ରାଧାକାନ୍ତ ପୈଶାଚିକ ଜଣାପଡ଼ିଲା ନିମାଇଁ ଦୃଷ୍ଟିରେ । ସେ ବାସ୍ତବିକ ଗୋଟାଏ ପଶୁ ଭଳି ଦେଖାଗଲା ଏବଂ ନିମାଇଁ ମନେ ମନେ ଭାବିଲା ଯେ, ବୋଧହୁଏ ରାଧାକାନ୍ତ ସେ ଗାଁର ଲୋକ ନୁହଁ । ସେ ଗୋଟାଏ ଜଙ୍ଗଲି

ଭିତରୁ ଆସିଥିଲା ଜଙ୍ଗଲର ପାଶବିକ ସଂସ୍କୃତି ନେଇ । ସେ ସଂସ୍କୃତି ଥିଲା ଭୟାବହ ଓ ଗାଁ ପରିପ୍ରେକ୍ଷୀରେ ସମ୍ପୂର୍ଣ୍ଣ ପରିପନ୍ଥୀ ।

—"ଗୋଟେ ମଣିଷ ଭଳି କଥାବାର୍ତ୍ତା କର ।" ଘୃଣା ଓ ବିରକ୍ତିରେ ନିମାଇଁ ଉପଦେଶ ଦେଲା ।

ଆଦୌ କ୍ଷୁବ୍ଧ ହେଲା ନାହିଁ ରାଧାକାନ୍ତ—"ମୋ କଥା ତୁମକୁ ଖରାପ ଲାଗୁଛି । ହେନେ ଦେଖିବ, ସେ ତୁମ୍ଭମାନଙ୍କ ପ୍ରତି ଏଇଭଳି ପନ୍ଥା ପ୍ରୟୋଗ କରିବ ।" ଭବିଷ୍ୟତବାଣୀ ଶୁଣେଇଲା ରାଧାକାନ୍ତ ।

ଅସମ୍ଭବ ନୁହେଁ । ଗାଁ ଚାରିପାଖରେ ଆଉ ଜଙ୍ଗଲ ନ ଥିଲା । ଜଙ୍ଗଲର ପଶୁମାନେ ଉଭେଇ ଯାଇଥିଲେ କେଉଁଆଡ଼େ । ଅଥଚ ଜଙ୍ଗଲରେ ଥିବା ପଶୁମାନଙ୍କର ନିୟମ ଅନୁପ୍ରବେଶ କରିସାରିଥିଲା ଗାଁ ଭିତରକୁ । ଅନ୍ୟକୁ ମାରି, ନ ହେଲେ ତୁମକୁ କେହି ମାରିବ । ଏଇଭଳି ଅସ୍ଥିର କାର୍ଯ୍ୟକ୍ରମ ଭୂରିବନ୍ଧିତ ହେଉଥିଲା ସବୁଆଡ଼େ । ତୁମେ ସବଳ ଓ ସକ୍ଷମ ବୋଲି ପ୍ରମାଣ କରିବାକୁ ଯଦି ଚାହୁଁଛ, ତେବେ ଦୁର୍ବଳ ଓ ଅକ୍ଷମକୁ ଆଗ ସାଫ୍ କର । ତୁମର କିଛି ହେବ ନାହିଁ । କେହି କହିବେ ନାହିଁ ତୁମେ ଅପରାଧୀ ବୋଲି । କିନ୍ତୁ ସାବଧାନ, ନିଜକୁ ସବୁବେଳେ ରକ୍ଷା କରିବା ପାଇଁ ସତର୍କ ରୁହ । ନ ହେଲେ ତୁମଠାରୁ ଆହୁରି ସବଳ ଓ ସକ୍ଷମ ଶକ୍ତି ତୁମକୁ ଗ୍ରାସ କରିଦେବ ।

ଏଭଳି ନିୟମ କେବେ ବି ଶୁଣାଯାଇ ନ ଥିଲା ଆମ ଗାଁରେ । ଏଭଳି ଅନୈତିକ ଧର୍ମଛଡ଼ା କାମ କେହି ଚିନ୍ତା କରି ନ ଥିଲେ । ଏ ଦୃଷ୍ଟିରୁ ରାଧାକାନ୍ତ ଥିଲା ଆମ ଗାଁରେ ଗୋଟାଏ ନୂତନତାର ପ୍ରତୀକ । ସେ ସୂଚେଇ ଦେଉଥିଲା ଯେ, କୁମରକୁ ଅକ୍ତିଆର କରିବା ପାଇଁ ତା' ଭଳି ଗୋଟାଏ ଦୁଇଟା ଲୋକ ହିଁ ଯଥେଷ୍ଟ । ଅନ୍ୟ କୌଣସି ଉପାୟରେ ଅମଣିଷକୁ ଅକ୍ତିଆର କରାଯାଇ ପାରେନା ।

ଅନେକବେଳୁ ରାଧାକାନ୍ତ ଓ ନିମାଇଁ ଚାଲି ଯାଇଥିଲେ । ଗୋବିନ୍ଦ ବସିଥିଲା ଏବଂ କିଛି ଭାବୁ ନ ଥିଲା । ସବୁ ଫାଙ୍କା ଓ ଶୂନ୍ୟ ହୋଇ ପଡ଼ିଥିଲା ତା' ଚେତନାରେ । ଅଥଚ ତା' ଘର କୋରକ ହେବ, ଜମିବାଡ଼ି ନିଲାମ ହେବ ବୋଲି ଶୁଣିବା ପରେ, ସେ ଅସ୍ଥିର ଅଧୈର୍ଯ୍ୟ ହୋଇ ପଡ଼ିଥିଲା କିଛି ସମୟ ପୂର୍ବେ ।

ଗୋବିନ୍ଦ ଠିଆହେଲା । ଖୁବ୍ ଉଦାସ ଓ ହତୋତ୍ସାହ ଲାଗୁଥିଲା ତାକୁ । ଏତେ ପରିଶ୍ରମ କରି କିଛି ବାଟ ଆଗେଇଲାବେଳେ ଗୋଟାଏ ଦୃଢ଼ ଶକ୍ତି ତାକୁ ଟାଣି ଆଣୁଚି ତଳକୁ । ପୁଣି ସଜାଡ଼ି ହୋଇ ଆଉ କିଛି କରିବା ବେଳକୁ ବିପର୍ଯ୍ୟସ୍ତ । ସେ କ୍ଳାନ୍ତ ଓ ବିରକ୍ତ ହୋଇ ପଡ଼ିଲାଣି ।

ଘରେ ସୀମାବଦ୍ଧ ହୋଇ ରହିବାର ଗୋଟିଏ ସନ୍ତୋଷଜନକ ପରିଣାମ ହେଉଚି ଏହି ଯେ, ପରିବାରର ଅର୍ଥନୈତିକ ଅବସ୍ଥାର ଯଥେଷ୍ଟ ଉନ୍ନତି କରି ପାରିଚି ସେ । ଗାଁର ସେ ହେଉଚି ପ୍ରଥମ ଲୋକ ଲୋନ୍ ଆଣି ବାଡ଼ିପଟେ ପ୍ରକାଣ୍ଡ କୂଅ ଖୋଳିବାରେ । ପାଣିର ଅଭାବ ଗାଁ ଲୋକଙ୍କୁ ବର୍ଷର ଅର୍ଦ୍ଧାଧିକ ଦିନ ଚୁପଚାପ ବସିବାକୁ ବାଧ୍ୟ କରେ । ସେମାନେ ବସି ରହନ୍ତି, ଭାଗ୍ୟକୁ ନିନ୍ଦା କରନ୍ତି, ପାଣିର ସୁବିଧା ହେଲେ କିଛି କରିବେ ବୋଲି ଘୋଷଣା କରନ୍ତି, ଅଥଚ ନିଜ ଚେଷ୍ଟାରେ ଅଭାବ ଦୂର କରିବା ପାଇଁ ପଛୁନ୍ତି ସବୁବେଳେ ।

କୂଅ ଖୋଳିବା ବାବଦରେ ସେ ଯେତିକି ଲୋନ୍ ଆଣିଥିଲା, ତା'ର ଅଧା ନେଇ ଯାଇଥିଲା କୁମର ଧାର୍‌ସୂତ୍ରରେ । ତା' ପଛରେ ବାରମ୍ବାର ଗୋଡ଼େଇବା ଯୋଗୁଁ ଟଙ୍କା ସେ ପରିଶୋଧ କରିଥିଲା ଏବଂ ତା'ର ବିଶ୍ବାସ ଅର୍ଜନ କରିପାରିଥିଲା । ଏବଂ ବାଡ଼ିରେ ପାଣି ସୁବିଧା ହେବା ପରେ ନାଟକୀୟ ପରିବର୍ତ୍ତନ ଘଟିଲା ଘର ଅବସ୍ଥାର । ବଦନାମ ଅର୍ଜନ କରିଥିବାରୁ ସେ କାହାରି ସହିତ ପ୍ରାୟ ସମ୍ପର୍କ ରଖୁ ନ ଥିଲା, କିମ୍ବା ଘରୁ ବାହାରକୁ ବାହାରୁ ନ ଥିଲା । କାହା ସହିତ ଦେଖା ହୋଇଗଲେ ତା' ପାଖରୁ ଖସି ଯିବାପାଇଁ ବ୍ୟାକୁଳ ହେଉଥିଲା ସବୁବେଳେ ।

ଏଥିପାଇଁ ସେ ବାଡ଼ିର ଯତ୍ନ ନେଉଥିଲା ଏବଂ ଦୁଇ-ତିନି ବର୍ଷ ପରେ ପୁରୁଣା ଘର ଭାଙ୍ଗି ନୂଆ ଖଞ୍ଜା ତିଆରି କରିଥିଲା ଆଧୁନିକ ଢଙ୍ଗରେ । ହାଡ଼ଆ ମଧ୍ୟ ରୋଜଗାର କରୁଥିଲା ଏବଂ ବଂଶର ଜ୍ୟୋତିଷ ବିଦ୍ୟା ଶିଖି ନେଇଥିଲା ବାପାଙ୍କ ଠାରୁ ।

ଚତୁର୍ଥ ବର୍ଷରେ ସେ ଗୋଟାଏ ଡିଜେଲ୍ ପମ୍ପସେଟ୍ କିଣିବାକୁ ବାଧ୍ୟ ହୋଇଥିଲା ବାଡ଼ି କ୍ରମଶଃ ପରିବର୍ଦ୍ଧିତ ଓ ସବୁଜିମାରେ ସଂପ୍ରସାରିତ

ହେଉଥିବାରୁ । ଧାନ ବାଦ୍ ଦେଲେ ଅନ୍ୟ ସବୁ ପ୍ରକାରର ଚାଷ ହେଉଥିଲା ସେଠାରେ ଏବଂ ପ୍ରଚୁର ଲାଭବାନ ହେଉଥିଲା ।

ତା ବାଡ଼ିକୁ ଲାଗି ସୁରେନ୍ଦ୍ର ବୋଲି ଜଣେ ହରିଜନର କିଛି ଚାଷଜମି ଥିଲା । ଘରପୋଡ଼ି, ନିଜର ବାହାଘର ଇତ୍ୟାଦି ସକାଶେ ସେ ଗୋବିନ୍ଦ ପାଖରୁ ସେଇ ଚାଷ ଜମିରୁ କିଛି ବନ୍ଧକ ଦେଇ ଆଣିଥିଲା କିଛି ଟଙ୍କା । ଗୋବିନ୍ଦ ଭୂବନ୍ଧକ ବ୍ୟାଙ୍କ୍ ରୁ ଟଙ୍କା ଲୋନ୍ କରି ଦୁଇଟା ଜର୍ସିଗାଈ କିଣିଥିଲା । ସ୍ତ୍ରୀ ସିଲେଇ କାମ କିଛି ଜାଣିଥିବାରୁ ଗୋଟିଏ ସିଲେଇ ମେସିନ୍ ମଧ୍ୟ କିଣିଥିଲା ।

କିନ୍ତୁ ଏଇ ଲୋନ୍ ରୁ ସେ କିଛି ଟଙ୍କା ପୁଣି ଧାର ସୂତ୍ରରେ ଦେଇଥିଲା କୁମରକୁ ଏବଂ ଏହା ପରଠାରୁ ସେ ଗୋଟାକ ପରେ ଗୋଟାଏ ବିପଦର ସମ୍ମୁଖୀନ ହୋଇ ଆସୁଛି । ଗୋବିନ୍ଦ ତଥାପି ଆଶା କରୁଥିଲା, କୁମର ପାଖରୁ ଧାର ଟଙ୍କା ଫେରି ପାଇବା ପାଇଁ । ଲୋନ୍ ଜଞ୍ଜାଳରୁ ମୁକ୍ତ ହେବା ପାଇଁ ଚାହୁଁଥିଲା ସେ ।

ଦିନେ ସୁରେନ୍ଦ୍ର ତା ପାଖକୁ ଆସିଲା । କହିଲା—"ଏ ବର୍ଷ ମୋ ଜମି ମୁଁ ଚାଷ କରିବି । ଆଗରୁ ଜଣେଇ ଦେବା କଥା । ଜଣେଇ ଦେଲି ।"

ଗୋବିନ୍ଦର କୌଣସି ଆପତ୍ତି ନ ଥିଲା । କହିଲା—"ତୁ ନେଇ-ଥିବା ଟଙ୍କା କେଉଁଦିନ ଦେବୁ ?"

—"କି ଟଙ୍କା ?" ସୁରେନ୍ଦ୍ର ଆଶ୍ଚର୍ଯ୍ୟ ହେବା ଭଳି ଅଭିନୟ କଲା ।

ଗୋବିନ୍ଦ ଭାବିଲା, ଲୋକଟା ବୋଧହୁଏ ମଜା କରୁଛି ତା ସହିତ । ପଚାରିଲା—"ତୋର କ'ଣ ମନେ ନାହିଁ ? ଦେବୁ କେଉଁଦିନ ?"

ସୁରେନ୍ଦ୍ରର ମୁହଁ କଠୋର ଓ ପ୍ରତିଜ୍ଞାବଦ୍ଧ ହୋଇ ଯାଇଥିଲା । କହିଲା—"ଏତେ ବର୍ଷ ସେଇ ଜମିରେ ଚାଷ କଲ । ତମ ଟଙ୍କା ପାଇ ଯାଇଥିବ କେଉଁ ଦିନୁ । ଆଉ ବେଶୀ ଦିନ ମୋ ଜମି ତୁମେ ରଖିପାରିବ ନାହିଁ ।"

ଗୋବିନ୍ଦ ଏଭଳି ଜବରଦସ୍ତ ଅସାଧୁତା ଶୁଣି ନ ଥିଲା ଗାଁରେ । ସେ ଆଉ କିଛି କହିବା ପୂର୍ବରୁ ସୁରେନ୍ଦ୍ର ସତର୍କ କରିଦେଲା ଗୋବିନ୍ଦକୁ

—"ମୋ ଜମି ମୁଁ ଚାଷ କରିବି । କିଛି ଗଣ୍ଡଗୋଳ କଲେ ସିଧା ଯିବି ମାଜିଷ୍ଟ୍ରେଟ ପାଖକୁ । ଜଣେ ହରିଜନର ଜମି ଜବରଦଖଲ କରିଚ ବୋଲି ଦରଖାସ୍ତ ଦେବି । ମୁଁ ଜାଣେ, ଆଉ ଥରେ ଜେଲ୍ ଯିବା ପାଇଁ ତୁମେ ରାଜି ନ ଥିବ ।"

ଗୋବିନ୍ଦ ବାଧ ହୋଇ ଗାଁ ଲୋକଙ୍କ ଆଗରେ କହିଥିଲା ଏ କଥା । ସମ୍ପୂର୍ଣ୍ଣ ଅସହାୟ ହୋଇପଡ଼ିଲା, ଯେତେବେଳେ ଦେଖିଲା ଯେ, ସୁରେନ୍ଦ୍ର ଆସିବା ପାଇଁ ରେକ୍ ଠୋକ୍ ମନାକଲା ଗାଁର ନ୍ୟାୟନିଶାପ କ'ଣ ରାୟ ଦେଉଚି ଶୁଣିବା ପାଇଁ । ଟଙ୍କା ଦେବା ବେଳେ କୌଣସି କାଗଜପତ୍ର ହୋଇ ନ ଥିଲା । ଆମ ଗାଁରେ ସେସବୁର ଆବଶ୍ୟକତା ନ ଥିଲା ଆଦୌ । ଏମିତି ବିଶ୍ୱାସ ଓ ସାଧୁତା ଉପରେ ଭରସା କରି ପାରସ୍ପରିକ ଅଭାବ-ଅସୁବିଧା ଦୂର ହେଉଥିଲା ।

ଗୋବିନ୍ଦ ଜାଣିଥିଲା, ସୁରେନ୍ଦ୍ର ରାଜମାନ୍ତି କରିବା ଆରମ୍ଭ କରିଥିଲା କୁମରର ପ୍ରରୋଚନାରେ । କୁମର ସବୁ ଶୁଣିସାରି ଟିକିଏ ହସିଲା ଏବଂ କହିଲା—"ଏଥିରେ ମୁଁ ତୋତେ କିପରି ସାହାଯ୍ୟ କରିପାରିବି ? ସରକାର ବର୍ତ୍ତମାନ ସୁରେନ୍ଦ୍ର ଭଳି ଲୋକଙ୍କର ଉନ୍ନତି ପାଇଁ ସବୁବେଳେ ଚେଷ୍ଟା କରୁଚନ୍ତି । ତୁ ତା ଜମି ଦଖଲ କରିଚୁ ବୋଲି ସରକାର ଯଦି ଜାଣନ୍ତି, ତେବେ ତୋ ଅବସ୍ଥା ଶୋଚନୀୟ ହୋଇ ପଡ଼ିବ ।"

କୁମରର ପ୍ରରୋଚନାରେ ସୁରେନ୍ଦ୍ର ନିଜ ଅଧିକାର ସମ୍ପର୍କରେ ସଚେତନ ହୋଇଥିଲା ଓ ନିଜକୁ ଜାହିର କରିଥିଲା ବୋଲି ବୁଝିବାରେ ଗୋବିନ୍ଦର ଅସୁବିଧା ହୋଇ ନ ଥିଲା । କୁମରଠାରୁ ସେ ଅନ୍ତତଃ କୃତଜ୍ଞତା ପାଇବାକୁ ଚାହୁଁଥିଲା ।

—"କ'ଣ ତେବେ କରାଯାଇ ପାରିବ ?" ଗୋବିନ୍ଦ ପଚାରିଥିଲା ନୈରାଶ୍ୟର ସହିତ ।

—"କିଛି ନାହିଁ । ତା' ଜମି ଫେରାଇ ଦେବାକୁ ପଡ଼ିବ ।" କୁମର ପରାମର୍ଶ ଦେଲା । କିଛି ସମୟ ପରେ କହିଲା—"ବର୍ତ୍ତମାନ ତୁ ମୋ ସାହାଯ୍ୟ ପାଇଁ ଆସିଚୁ ଯେ, ମୁଁ ତୋ ପାଇଁ କ'ଣ କରିପାରିବି ? ତୁ ତ ମୋତେ ସାହାଯ୍ୟ କରିବାକୁ ସବୁବେଳେ କୁଣ୍ଠିତ !"

—"କ'ଣ କହିଲୁ ? ମୁଁ ତୋତେ ଜମା ସାହାଯ୍ୟ କରିନାହିଁ ?" ଗୋବିନ୍ଦ ବିସ୍ମିତ ହୋଇ ପଚାରିଲା ।

—"ଯା'କୁ କ'ଣ ସାହାଯ୍ୟ କୁହାଯାଏ ? କେଇଟା ଟଙ୍କା ଧାର ଦେଇଚୁ ବୋଲି ସପ୍ତାହରେ ହଜାରେ ଥର ମୋ ପାଖକୁ ଆସି ମୋତେ ହଇରାଣ କରୁଚୁ ।" ସ୍ପଷ୍ଟଭାବରେ ପ୍ରକାଶ କରିଥିଲା କୁମର ।

ଗୋବିନ୍ଦ ଫେରି ଆସିଥିଲା ତା' ପାଖରୁ । ସୁରେନ୍ଦ୍ରର ଜମି ଫେରାଇ ଦେଇଥିଲା । କୁମର ତା' ଟଙ୍କା ଫେରାଇବ ବୋଲି ସମସ୍ତ ଆଶା ଛାଡ଼ିବାକୁ ହୋଇଥିଲା । ସେ ବୁଝିପାରୁ ନ ଥିଲା ଗାଁର ମୂଲ୍ୟବୋଧ ଓ ନୈତିକତାର ଏଭଳି ଶୋଚନୀୟ ଅଧଃପତନ ହେବାର କାରଣ କ'ଣ ହୋଇପାରେ । ଲୋକଙ୍କର ଅଭାବ ନୁହେଁ, କାରଣ ଅଭାବ ଥିଲା ଆଗରୁ । ଘଟଣାଟା ଖୁବ୍ ଗୁରୁତ୍ୱପୂର୍ଣ୍ଣ ନ ଥିଲା, କିନ୍ତୁ ଯେଉଁ ବୃହତ୍ତର ଦୂଷିତ ବାତାବରଣ ଗାଁକୁ ସଂକ୍ରମିତ କରୁଥିଲା, ଏହା ଥିଲା ତାହାର ଏକ ପ୍ରତୀକ ।

ବାରି ଦରଜାରେ କବାଟ ବାଡ଼େଇବା ମାତ୍ରେ ଭିତରୁ କେହି ଜଣେ ପଚାରିଲା—"କିଏ ?"

ଗୋବିନ୍ଦ ପଚାରିଲା—"କୁମର ଅଛି କି ?" ଏବଂ ସେ ଯେଉଁ ଉତ୍ତର ଆଶା କରିଥିଲା, ତାହା ହିଁ ମିଳିଲା—"ନାହାନ୍ତି । କେତେବେଳେ ଫେରିବେ କୁହାଯାଇ ନାହାନ୍ତି ।"

—"ଶୁଣ୍ ।" ଗୋବିନ୍ଦ ଦ୍ୱାର ଏପଟେ ଥାଇ କହିଲା । "ତାଙ୍କ ପାର୍ଟିର ସେକ୍ରେଟାରୀ ଓ ଆଉ ଦି'ଜଣ ଜରୁରୀ କାମରେ ଆସିଥିଲେ । କୁମର ତ ନାହିଁ । ଏମାନେ ଫେରି ଯାଉଚନ୍ତି । ସେ ଆସିଲେ ଏ ଖବରଟା ଦେଇଦେବ ।" ଗୋବିନ୍ଦ ଜାଣିଥିଲା, ସାପକୁ ଗାତ ଭିତରୁ ବାହାର କରିବା ପାଇଁ ଏଇଭଳି ମିଛର ତମ୍ବୁରୁ ବଜେଇବା ଓ ମନ୍ତ୍ର ଉଚ୍ଚାରଣ କରିବା ଦରକାର ।

ସେ ଅପେକ୍ଷା କଲା ଏବଂ କିଛି ସମୟ ପରେ ଦ୍ୱାର କବାଟ ଖୋଲି କୁମର ପଚାରିଲା—"କୁଆଡ଼େ ଗଲେ ସେମାନେ ?"

—"କେଉଁମାନେ ?" ଗୋବିନ୍ଦ ତିରସ୍କାର ଓ ବିଦ୍ରୂପର ସହିତ ପଚାରିଲା । "ତୋତେ ଘର ଭିତରୁ ବାହାର କରିବା ପାଇଁ ଏତିକି କହିବାକୁ ପଡ଼ିଲା ।" ଗୋବିନ୍ଦ କୈଫିୟତ ଦେଲା ଅନେକ ଘୃଣାର ସହିତ ।

ପଚାରିଲା—"ମୋ ଘର କୋରକ ହେବ । ଜମି ନିଲାମ ହେବ । ମୋ ଟଙ୍କା କେବେ ଫେରାଇବୁ ?"

—"କି ଟଙ୍କା ? ମୁଁ କୌଣସି ଲୋକଠାରୁ ଟଙ୍କା ପଇସା କରଜ ଆଣିନାହିଁ ।" କୁମର ପୁଣି ପଶି ଯାଉଥିଲା ଘର ଭିତରକୁ ।

ଗୋବିନ୍ଦ ତା'ର ଗୋଟିଏ ହାତ ଧରି ପକାଇଲା । ସାଙ୍ଗରେ ଆଣିଥିବା ଗୋଟାଏ ଛୁରୀ ଦେଖାଇ କହିଲା—"ବୁଝିଲୁ ? ଜେଲ୍‌ରେ ତିନି ବର୍ଷ ରହି ଆସିଛି । ସେଠାକୁ ପୁଣି ଥରେ ଯିବାପାଇଁ ମୋର ଡର ନାହିଁ, କିନ୍ତୁ ତୋ ତଣ୍ଟି କାଟିଦେବି ଏଇଥିରେ । ମୁଁ ପୁଣି ଜେଲ ଯିବି ବୋଲି ଘରେ ସମସ୍ତଙ୍କୁ କହି ଦେଇଛି । ମନେରଖ, ଖାଲି ମୋ ସଂସାର ନୁହେଁ, ତୋ ସଂସାର ବି ଭାସିଯିବ ।"

କୁମର ଡରିଗଲା ଏଇଥିରେ । ଗୋବିନ୍ଦ ମୁହଁରୁ ପ୍ରକୃତରେ ବିଚ୍ଛୁରିତ ହେଉଥିଲା ଗୋଟାଏ ଦୃଢ଼ତା ଓ ସଙ୍କଳ୍ପ । ଝାପ୍‌ସା ଆଲୁଅରେ ସେ ଭୟାବହ ଜଣା ପଡୁଥିଲା । ଜଖମ ହୋଇଗଲା କୁମରର ସମସ୍ତ ଶ୍ଳାଘା ଓ ଅହଙ୍କାର । ଏଭଳି ଦୟନୀୟ ପରିସ୍ଥିତିରେ ସେ ଆଗରୁ ପଡ଼ି ନ ଥିଲା କେବେ । ସେ ସଚେତନ ହେଉଥିଲା, କେତେ ସହଜ ଓ ଅକ୍ଷମ ମଣିଷଟିଏ ସେ ସତରେ ? ମନ୍ତ୍ରୀମାନଙ୍କ ସହିତ ସବୁବେଳେ ଆଳାପ ଆଲୋଚନା ହେଉଛି, ତା' ଇଙ୍ଗିତରେ ସେ ବ୍ଲକ୍‌ର ଶାସନ ଚାଲିଛି ଇତ୍ୟାଦି କହି ଯେତେ ବାହାସ୍ଫୋଟ ମାରିଲେ ମଧ୍ୟ ସେ ତୁଚ୍ଛ ଓ ଦୟନୀୟ ହୋଇ ପଡ଼ୁଛି ନିଜ ଘର ପାଖରେ, ଜଣେ ମଣିଷର ଆଠ-ଦଶ ଇଞ୍ଚ ଦୈର୍ଘ୍ୟ-ବିଶିଷ୍ଟ ଗୋଟିଏ ଛୁରୀ ସାମନାରେ । ଗୋଟାଏ ଅପମାନ ଓ କ୍ରୋଧରେ ସେ ଅସ୍ଥିର ହୋଇ ପଡ଼ିଲେ ମଧ୍ୟ ନିଜକୁ ନିୟନ୍ତ୍ରଣ କଲା ଓ କହିଲା—"ମୁଁ ଜବାବ ଦେଉଛି, ତୋ ଘର କୋରକ ହେବ ନାହିଁ କି ଜମି ନିଲାମ ହେବ ନାହିଁ ।"

—"ଟଙ୍କା କେବେ ଦେବୁ ?" ପଚାରିଲା ଗୋବିନ୍ଦ ଜଣେ ଜଯ଼ୀଯ଼ୁକ୍ତ ସମ୍ରାଟ ଭଳି ।

—"ମୁଁ ଯ଼ିା ଭିତରେ ମନ୍ତ୍ରୀଙ୍କୁ ଦେଖା କରିବି । ସେ ମୋତେ ଡକେଇଚନ୍ତି । ତୋ ଟଙ୍କା ମୁଁ ବ୍ୟାଙ୍କ୍‌ରେ ଦେଇଦେବି । ରସିଦ ମୋଠୁ ନେବୁ ।" ପ୍ରତିଶ୍ରୁତି ଦେଲା କୁମର ।

—"ତୁ ଏମିତି ଅନେକ ଥର ଜବାବ ଦେଇଚୁ ।" ଅବିଶ୍ୱାସ ଥିଲା ଗୋବିନ୍ଦ ସ୍ୱରରେ । ଅଥଚ ସେ ଯଥେଷ୍ଟ ନରମ ହୋଇ ଯାଇଥିଲା ।

ତା' କାନ୍ଧରେ ହାତ ପକାଇ କୁମର ଆଗାମୀ ନିର୍ବାଚନ, ଦରବୃଦ୍ଧି ଓ ବେକାରି ସମସ୍ୟା ଉପରେ ଭାଷଣ ଦେବାକୁ ଯାଉଥିଲା । ଧୈର୍ଯ୍ୟଚ୍ୟୁତି ଘଟିଲା ଗୋବିନ୍ଦର । ପୁଣି ଥରେ କୁମର ପାଖରୁ ପ୍ରତିଶ୍ରୁତି ନେଇ ସେ ଫେରିଗଲା । ଘରଆଡ଼କୁ ଗଲାବେଳେ ପୁଣି କୁମର ଫନ୍ଦାନ୍ତରେ ସେ ସନ୍ଦିହାନ ହୋଇ ପଡ଼ୁଥିଲା ।

କୁମର ଆଉ ଘର ଭିତରକୁ ଗଲା ନାହିଁ । ଅନ୍ଧାର ହୋଇ-ଯାଇଥିଲା ସେତେବେଳେ । କାହା ପାଖକୁ ଯିବାପାଇଁ ସେଇଟା ହିଁ ଥିଲା ତା'ପାଇଁ ଉପଯୁକ୍ତ ସମଯ଼ । ସେ ହରିଜନ ସାହିକୁ ଗଲା ଏବଂ ମହେନ୍ଦ୍ରକୁ ପାଖକୁ ଡାକିଲା ।

ମହେନ୍ଦ୍ର ଗାଁ ଲୋକଙ୍କର ବିଦ୍ରୂପର ଶରବ୍ୟ ହେଉଥିଲା ସବୁ-ବେଳେ, କିନ୍ତୁ କୁମର ସହିତ ଅନେକ ସମଯ଼ରେ ଆଲୋଚନା କରୁଥିଲା । ପଞ୍ଚାଯ଼ତ ଅଫିସକୁ ଯିବାଆସିବା କରୁଥିଲା ଏବଂ କେତେକ ଇଂରାଜୀ ଶବ୍ଦ ବ୍ୟବହାର କରୁଥିଲା ତା' କଥାବାର୍ତ୍ତାରେ । ସବୁବେଳେ 'ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଏପରିକି ବିରୋଧୀ ଦଳ ନେତାଙ୍କ ନାମ ମଧ୍ୟ ଉଚ୍ଚାରଣ କରୁଥିଲା ଏବଂ ଆଗାମୀ ନିର୍ବାଚନରେ ତାଙ୍କ ଦଳର 'ସ୍ଥିତି ସମ୍ପର୍କରେ ତା'ର ନିଃସନ୍ଦେହ ଆସ୍ଥା ପ୍ରକାଶ କରୁଥିଲା ।

ମହେନ୍ଦ୍ର ପାଖକୁ ଆସିବା ମାତ୍ରେ କୁମର ନିର୍ଦ୍ଦେଶ ଦେଲା ସଦାଶିବକୁ ଡ଼ାକି ଦେବା ପାଇଁ । କୁମର ଗୁରିଆଡ଼କୁ ଗୁହିଁଲା ନିଶ୍ଚିନ୍ତ ହେବା ପାଇଁ । ସଦାଶିବ ପାଖରେ ପହଞ୍ଚିଗଲା ।

—"ତୋ ପାଖକୁ ମୁଁ ବିଶେଷ ଥର ପାଇଁ ଆସିଲି ।" କୁମର ବିନା ଉପକ୍ରମଣିକାରେ ଆରମ୍ଭ କଲା । "ପୁଣି ଥରେ କହୁଚି, ପଞ୍ଚାୟତ ମେମ୍ବର ହେବାପାଇଁ ତୁ ମନା କର ।"

—"କାହିଁକି ?" ସଦାଶିବର ସ୍ୱର ନିର୍ଭୀକ ଥିଲା । "ଆମ ସାହିର ମୁଁ ମେମ୍ବର ବୋଲି ଗାଁ ଲୋକେ ମୋତେ ବାଛୁଚନ୍ତି । ମୁଁ ମନାକୁ ହୋଇନାହିଁ ।"

—"ତୁ ଇସ୍ତଫା ଦେ ।" ଆଦେଶ ଦେଲା କୁମର । ଟିକିଏ ନୀରବ ରହି କହିଲା—"ମୋ କଥା ଯଦି ନ ମାନୁ, ତେବେ ତୋର ଯେଉଁ ଅବସ୍ଥା ହେବ, ସେଥିପାଇଁ ମୋ' ପାଖକୁ ଆସିବୁ ନାହିଁ ।"

ସମ୍ଭବତଃ ବିସ୍ତ ହୋଇ ପଡ଼ିଲା ସେ ଏଇ ଚେତାବନୀରେ । ଅପେକ୍ଷାକୃତ ଧୀର ସ୍ୱରରେ କହିଲା—"ମୁଁ ସମସ୍ତଙ୍କୁ ପଚାରେ ଆଗ । ସେମାନେ କହିଲେ ଇସ୍ତଫା ଦେବି ।"

କୁମର ଧମକ ଦେଲା—"ସେମାନେ କିଏ ? କାହାକୁ ପଚାରିବୁ ? ମୁଁ କହୁଚି ତୁ ମେମ୍ବର ହୋଇ ପାରିବୁ ନାହିଁ । ତୋର ଏ ଘର ରହିବ ନାହିଁ । ତୋ' ବଡ଼ିଲା ଭଉଣୀ ଉପରେ ଅତ୍ୟାଚାର ହୋଇଯାଇ ପାରେ ।" କୁମର ବିନା ଦ୍ୱିଧାରେ କହିଲା ବିବେକହୀନ ମଣିଷଟିଏ ଭଳି । ସଦାଶିବର ପ୍ରତିକ୍ରିୟା ଜାଣିବା ପାଇଁ ଅପେକ୍ଷା ନ କରି କୁମର ଆଗେଇ ଯାଉଥିଲା ସରୁ ଗୁଳ୍ମାଚ୍ଛନ୍ନ ରାସ୍ତାରେ ଏବଂ ସଦାଶିବ ସ୍ଥାଣୁ ପାଲଟି ଯାଇଥିଲା ଗାଁ ନେତାଙ୍କର ପୈଶାଚିକ ନିର୍ଦ୍ଦେଶ ଶୁଣି । ସେ ବିଶ୍ୱାସ କରିପାରୁ ନ ଥିଲା ଯେ, ସେଇ ଗାଁର ଲୋକ'ଜଣେ ତା' ମୁହଁ ଉପରେ ଏଭଳି ଶୈତାନ ପାଲଟିଯିବ ଓ ଏଭଳି ଅସମ୍ଭବ ଚେତାବନୀ ଦେଇ ପାରିବ ।

ଜୀବନ ପାଖରୁ ଆଉ ଆଶା କରିବାର କିଛି ନ ଥିଲା । ଜୀବନକୁ ଉପଭୋଗ କରିବା ସକାଶେ ଭଲ ଭାବରେ ବଞ୍ଚି ରହିବାକୁ ପଡ଼େ । ଏଥିପାଇଁ ଯେଉଁ ସଂଘର୍ଷ ଦରକାର ଏବଂ ନିଜ ପରିସ୍ଥିତିକୁ ଅଙ୍ଗୀକାର କରିବା ପାଇଁ ଯେଉଁ ଶକ୍ତି ଦରକାର, ସେସବୁ ଗୃହୁଁ ଗୃହୁଁ ଅସ୍ତ ହୋଇ ଯାଉଚି । ଦେବ ଆଗୃଯ୍ୟ ଥରେ ନୁହେଁ, ହଜାରେ ଥର

ଅନୁଭବ କରିଚନ୍ତି ଯେ, ଗାଁ ଭଳି ସେ ଧୂସର ଓ ଦୁଃଖୀ ହୋଇ ଯାଉଚନ୍ତି ।

କିଛି ଗୋଟାଏ ହଜିଗଲା ଏଇ ଅଳ୍ପ କେତୋଟି ବର୍ଷ ମଧ୍ୟରେ । ପରିବେଷ୍ଟନ କରିଥିବା ସବୁଜ ବନାନୀ ଥିଲା ଗୋଟାଏ ରୋମାଞ୍ଚକର ସ୍ୱପ୍ନ ଭଳି । ସେ ସ୍ୱପ୍ନକୁ ସ୍ପର୍ଶ କରିବା ସମ୍ଭବ ଥିଲା । ସେ ସ୍ୱପ୍ନ ଥିଲା ରହସ୍ୟମୟ ଓ ବେଳେ ବେଳେ ଶ୍ୱାପଦସଙ୍କୁଳ ବାଘର ହେଣ୍ଟାଳି ଭଳି, କେଉଁ ଲୋକର ବାଘୁଣୀ ଶିକାର ହେବା ଭଳି । ଅଥଚ ତାହା ଥିଲା ଗୁପ୍ତାଚ୍ଛନ୍ନ, ବାସ୍ତବ ଭଳି । ତାହା ଜୀବନର ଏକ ପରିବର୍ଦ୍ଧିତ ଆକାର ଥିଲା । ଆଉ ଅଛି କ'ଣ ? ଘାସ ବିବର୍ଜିତ, ଧୂଳି ଧୂସରିତ ଗୋଟାଏ ଲଙ୍ଗଳା ପୃଥିବୀର ଅଂଶବିଶେଷ । ଅନୁର୍ବର ନାଲିମାଟିର ଏ ଅଂଶ ଦେଖାଯାଏ ଗୋଟାଏ ବିଶାଳ କ୍ଷତ ଭଳି । ଏ କ୍ଷତ ସତେ ଯେପରି ଆତୁର ହୋଇ ଚୁହିଁ ରହେ ଆକାଶକୁ ଶେଷହୀନ ଶୋଷ ଭଳି । ଆକାଶ ଏତେ ଦୂରରେ ଯେ, ଏବେ ଗାଁର କୌଣସି ସ୍ତ୍ରୀ ଲୋକ କହିବାକୁ ଭରସା ପାଏ ନାହିଁ-ଆ, ଆ, ଜହ୍ନମାମୁଁ, ମୋ କାହ୍ନୁ କପାଳରେ ତୋ' ଦେହ ଭଳି ଚକ୍ ଚକ୍ ଗୋଲ ଟିକା ପିନ୍ଧେଇ ଦେ ।

ଦେବ ଆଶ୍ଚର୍ଯ୍ୟ ଆମ ଗାଁ । ଆମ ଗାଁର ସ୍ୱପ୍ନରହିତ ରୋମାଞ୍ଚହୀନ ନିଷ୍ପ୍ରାଣ ଓ ଧୂସର ପରିପାଟିର ମଣିଷ ଆକୃତି ହେଉଚନ୍ତି ଦେବ ଆଶ୍ଚର୍ଯ୍ୟ । ତୁଳନା କରିଦେବା ମାତ୍ରେ ଦୁଇ ହାତ ଆଙ୍ଗୁଳି ଜୋରରେ ଥରେ । ଏତେ ଜୋରରେ ଥରେ ଯେ ମନେହୁଏ, ତାଙ୍କ ଦେହ ନୁହେଁ; ସମଗ୍ର ଗାଁର ଦେହ ଭିତରେ କ'ଣ ଗୋଟାଏ ଅଖଞ୍ଜ ହୋଇ ଯାଇଚି । କିଛି ଗୋଟାଏ କମ୍ପୁଚି ଅସ୍ଥିର ଛଟପଟ ହୋଇ ।

ଆଉ ଏମିତି କେତେ ଦିନ ?

ବାରମ୍ବାର ପଚାରିବାକୁ ହୁଏ ଏଇ ପ୍ରଶ୍ନଟି । ବାରମ୍ବାର ଏ ପ୍ରଶ୍ନ ପ୍ରତିଧ୍ୱନି ସୃଷ୍ଟି କରେ ସ୍ୱପ୍ନହୀନ, ସବୁଜିମା-ବିବର୍ଜିତ ମନ ଭିତରେ । ଏହା ତ ଅଟକାଇ ପାରେ ନାହିଁ କିଛି । ସମ୍ଭାଳି ପାରେ ନାହିଁ ସଂସାରର ଦାଣ୍ଡ । ଧରିପାରେ ନାହିଁ ତରୁଜୁ, ଗୁମ୍ଫି ବାଡ଼, ପଣାକାଠି ବା ଡାଳ୍ । ହାତ ଧରୁ ଧରୁ ଥାକ ଓ ଭୂଇଁରେ ବୁଣି ହୋଇଯାଏ । ମନ୍ଦିରର ଘଣ୍ଟ

ଶବ୍ଦ ଶୁଣି କପାଳ ପାଖରେ ଦୁଇ ହାତ ଯୋଡ଼ିବା ବେଳେ ଭକ୍ତି ଓ ଆତ୍ମସମର୍ପଣର ପ୍ରଣାମ ଖସିଯାଏ ଛନ୍ନଛନ ହାତ ଭିତରୁ । ଏଇ ହାତ ନେଇ କିଛି ଯୋଜନା କରାଯାଇ ପାରେ ଜୀବନର ଭବିଷ୍ୟତ ସମ୍ପର୍କରେ ? ଏ ହାତରେ ଛୁଆମାନଙ୍କୁ ଧରି ହୁଏ ନାହିଁ ଠିକ୍ ଭାବରେ । କାହା ଜାମାର ବୋତାମ ଲଗେଇ ହୁଏ ନାହିଁ । ଇତସ୍ତତଃ ହୋଇ ଯାଇଥିବା କେଶ ସଜାଡ଼ି ହୁଏ ନାହିଁ ଯେତେ ଇଚ୍ଛା କଲେ ମଧ୍ୟ ।

ତାଙ୍କ ବୟସର ଲୋକମାନେ କ'ଣ କରନ୍ତି, କେଜାଣି ? କେମିତି ସମୟ କଟାନ୍ତି ? ତାଙ୍କ ଭଳି କ'ଣ ଭାବନ୍ତି ଯେ, ଅତୀତ କେତେ ସବୁଜ ଓ ଉନ୍ମାଦନାମୟ ଥିଲା ? ତାଙ୍କ ଭଳି କ'ଣ କମ୍ପିତ ହାତରେ ଅତୀତକୁ ପୁଣି ଛୁଇଁବା ପାଇଁ ବ୍ୟାକୁଳ ହୁଅନ୍ତି ? ଅଥଚ କେହି କୁଆଡ଼େ ଦେଖା ଯାଆନ୍ତି ନାହିଁ । ଗାଁ ରାସ୍ତାକୁ ଉଠିଆସିଲେ ଗୋଟାଏ ବିଧବାର ରିକ୍ତ ଓ ଶୂନ୍ୟ ହାତ ଭଳି ଦେଖାଯାଏ । କେଉଁ ପିଣ୍ଡାରେ ଗୋଟେ କୁକୁର ଶୋଇଥିବ । ତାଙ୍କୁ ଦେଖି ମୁଣ୍ଡ ଟେକିବ ଓ ପୁଣି ଆଖିବୁଜି ପଡ଼ି ରହିବ ନିଜସ୍ୱ ସୁଖ ନେଇ । ରାସ୍ତାରେ କେହି ଜଣେ ଯାଉଥିବ ଚିନ୍ତାଗ୍ରସ୍ତ ମୁହଁ ନେଇ । ପ୍ରତିକ୍ରିୟାହୀନ ଦୃଷ୍ଟିରେ ତାଙ୍କ ଆଡ଼େ ଚାହିଁବ ଥରେ । ପୁଣି ଆଗେଇ ଚାଲିବ । କେଉଁ ସାହିରେ କେହି ଜଣେ ଡାକୁଥିବ କାହାକୁ ଉଚ୍ଚ ସ୍ୱରରେ । ନ ହେଲେ ସବୁ ଶୂନ୍‌ଶାନ ଓ ନିଃସଙ୍ଗ । ସଂସାର ସଙ୍ଗେ ମୁକାବିଲା କରିପାରୁ ନ ଥିବା ଲୋକମାନେ କେମିତି ସମୟ କଟାନ୍ତି ? ଦେବ ଆଚାର୍ଯ୍ୟ ଏଇ କଥା ଜାଣି ପାରୁ ନ ଥିଲେ ଜମା ।

କେବେ ବି କହି ହେବ ନାହିଁ ଯେ ଅତୀତଟା ମିଛ ଥିଲା, ଥିଲା ଗୋଟାଏ ଶଠତା । ଜମା କହିହେବ ନାହିଁ । ତେବେ ଏଇ ସତ୍ୟଟା ହାତଛଡ଼ା ହୋଇଯାଏ । ବର୍ତ୍ତମାନର ପରାଜୟ ଭଳି ଅତୀତର ସମସ୍ତ ସବୁଜିମା ଏକାନ୍ତଭାବେ ସତ୍ୟ; ଅଙ୍ଗେ ଲଭେଇଥିବା ବାସ୍ତବତା ।

ଆଜିକାଲି ତାଙ୍କ ଭିତରେ କ'ଣ ହେଉଚି ସେ ଜାଣି ପାରନ୍ତି ନାହିଁ । ଯେଉଁ ନିବିଡ଼ ଆଲିଙ୍ଗନର ସ୍ମୃତି ସେ ସାଇତି ରଖିଥିଲେ ଅସୀମ ଆବେଗର ମଣ୍ଡପ ଉପରେ, ସେହି ସ୍ମୃତି ଆଉ ତାଙ୍କୁ ବିମୋହିତ କରୁ ନ ଥିଲା ଜମା । ଆବେଗର ମଣ୍ଡପ କେଉଁଦିନୁ ଭାଙ୍ଗିଯାଇଥିଲା ତାଙ୍କ

ଭିତରେ । ଆପାତତଃ ସେ ଅନୁତାପ କରୁଥିଲେ ଯେ, ତକିଆ ତଳେ ଗୁଞ୍ଜି ଆସିଥିବା ଗୃହପଟ୍ଟ ଚୂଡ଼ିର୍ ଧ୍ୱନି ତାଙ୍କର ହାତଛଡ଼ା ହୋଇଯାଇଚି, ଉନ୍ମାଦିତ ଓ ଚୂଡ଼ାନ୍ତ ଭାବେ ସମର୍ପିତ ଆଲିଙ୍ଗନ ନୁହେଁ । ଗୃହପଟ୍ଟ ଚୂଡ଼ି ଅନେକ କାମରେ ଲାଗିଥାନ୍ତା । ସେ ନିର୍ବୋଧ ଥିଲେ କି ? ବୋଧହୁଏ ପ୍ରଖର ଆବେଗ ଓ ରୋମାଞ୍ଚକର ସ୍ୱପ୍ନ ସମସ୍ତଙ୍କୁ ନିର୍ବୋଧ କରିଥାଏ— ସବୁଠାରେ, ସବୁ ସମୟରେ । ନିଜ ସ୍ମୃତି ଏଇଭଳି ମନ ଭିତରେ କୁଞ୍ଚିତ ଓ ଅପବିତ୍ର ହେବାରେ ଲାଗିଥାଏ ଏବଂ ଦେବ ଆଚାର୍ଯ୍ୟ ନିଜକୁ ଆହୁରି ତିରସ୍କାର କରୁଥାନ୍ତି—ତୁ ନିର୍ବୋଧ ଥିଲୁ । ସବୁଦିନ ପାଇଁ ଧରିରଖି ପାରିଲୁ କି ସେହି ଆଲିଙ୍ଗନ ଏବଂ ସେହି ଐଶ୍ୱର୍ଯ୍ୟମୟ ନିବେଦିତ ଦେହର ସ୍ପର୍ଶ ? କ'ଣ ମିଳିଲା ସେଥିରୁ ? କାହିଁକି ତେବେ ପ୍ରତ୍ୟାଖ୍ୟାନ କଲୁ ଏଭଳି ବାସ୍ତବ ସମ୍ପଦକୁ ? ତୁ କ'ଣ ଗୋଟିଏ କରିଥିଲୁ ?

ଦେବ ଆଚାର୍ଯ୍ୟ ବୁଝି ପାରନ୍ତି, ସମୟର ପରିପ୍ରେକ୍ଷୀରେ ନିଜେ କରିଥିବା କର୍ମର ତାତ୍ପର୍ଯ୍ୟ ଓ ଅର୍ଥ ବଦଳୁ ଥାଏ । ପରିଚ୍ଛନ୍ନ ଜଣା-ପଡ଼ୁଥିବା ସ୍ମୃତି କଳୁଷିତ ହୋଇଯାଏ । ଯେଉଁଟା କୃତିତ୍ୱ ଓ ବିଜୟ ବୋଲି ମନ କହୁଥାଏ, ତାହା ପରିଣତ ହୋଇଯାଏ ଅସମାହିତ ଅନୁତାପ ଓ କାପୁରୁଷପଣିଆରେ । ଦେବ ଆଚାର୍ଯ୍ୟ ଜଣେ ପରିବର୍ତ୍ତିତ ମଣିଷ, ନିଜ ଗାଁର ଆତ୍ମା ଭଳି ।

ଅନେକ ଦିନ ହେଲା କହିପାରୁ ନ ଥିବା କଥା କହିବି ବୋଲି ବାବୁଲା ପ୍ରସ୍ତୁତ ହେଉଥିଲା । ଅନେକବେଳୁ ନିଦରୁ ଉଠି ଦେବ ଆଚାର୍ଯ୍ୟ ବସିଥିଲେ ପିଣ୍ଡାରେ । ଆଜିକାଲି ତାଙ୍କୁ କିଛି କହିବା ପାଇଁ ମନ ହୁଏ ନାହିଁ କମା । ତାଙ୍କୁ ଦେଖିଲେ ଏତେ ବିକଳ ଲାଗେ ଯେ, ଯାହା ଅଭାବ-ଅସୁବିଧା ଥାଉ ପଛକେ ତାଙ୍କୁ ହଇରାଣ କରିବା ପାଇଁ ପାଟି ଖୋଲେ ନାହିଁ । ଚଳିବାର କିଛି ଚିହ୍ନ ଦରକାର । ବାପା ଘରେ ନ ଥିବା ବେଳେ କେବଳ କହେ—"ରବିନ ଗଜେ ଥାଆନ୍ତା କି ! ବାରମ୍ବାର ଏମିତି ଭଙ୍ଗା ପାନିଆରେ ମୁଣ୍ଡ କୁଣ୍ଡେଇବାକୁ ପଡ଼ନ୍ତା ନାହିଁ ।" ବାପାଙ୍କୁ କହି ବୋଲି ସେ ପ୍ରସ୍ତାବ ଦେବା କ୍ଷଣି ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲା—

"ଶିବନ କଥା ଜମା ତାଙ୍କୁ କହିବୁ ନାହିଁ । ମୁଁ ଚଳେଇ ନେବି ଏମିତି । ଦେଖୁନୁ, ତାଙ୍କ ଦେହ ଭଲ ରହୁ ନାହିଁ । ମନ ତ ଭଲ ନାହିଁ ବୋଲି ଆଗଭଳି ହସି ହସି କଥା ବି କହିପାରୁ ନାହାନ୍ତି । ତାଙ୍କ ହାତ ଦି'ଟା କଣ ହୋଇଚି କେଜାଣି, ଖାଲି ଥରୁଚି । କିଛି କରି ପାରୁ ନାହାନ୍ତି । ଏଇନା ରିବନ କଥା କହିଲେ ସେ ଭାରି ବ୍ୟସ୍ତ ହେବେ ।"

ବାବୁଲି ଅନେକ ଦିନରୁ ବୋତାମ ନ ଥିବା ଗୋଟିଏ କମିଜ୍‌ରେ କାମ ଚଳଉଥିଲି । କାଖ ତଳଟା ସିଲେଇ ଫିଟି ଆସିଲାଣି । ବାପାଙ୍କୁ କହିପାରୁ ନାହିଁ । ତା' ତଳ ସାନଭାଇ ପାଇଁ ନୂଆ ସିଲଟ ଗୋଟେ କଣାଯାଇ ନାହିଁ । ପ୍ରଥମେ ମଝିରୁ ଭାଙ୍ଗିଗଲା । ତା'ପରେ କାଠ ଫ୍ରେମ୍‌ରୁ ଖସି ଆସିଲା ବଡଭଙ୍ଗା ସ୍ଲେଟ୍ । ଅନେକ ଦିନ ହେଲା ମା'ର କ'ଣ ହୋଇଚି, ସେ ବୁଝି ପାରୁନାହିଁ । ଆଗ ଭଳି ଜମା ଗାରୁ ଗାରୁ ହେଉନାହିଁ । ବାପାଙ୍କୁ ଅପାରଗ, କରିମଣ୍ଡହୀନ, ରୋଗା ମଣିଷଟେ ବୋଲି କହି ଗାଳି ଦେବା ଭୁଲି ଯାଇଚି । ସେ ମଧ୍ୟ କେମିତି ବଦଳିଗଲା ଭଳି ଜଣା ପଡୁଚି । ସେମାନଙ୍କୁ ବେଳେବେଳେ ଚିଡୁଚି । ପାଖରେ ବସିଲେ ତଡୁଚି । କିଛି କଥା କହିଲେ ଶୁଣୁ ନାହିଁ ଆଗ୍ରହର ସହିତ । ନିର୍ବିକାର ଅନ୍ୟମନସ୍କ ମଣିଷଟିଏ ହୋଇ ଯାଇଚି ସେ । ସମସ୍ତେ ପରସ୍ପରଠାରୁ ଅଲଗା ହୋଇ ଯାଇଚନ୍ତି ଏବଂ ନିଜ ନିଜ ଭାବନା ନେଇ ନୀରବ ହୋଇ ପଡୁଚନ୍ତି । ଭଲ ଲାଗୁ ନାହିଁ ଘରଟା ।

ବାବୁଲି ଦ୍ୱିଧାଗ୍ରସ୍ତ ମନ ନେଇ ଠିଆ ହେଲା ଦେବ ଆଚାର୍ଯ୍ୟଙ୍କ ପାଖରେ । କହିବ, ନା କହିବ ନାହିଁ ? ଯଦି ବାପାଙ୍କ ମନରେ କଷ୍ଟ ହୁଏ ? ସେ ଯଦି ତା' ଆଡ଼େ ଚାହାନ୍ତି ଅସହାୟ ମୁହଁ ନେଇ ? ସହି ପାରିବ ? ଏବେ ସିନା ସେମାନେ ତାଙ୍କୁ କିଛି ବରିଦ କରୁ ନାହାନ୍ତି, ଅନେକ ଦିନ ତଳେ ତ ସେମାନେ ଅଳି କରୁଥିଲେ ତାଙ୍କ ପାଖରେ । ସେ ସାନ ଥିବା ବେଳେ ଅପ୍ରତ୍ୟାଶିତ ଭାବରେ ଭଲ ଜିନିଷ ପହଞ୍ଚି ଯାଉଥିଲା ସେମାନଙ୍କ ହାତକୁ । ତା'ପରେ କିଛି ଗୋଟେ କହିଲେ ସେ ହଁ କରନ୍ତି ଆଗ୍ରହର ସହିତ, କିନ୍ତୁ ଆଣିବା ପାଇଁ ଭୁଲି ଯାଆନ୍ତି । ବାରମ୍ବାର କହିବାକୁ ପଡ଼େ । ମା' ଥାଏ ଯେ ପାଟି କରେ । ଜିନିଷ ଆସେ । ବାପାଙ୍କ କହିବା ଅନୁସାରେ ସେମାନେ ମା' ଉପସ୍ଥିତିରେ କିଛି

ବିବାଦ ଦେବା ଅଭ୍ୟାସ ବନ୍ଦ କଲେ । ବାପାଙ୍କ ପାଖରେ ଅଜସ୍ର ଅସୁବିଧା ଉପସ୍ଥାପିତ କରାଯାଏ । କଲମ ନିବ୍ ଭାଙ୍ଗି ଯାଇଚି, ଅମୁକ ବହି ଏଯାଏ କିଣା ଯାଇ ପାରିନାହିଁ, ଚପଲ ଷ୍ଟ୍ରେପ୍ ଛିଣ୍ଡି ଯାଇଚି ସାଙ୍ଗମାନଙ୍କ ସାଙ୍ଗରେ ଖେଳୁଥିଲି ବେଳେ, ସ୍କୁଲ୍‌ରେ କେହି ଜଣେ ପେନ୍‌ସିଲ୍‌ଟା ନେଇଗଲା । କିଛୁ ଜିନିଷ ଆସେ । ତା'ପରେ ବାପା କିନ୍ତୁ ପାଲଟିଗଲେ ଜଣେ ପ୍ରତିଶ୍ରୁତି-ସର୍ବସ୍ୱ ମଣିଷ । ହଁ ଆଣି ଦେବି ବୋଲି କହି ମଧ୍ୟ ଜିନିଷ ଆଣନ୍ତି ନାହିଁ ।

ଦେବ ଆଗ୍ରହୀଁୟ ଗୁହିଁଲେ ବାବୁଲି ଆଡ଼େ । ମଧ୍ୟମ ଧରଣର ସ୍ୱାସ୍ଥ୍ୟ । ଗୋରା । ବୟସ ଅନୁପାତରେ ଟିକିଏ ଡେଙ୍ଗା । ମାଇନର ପରୀକ୍ଷା ଦେଇସାରି ବସିଚି ଘରେ । ତାଙ୍କର ପ୍ରଥମେ ଧାରଣା ହେଲା, ମାଟ୍ରିକ୍ ପଢ଼ିବାପାଇଁ ରବୀ ଯେମିତି ପ୍ରସ୍ତାବ ଦେଇଥିଲା, ଏ ମଧ୍ୟ ସେଇଭଳି ପ୍ରସ୍ତାବ ଦେବା ପାଇଁ ବୋଧହୁଏ ଠିଆ ହୋଇଚି ।—"କ'ଣ କରେ ?" ଦେବ ଆଗ୍ରହୀଁୟ ପଚାରିଲେ କୌଣସି ଆଗ୍ରହ ଉତ୍କଣ୍ଠା ନ ଦେଖାଇ ।

—"ବାପା !" ସେ ଆଉ କିଛି କହି ପାରିଲା ନାହିଁ ଦେବ ଆଗ୍ରହୀଁୟଙ୍କର ନାହିଁ ନାହିଁ ବୋଲି ଚବିଶ୍ ଘଣ୍ଟା ସୂଚନା ଦେଉଥିବା ହାତ ଆଡ଼େ ଗୁହିଁବା ପରେ ।

—"କ'ଣ କହୁନୁ ?" ସେ ଉତ୍ସାହିତ କରିବାକୁ ଚେଷ୍ଟା କଲେ ।

—"ମୁଁ କହୁଥିଲି, ଆମ ଦୋକାନଟା ଖୋଲନ୍ତେ ।" ବାବୁଲି ପ୍ରସ୍ତାବ ବାଢ଼ିବା ପରେ ଦେଖିଲା, ବାପା କିପରି ଉଦାସ ହୋଇ ଯାଉଚନ୍ତି ଓ ଅନ୍ୟ ଆଡ଼େ ଗୁହୁଁଚନ୍ତି । ନୀରବତା ଅସହ୍ୟ ଜଣା ପଡ଼ିଲା ବାବୁଲିକୁ ।

—"ତୁ ଚଳେଇ ପାରିବୁ ଦୋକାନ ?" ସେ ପଚାରିଲେ ।

ବାବୁଲି ଆଦୌ ଆଶା କରି ନ ଥିଲା ଏଭଳି ଉତ୍ସାହଜନକ ପ୍ରଶ୍ନଟେ । କହିଲା—"ହଁ । କାହିଁକି ପାରିବି ନାହିଁ ?"

—"ତୁ ପିଲାଲୋକ । ଦୋକାନ ଚଳେଇବା ଏତେ ସହଜ ନୁହେଁ ।" ଦେବ ଆଗ୍ରହ୍ୟ ବୁଝେଇବାକୁ ଚେଷ୍ଟା କଲେ । ବ୍ୟାପାରରେ ସେ ନିଜେ କିପରି ପରାଜିତ ହୋଇ ପଡ଼ିଚନ୍ତି, ତାହା ବର୍ଣ୍ଣନା କରିବା ଆବଶ୍ୟକ ମଣିଲେ ନାହିଁ ।

—"ମୁଁ କିଛି ହେଲେ ନ କରନ୍ତି ! ଘରେ ଖାଲିଟାରେ ବସିବି କାହିଁକି ?" ବାବୁଲିର ପ୍ରଶ୍ନ ଓ କିଛି ବର୍ଷ ପୂର୍ବେ ଶିବା ପଚାରିଥିବା ପ୍ରଶ୍ନ ଭିତରେ ଅନେକ ତଫାତ୍ ଥିଲା । ଦେବ ଆଗ୍ରହ୍ୟ ନିଃସନ୍ଦେହ ଥିଲେ ଯେ ଘର ପାଇଁ କିଛି କରିବାକୁ ବାବୁଲି ତତ୍ପର ହୋଇ ପଡ଼ିଚି । ତାଙ୍କୁ ସେ ସାହାଯ୍ୟ କରିବାକୁ ଚାହେଁ ।

—"ମୁଁ ଚିନ୍ତା କରେ, କ'ଣ ତୋ ପାଇଁ ବ୍ୟବସ୍ଥା ହୋଇ ପାରିବ ।" ତାଙ୍କ ସ୍ୱରରୁ ବାବୁଲିର ହୃଦ୍‌ବୋଧ ହେଲା ଯେ, ଏଇଟା ମିଛ ପ୍ରତିଶ୍ରୁତି ନୁହେଁ । ସେ ବାବୁଲିର ପ୍ରସ୍ତାବକୁ ଗୋଟାଏ ସୁଯୋଗ ବୋଲି ଗ୍ରହଣ କରି ସାରିଚନ୍ତି ।

ବାବୁଲି ଆହୁରି ଉତ୍ସାହିତ ହୋଇ ପଡ଼ିଲା—"ମୋ ପାଇଁ ଚଞ୍ଚଳ କିଛି ଗୋଟେ କର । ମୋର ପ୍ରଥମ କାମ ହେବ, ସାଇକେଲ୍‌ଟା ସଜାଡ଼ିବା । ଦ୍ୱିତୀୟ କାମ ହେବ, ଦୋକାନ ଗୋଟେ ଖୋଲିବା । ଏଠି ନୁହେଁ । ଲକ୍ଷ୍ମୀ ମାର୍କେଟ୍‌ରେ ।"

ଦେବ ଆଗ୍ରହ୍ୟ ଠିଆ ହେଲେ । ଅନେକ ଦିନୁ ସାଇକେଲ୍ ଟିଉବ୍-ଟାୟାର ହରାଇ ଅକର୍ମଣ୍ୟ ହୋଇ ପଡ଼ିଚି । ଅଭାବ ସତ୍ତ୍ୱେ ତାହାକୁ ବିକିଦେବା କଥା ଚିନ୍ତା ବି କରିପାରି ନାହାନ୍ତି ସେ । ବାବୁଲିର ପ୍ରସ୍ତାବ ହଠାତ୍ ତାଙ୍କୁ ସନ୍ଦିଗ୍ଧ ଓ ଆଶାବାଦୀ କରିଦେଲା । କିଛି ଗୋଟାଏ ନ ହୋଇ ପାରିବ କାହିଁକି ? କିଏ ଜାଣେ, ବାବୁଲି ଏ ଅଞ୍ଚଳର ବିଶିଷ୍ଟ ବ୍ୟବସାୟୀ ହୋଇପାରେ । ସବୁଠାରୁ ବଡ଼ ଦୋକାନର ମାଲିକ ହୋଇ ଯାଇପାରେ । ଏତେବଡ଼ ଦୋକାନ ଯେ, ଲୋକେ କେବଳ ସେଇ ଦୋକାନ ଦେଖିବା ପାଇଁ ଆସି ପାରନ୍ତି । ଦେବ ଆଗ୍ରହ୍ୟ ରାସ୍ତା ଚାଲୁଥିବା ବେଳେ ସଚେତନ ହେଲେ ଯେ, ନିଜ ପାଇଁ ସୃଷ୍ଟି କରିଥିବା ସ୍ୱପ୍ନ ସେ ଆରୋପିତ କରିବା ପାଇଁ ଯାଉଚନ୍ତି ପୁଅର ଜୀବନରେ । ସେ

ସ୍ୱପ୍ନର ବାସ୍ତବ ରୂପାନ୍ତର ଦେଖିବା ମାନେ ହିଁ ଜୀବନର ସମସ୍ତ ତାତ୍ପର୍ଯ୍ୟ ଓ ଯଥାର୍ଥତା ଆସିଯାଆନ୍ତା ତାଙ୍କ ପାଖକୁ । ସେ ନ ହେଲେ କ'ଣ ହେଲା ? ବାବୁଲା ତ ବିଜୟର ଝଣ୍ଡା ଧରି ଠିଆ ହୋଇ ରହନ୍ତା ଗୌରବମୟ ଦୋକାନ ବାରନ୍ଦାରେ ?

ବାପାଙ୍କୁ ଫେରି ଆସୁଥିବାର ଦେଖି ବାବୁଲା ହତୋତ୍ସାହ ହୋଇ ପଡ଼ୁଥିଲା, କିନ୍ତୁ ତାଙ୍କ ମୁହଁ ପ୍ରସନ୍ନ ଜଣାପଡ଼ୁଥିଲା । ବହୁଦିନ ପରେ ସେ ବାପାଙ୍କୁ ଦେଖୁଥିଲା ସନ୍ତୁଷ୍ଟ ଓ ଆତ୍ମ-ବିଶ୍ୱାସୀ ହେବାର । ଏବେ ତାଙ୍କ ମୁହଁ ଆଉରି ହାଡ଼ୁଆ, ଆଖି ନିଷ୍ପ୍ରଭ ଓ କେଶ ପତଳା ହୋଇ ଯାଇଛି ।

—"ସାଇକେଲଟା ସଜାଡ଼ି ଦେଲେ ତୁ ହାଟକୁ ଯାଇ ପାରିବୁ ?" ପାଖରେ ପହଞ୍ଚି ସେ ପଚାରିଲେ ।

—"ହଁ ।" ବାବୁଲା ସତେ ଯେପରି ଆଶ୍ଚର୍ଯ୍ୟ ହେଲା ଯେ, ଏଇ ମାମୁଲି କାମ ପାଇଁ ତା' ଉପରେ ସେ ଭରସା ରଖିପାରୁ ନାହାନ୍ତି କାହିଁକି ?

—"ବଜାରକୁ ? ଅନ୍ୟ କେଉଁ ଗାଁକୁ, ଯଦି କାମ ପଡ଼େ ?" ସେ ଆଉରି ନିଶ୍ଚିତ ହେବା ପାଇଁ ପଚାରିଲେ ।

—"ତୁମେ ସାଇକେଲଟା ସଜାଡ଼ି ଆଗ ପରୀକ୍ଷା କର । ଏତିକି ନ କରି ପାରିଲେ ମୋ କାନ ମୋଡ଼ି ଚଟକଣା ଦେବ ।" ବାବୁଲା ଉତ୍ତର ଦେଲା ବାପାଙ୍କର ଚ୍ୟାଲେଞ୍ଜ ଅତି ସହଜରେ ଗ୍ରହଣ କରିଥିବା ଭଳି ।

ଦେବ ଆଚାର୍ଯ୍ୟଙ୍କ ମୁହଁରେ ଯେଉଁ ଆଶ୍ୱସ୍ତି ଓ ପରିପୂର୍ଣ୍ଣତାର ଶ୍ରେଷ୍ଠ ହସ ଦେଖାଗଲା, ସେପରି ହସ ଆଗରୁ ଦେଖି ନ ଥିଲା ବାବୁଲା । ସେ ଜାଣିପାରି ନ ଥିଲା ଯେ ସନ୍ଧ୍ୟା ସମୟର ସୂର୍ଯ୍ୟ ପରିପୂର୍ଣ୍ଣ ଦେଖାଯାଏ ସକାଳର ସମ୍ଭାବନାରେ । ଦେବ ଆଚାର୍ଯ୍ୟ ନିଜ ରକ୍ତ ଭିତରେ ଗୋଟାଏ ଅବଲମ୍ବନ ଖୋଜି ପାଇଥିଲେ । ସେ ପୁଣି ଆଗେଇ ଚାଲିଲେ ଲକ୍ଷ୍ମୀ ମାର୍କେଟ୍ ଆଡ଼େ ।

ଲକ୍ଷ୍ମୀ ମାର୍କେଟ୍‌ରେ ସେଦିନ ଯେଉଁ ଉତ୍ତେଜନାପୂର୍ଣ୍ଣ ଯୁକ୍ତିତର୍କ ଚାଲିଥିଲା, ତାହା ଗାଁ ସମସ୍ୟା ସମ୍ବନ୍ଧୀୟ ନ ଥିଲା । ବାରନ୍ଦାରେ

ଦଉଡ଼ିଆ ଖଟ ପକାଇ ନିମାଇଁ ବସିଥିଲା ଚା' ଗ୍ଲାସ୍ ଧରି । ଘଣ୍ଟାଏ ପୂର୍ବରୁ ତିକ୍ତ ଅନୁଭୂତି ନେଇ ସେ ଫେରିଥିଲା ଘଟଣାରୁ । ସେଥିପାଇଁ ତା ମନ ଭଲ ନ ଥିବା ବେଳେ କେତେଜଣ ଗରାଖ ସାଙ୍ଘାତିକ ଆପତ୍ତି ଉଠାଇ ଥିଲେ ତା' ଦୋକାନର ଜିନିଷ ସମ୍ବନ୍ଧରେ । ନିମାଇଁର ମୁହଁ ଝାଳେଇ ଯାଇଥିଲା, ଦେଖାଯାଉଥିଲା ଉତ୍ତେଜିତ । ତାସ୍ ଆସର ବନ୍ଦ ଥିଲା ବୋଧହୁଏ । କୋଡ଼ିଏ-ପଚିଶ୍ ଜଣ ଲୋକ ଠିଆ ହୋଇ ଶୁଣୁଥିଲେ ସବୁ କଥା । ଚା' ଦୋକାନ ବେଞ୍ଚରେ ବସିଥିବା ଲୋକେ ଚା' ଧରିଥିଲେ ଓ ଅନ୍ୟମନସ୍କ ହୋଇ ଶୁଣୁଥିଲେ ଯୁକ୍ତିତର୍କ । ରାଧାକାନ୍ତ ଖଣ୍ଡିଏ କନା ଧରି ମୋଟର ସାଇକେଲ୍ ଦେହରୁ ଧୂଳି ଝାଡ଼ି ଦେଉଥିଲା ଓ ମଝିରେ ମଝିରେ ସମସ୍ତଙ୍କ ଆଡ଼କୁ ଦୃଷ୍ଟି ବୁଲାଇ ନେଉଥିଲା ।

କେହି ଜଣେ କହୁଥାଏ—"ଥରେ ନୁହେଁ, ଅନେକ ଥର ମୁଁ ଦେଖିଲି, ସେଇ ଏକା କଥା । ଚାଉଳ ଆଉ ଡାଲିରେ ଏତେ ଗୋଡ଼ି ଯେ, ଝାଟିକୁ ନେବା ମୁସ୍କିଲ । ସୋରିଷ ତେଲରୁ ବାହାରୁଛି ଗୋଟାଏ ବିଚକଟିଆ ଗନ୍ଧ । ଅଟାରେ ମକାଗୁଣ୍ଡ କି କ'ଣ ଗୋଟେ ମିଶିଛି ଯେ ରୁଟି ଭଲ ହେଉନାହିଁ ।"

ନିମାଇଁ ଉତ୍ତର ଦେଉଥାଏ—"କଥାଟା ଟିକିଏ ଭଲକରି ବୁଝିବାକୁ ଚେଷ୍ଟାକର । ତୁମେ ସବୁ ଯେଉଁ ଜିନିଷ ଏଠୁ ନେଉଛ, ତାହା ତ ମୁଁ ନିଜେ ତିଆରି କରୁନାହିଁ । ଦୋକାନରୁ କିଣୁଛି, ଏଠି ବିକୁଛି । ତେଣୁ ଅସୁବିଧାଟା କେଉଁଠି, କହୁନ ?"

କିନ୍ତୁ ଅଭିଯୋଗ କରୁଥିବା ଲୋକମାନେ ଏଇ ଜଣାଶୁଣା କଥାରେ ନିରସ୍ତ ହେଉ ନ ଥିଲେ । ଆଉ ଜଣେ କହିଲା—"କଥା କ'ଣ କି ନିମାଇଁବାବୁ, ଏସବୁ ଜମା ଶୁଣା ନ ଥିଲା ଆଗରୁ । ଆପଣଙ୍କ ଦୋକାନ ହେବା ଦିନୁ, ମୋର କାରବାର ଆପଣଙ୍କ ସହିତ । ଏଇ କେତେ ଦିନ ହେଲା କେଉଁଠି ଗୋଟେ ବିଭ୍ରାଟ ରହିଯାଉଛି । ମୋତେ ଆପଣ ଯାହା କହନ୍ତୁ ପଛେ, ଆପଣଙ୍କ ଦୋକାନ ଜିନିଷ ଆଉ ଭଲ ପଡ଼ୁନାହିଁ ।"

ନିମାଇଁ ଉତ୍ତେଜିତ ହୋଇଗଲା ଏତିକରେ—"ତୁମେ କାହିଁକି କହୁଛ ଯେ ଗୋଦାମ ଜିନିଷ ଖରାପ ବୋଲି ? କିମ୍ବା ମୁଁ ଯେଉଁ ଦୋକାନରୁ ଜିନିଷ ଆଣୁଛି, ସେ ଦୋକାନୀ ଅସାଧୁ ବୋଲି ?"

କେହି ଜଣେ କହିଲା—"କେଜାଣି ? ମୁଁ ଶୁଣିଲି, ଅଟା ଇତ୍ୟାଦି ଏବେ କିଣୁଛି ଚେକିଂକାଉଣ୍ଟର୍ । କାହିଁ ? ସେଥିରେ ଏସବୁ ଗଲ୍ତି ଜମା ନାହିଁ । ସେଇ ଦୋକାନୀମାନେ ପୁଣି ଭଲ ଜିନିଷ ଆଣୁଚନ୍ତି କିପରି, କେଉଁଠୁ ? ଆପଣ ସେମିତି ଦେଖି ଶୁଣି ଆଣିଲେ ଏ ଝାମେଲା ରହନ୍ତା ନାହିଁ ।"

ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଯେ, ନିମାଇଁ କୌଣସି ଉତ୍ତର ଦେଲା ନାହିଁ ଏଇ ପ୍ରସ୍ତାବ ଉପରେ । ମାରିବରେ ଗୁ' ପିଉଥିବା ବେଳେ ଶୁଣିଲା ଭଟ୍ଟଙ୍କର ଅଭିଯୋଗ—"ଆପଣଙ୍କ ଦୋକାନ ଭଲ ଦୋକାନ ବୋଲି ଏଇଠୁ ସଉଦା ନେଇ ମୁଁ ଆମ ଗାଁରେ ଦୋକାନ କରିଛି । ଏଇ କେତେ ଦିନ ହେଲା କଲେ ଜିନିଷର ଓଜନ ପଚିଶ୍ ଗ୍ରାମ୍ ପାଖାପାଖି କମି ଯାଉଛି । କହନ୍ତୁ ତ, ଏଥିପାଇଁ କ'ଣ ଆଉ କେଉଁ ଦୋକାନୀ କି ଗୋଦାମ ଦାୟୀ ?"

ନିଜକୁ ରକ୍ଷା କରିବା ଭଳି କହିଲା ନିମାଇଁ—"ଅରେ ଅଧେ କେଉଁଠି ହୁଏତ ଭୁଲ୍ ଭଟକା ହୋଇ ଯାଇଥିବ, କିନ୍ତୁ ଜିନିଷ ତ ପୁଣି ତୁମ ସାମନାରେ ମପା ହେଉଛି ।"

—"ମୁଁ ମନା କରୁନାହିଁ ।" ସେ ଲୋକ ଜଣକ ଉତ୍ତର ଦେଲା । ମୋ କହିବା କଥା ହେଉଛି, ଆଗରୁ ଏମିତି ହେଉ ନ ଥିଲା ଆଜ୍ଞା । ଘଟଣାଟା ଘଟୁଛି ଏବେ ।

ନିମାଇଁ ଚୁପ୍ ରହିଲା ଏଥର । କ'ଣ ଗୋଟାଏ କାମର ବାହାନା କରି ରୁମ୍ ଭିତରକୁ ପଶିଗଲା । ଠିଆ ହେଲା ରୁମ୍ ଭିତରେ ନିର୍ବାକ୍ ହୋଇ । ଗତ କିଛି ଦିନ ହେଲା ଗରାଖମାନଙ୍କୁ ସେ ଠକି ଆସୁଛି । ଅପମିଶ୍ରଣ କରୁଛି ସେ ନିଜେ । ସେ ହିଁ ଠିକ୍ ବଟକରା ବଦଳାଇ କମ୍ ଓଜନ ବିଶିଷ୍ଟ ବଟକରା ଥୋଇଛି ଦୋକାନରେ । ତା' ଭିତରେ କିଛି ଗୋଟାଏ ସଙ୍କୁଚିତ ହୋଇ ପଡ଼ୁଥିଲା । କେହି ଜଣେ ତା'ଆଡ଼େ ଆଙ୍ଗୁଳି

ଦେଖାଇ ତାକୁ ଅଭିଯୁକ୍ତ କରୁଥିଲା ଏବଂ କହୁଥିଲା—ହଠାତ୍ ବଡ଼ଲୋକ ହେବା ପାଇଁ ଏ ଲୋକମାନଙ୍କୁ ଠକିବା ଦରକାର କ'ଣ ? ଗୋଟାଏ ଉଦାହୃତ ବୋଧହୁଏ ନୈତିକତା ଦୃଷ୍ଟିରୁ ତା'ଠାରୁ ଶ୍ରେୟସ୍କର । ତା' ଭିତରେ ମଧ୍ୟ କିଛି ପଚି ସଢ଼ି ଯାଉଚି ଓ ସେ ବି ଶୈଥିଲ୍ୟରେ ପରିଣତ ହୋଇ ଯାଉଚି । ବଡ଼ କଥା ହେଲା, ସେ ଏମିତି ନ ଥିଲା ଆଦୌ । ଏବେ କ'ଣ ହେଉଚି ତା'ର ? ଗୋଟାଏ ଧ୍ୱଂସାତ୍ମକ ନିଶା ତାକୁ ଅକ୍ତିଆର କରି ନେଇଚି ।

ଏଇ କିଛିଦିନ ପୂର୍ବେ ଠାକୁରଙ୍କ ସେବା ଫଣ୍ଡାନ୍ତରେ ସେ ଯେଉଁ ଷ୍ଟେଟ୍‌ମେଣ୍ଟ ପଠାଇଥିଲା, କ'ଣ ସେଇଟା ? ଅଥଚ ବେଶ୍ କିଛି ବର୍ଷ ପୂର୍ବେ ତା' ଚରିତ୍ର ଉପରେ ଭରସା କରି ଘନଶ୍ୟାମ ଦାଦା ଠାକୁରଙ୍କ ଦାୟିତ୍ୱ ଅର୍ପଣ କରିଥିଲେ ତାକୁ । ଯାବତୀୟ ମିଛ କଥା, ମିଛ ଖର୍ଚ୍ଚ ଲେଖି ଠାକୁରଙ୍କ ସମ୍ପତ୍ତି ଲୁଟିନେବା ତା'ର ଗୋଟାଏ ଅଭ୍ୟାସରେ ପରିଣତ ହୋଇଗଲାଣି । କୁମରର ଶ୍ୟେନ ଦୃଷ୍ଟି ଠାକୁରାଣୀଙ୍କର ବିପୁଳ ସମ୍ପଦ ଉପରେ । ସେ ଏହା କରଗତ କରିବା ପାଇଁ ଖୋଲାଖୋଲି ଅଭିଯାନ ଆରମ୍ଭ କରିଚି । ଅଥଚ ତାକୁ ସଚ୍ଚୋଟ ଓ ନୀତିମାନ୍ ବୋଲି ସମସ୍ତେ ଭାବିଲା ବେଳକୁ, ତା' ଅଭ୍ୟାସ ଓ ଦୃଷ୍ଟିଭଙ୍ଗୀ ପୋକ୍ତ ହୋଇ ପଡ଼ୁଚି ଭଯୁଙ୍କର ସ୍ୱାର୍ଥପରତା ଓ ଅସାମାଜିକ କାର୍ଯ୍ୟକଳାପରେ ।

ଅନେକ ସମୟ ଧରି ନିମାଇଁ ଆଖିବୁଜି ଠିଆ ହୋଇ ରହିଲା । ଆଦୌ ସାହସ ହେଲା ନାହିଁ ନିଜକୁ ଆହୁରି ବିଶ୍ଳେଷଣ କରିବା ପାଇଁ । ସେ ନିଜ ପାଖରେ ଅଚିହ୍ନା ହୋଇ ପଡ଼ୁଥିଲା ଏବଂ ଚେଷ୍ଟା କରୁଥିଲା ନିଜଠାରୁ ମୁକ୍ତ ହେବା ପାଇଁ ।

ସେ ପୁଣି ଥରେ ବାହାରକୁ ଆସିଲା ନାହିଁ । ବସିଲା ଗୋଟାଏ ଚୌକିରେ ଏବଂ ଝରକା ବାଟେ ଚାହିଁଲା ବାହାରକୁ । ନାଲିମାଟି ଢଙ୍କା ଧୂଳି ଧୂସରିତ ରାସ୍ତା ଓ ଘାସବିହୀନ ଅଥବ ପଡ଼ିଆ ଆଡ଼େ । ତା' ମନ ଓ ଚେତନା ବିଷାକ୍ତ ହୋଇ ପଡ଼ୁଥିଲା । ସେ ଜାଣିପାରୁ ନ ଥିଲା, କାହିଁକି ତା' ଭିତରେ ଏମିତି ପରିବର୍ତ୍ତନ ଘଟୁଚି ଏବଂ ତାହାକୁ ପ୍ରତିରୋଧ କରିବାର ଶକ୍ତିଗୁଡ଼ିକ ନିଷ୍କ୍ରିୟ ହୋଇ ପଡ଼ୁଚନ୍ତି । ସେ ଆସ୍ତେ ଆସ୍ତେ

ସାମିଲ ହୋଇ ଯାଉଚି ପରିବର୍ତ୍ତିତ ପରିସ୍ଥିତି ଓ ପରିବେଶ ସହିତ । ନିଜକୁ ସ୍ୱତନ୍ତ୍ର ବୋଲି ପ୍ରତିଷ୍ଠା କରିବା ପାଇଁ ସମସ୍ତ ଆଗ୍ରହ କ୍ଲୀବ ହୋଇଯାଉଚି ।

ତାହା ଯଦି ହୋଇ ନ ଥାନ୍ତା, ତେବେ ବିନା ପ୍ରତିବାଦରେ ନିର୍ବାଚନ ପାର୍ଣ୍ଣିକୁ ଏତେ ଟଙ୍କା ଦେଇ ନ ଥାନ୍ତା । ରାସ୍ତା ମରାମତି ପାଇଁ ତାଙ୍କୁ ଭଲ କଣ୍ଟ୍ରାକ୍ଟ ଗୋଟେ ମିଳିଥିଲା ଅନେକ ଦିନପରେ । ଏତେ ପ୍ରତିଯୋଗିତା ଭିତରେ ଏହା ସେ ପାଇପାରି ଥିବାରୁ ନିଜକୁ ଅଭିନନ୍ଦନ ଜଣାଇ ଥିଲା । ସେ ଅନ୍ୟ କଣ୍ଟ୍ରାକ୍ଟରମାନଙ୍କ ଠାରୁ ଶୁଣିଥିଲା ଯେ ବି.ଡ଼ି.ଓ. ଏବଂ ଓଭରସିଅର ଇତ୍ୟାଦିଙ୍କୁ ଯେଉଁ ଶତକଡ଼ା ଦଶଭାଗ ଟଙ୍କା ଅଲିଖିତ ନିୟମ ଅନୁସାରେ ଦେବାକୁ ପଡ଼ୁଥିଲା, ତାହା ଏବେ ବାର ଭାଗକୁ ବଢ଼ି ଯାଇଚି । ଏଇ ଅଧିକ ଦୁଇଭାଗ ନିର୍ବାଚନ ପାର୍ଣ୍ଣିକୁ ଯିବ ବୋଲି କୈଫିୟତ ଦିଆ ଯାଉଥିଲେ ମଧ୍ୟ, ସେ ଏବଂ ଅନ୍ୟମାନେ ଭଲ ଭାବରେ ଜାଣିଥିଲେ ଯେ, ଏହା ଯିବ ଦଳର ବ୍ଲକ୍ ପ୍ରେସିଡ଼େଣ୍ଟ କୁମର ଏବଂ ତାକୁ ଏବେ ଅନୁସରଣ କରି ଦେଶ ସେବା ପାଇଁ ଆଗେଇ ଆସିଥିବା ଓ ଅନ୍ୟ ସମସ୍ତ କାମ ପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ ଥିବା କେତେ-ଜଣଙ୍କ ପକେଟକୁ ।

ସେ ସ୍ଥିର କରିଥିଲା, ଏଥର ପ୍ରତିବାଦ କରିବ, କିନ୍ତୁ ବର୍ଷ ପୂର୍ବେ ସାରଦର୍ପରେ ସେ ଯେମିତି ଖୋଲା ଲୋନ୍ ନେବା ବେଳକୁ ପ୍ରତିବାଦ କରି ସମସ୍ତଙ୍କୁ ସ୍ତବ୍ଧ କରି ଦେଇଥିଲା, କିନ୍ତୁ ହେଲା କ'ଣ ? ମନ୍ତ୍ରମୁଗ୍ଧ ହେବାଭଳି ବାରଭାଗ ଦେଇଥିଲା ଏବଂ ପରବର୍ତ୍ତୀ କଣ୍ଟ୍ରାକ୍ଟ ପାଇବା ସକାଶେ ଖୋଲାଖୋଲି ଭାବରେ ନିଜର ବ୍ୟାକୁଳତା ପ୍ରକାଶ କରିଥିଲା ।

ପରାଜୟବୋଧକୁ ଆଶ୍ୱାସନା ଦେଇଥିଲା ଯେ, ସେ ଜୀବନର ନିର୍ଦ୍ଦିଷ୍ଟ ଦିଗରେ ହିଁ ଯାଉଚି, ନ ହେଲେ ଅନ୍ୟମାନେ ଆଗେଇ ଯିବେ ଏବଂ ଶେଷରେ ତା'ର ନୈତିକତା ତାକୁ ବାସ୍ତବରେ ପଙ୍ଗୁ ହିଁ କରିଦେବ ।

ପଞ୍ଚାୟତ ଅଫିସ୍ ପାଖରେ ପହଞ୍ଚିବା ମାତ୍ରେ କାହାର ଡାକରେ ତା'ର ମୋଟର ସାଇକେଲ ଅଟକି ଗଲା ।

—"ତୁମ ଗାଁରୁ ନୂଆ ହୋଇ ପଞ୍ଚାୟତ ମେମ୍ବର ହୋଇଥିବା ଲୋକ ଦୁଇଜଣଙ୍କ ବିରୁଦ୍ଧରେ ଲମ୍ବା ଚଉଡ଼ା ଦରଖାସ୍ତ ।" ପରିଚିତ ଲୋକ ଜଣକ କହିଲା ।

—କ'ଣ ଦରଖାସ୍ତ ?" ବିସ୍ମିତ ହେଲା ନମାଇଁ କଥାର ତାତ୍ପର୍ଯ୍ୟ ବୁଝି ନ ପାରି ।

—"ଆମେ ଶୁଣିବାକୁ ପାଉଛୁ ଯେ, ତୁମ ଗାଁର ପ୍ରାୟ ସମସ୍ତ ଲୋକଙ୍କ ଦସ୍ତଖତ ଥାଇ ଦରଖାସ୍ତ ଗୋଟେ ଦିଆଯାଇଛି । ଯେଉଁ ଦୁଇଜଣ ମେମ୍ବର ନୂଆ ହୋଇ ଆସିଥିଲେ, ସେମାନଙ୍କ ବିରୁଦ୍ଧରେ ଅନେକ ଅଭିଯୋଗ । ତୁମ ଗାଁର କୁଆଡ଼େ ଗୃରି ପାଞ୍ଚ ଜଣ ଲୋକ ନିଜ ଇଚ୍ଛା ଅନୁସାରେ ଏ ଦୁଇଜଣଙ୍କୁ ମେମ୍ବର କରି ପଠାଇଚନ୍ତି । ଏମାନଙ୍କ ବଦଳରେ ଆଉ ଦୁଇଜଣ ମେମ୍ବର ହେବେ ବୋଲି ଲେଖା ଯାଇଚି ସେଇ ଦରଖାସ୍ତରେ । ତୁମ ଗାଁ କଥା ତୁମେ ଜାଣି ପାରିନ କେମିତି ?" ସେ କହିଲା ବିଦ୍ରୂପର ହସ ହସି ।

ସମ୍ପୂର୍ଣ୍ଣ ଚିନ୍ତାଶୀଳ ହେବାପାଇଁ ଏହା ହିଁ ଯଥେଷ୍ଟ ଥିଲା । ରାଧାକାନ୍ତ ସହିତ ସେ କେତେବେଳେ ଲକ୍ଷ୍ମୀ ମାର୍କେଟରେ ପହଞ୍ଚି ଯାଇଥିଲା, ତାହା ତାକୁ ଜଣା ନ ଥିଲା । ରାଧାକାନ୍ତ କେବଳ କହୁଥିଲା, ତୁମେ ସବୁ ଡରୁଚ । ସେଥିପାଇଁ କଥାଟା ବଢ଼ି ଯାଉଚି । ତୁମେ ଥରେ ହଁ କରିଦିଅ, ଆଉ ଦେଖ ମୁଁ ଏକୁଟିଆ ଯଦି ସାବାଡ଼୍ ନ କରି ଦେଇଚି, ତେବେ ମୋ ନାଁ ଧରିବ ନାହିଁ । ଲକ୍ଷ୍ମୀମାର୍କେଟରେ ପହଞ୍ଚିବା ବେଳକୁ ଗରାଖମାନଙ୍କର ଅଭିଯୋଗ । ନିତାନ୍ତ ବାଜେ ଦିନଟାଏ । ନମାଇଁ ଗୋଟିଏ ମୁହୂର୍ତ୍ତ ପାଇଁ ଉତ୍ସାହିତ ହୋଇ ପଡ଼ିଥିଲା । ଦରଖାସ୍ତ କଥା ଯଦି ସତ ହୁଏ, ତେବେ କୁମରକୁ ହାମୁଡ଼େଇ ଦେବା ପାଇଁ ଏହାଠାରୁ ବଡ଼ ସୁଯୋଗଟିଏ ସେ କମ୍ପା ଗାଁ ଲୋକେ କେବେ ପାଇବେ ନାହିଁ । ଗୋଟାଏ କିଛି କରାଯାଇପାରେ । କିଛିଦିନ ତଳେ ସଦାଶିବ ତାକୁ କହିଥିଲା, କୁମର ତାକୁ କେଉଁ ପ୍ରକାର ଧମକ ଦେଇଚି ।

ନମାଇଁ ଏତେ ଅସ୍ଥିର ହୋଇ ପଡ଼ିଲା ପ୍ରଗଲ୍‌ଭ ଆନନ୍ଦରେ ଯେ, ଚୁପ୍‌ଚାପ୍ ବସି ପାରିଲା ନାହିଁ ଚୌକିରେ । କୁମରକୁ ଉଚିତ ଶିକ୍ଷାଟେ

ନ ଦେଲେ ରକ୍ଷା ନାହିଁ ଆଉ । କେଜାଣି, ତାକୁ ହୁଏତ ଜେଲ୍ ହୋଇ-ଯାଇପାରେ । ଗାଁର ଦୂଷିତ ଆବର୍ଜନା ବୋଲି ଅନେକ ଦିନୁ ପରିଚିତ ହୋଇଥିବା କୁମର ଆବଦ୍ଧ ହୋଇ ରହିପାରେ ଜେଲ୍‌ର ଉଚ୍ଚ ପାଚେରୀ ଓ ସୁଦୃଢ଼ ରେଲିଙ୍ଗ୍ ଅନ୍ତରାଳରେ । ନିମାଇଁ ଠିକ୍ କରିନେଲା ଯେ, ଯାହାହେଉ ପଛେ, ସେ ଏଇ ସୁଯୋଗକୁ ହାତଛଡ଼ା ହେବାକୁ ଦେବ ନାହିଁ । ଆଜି କଣ୍ଟ୍ରାକ୍ଟ ଟଙ୍କା ଆଣିବାରେ ସେ ଯେପରି ଅପମାନିତ ହୋଇଥିଲା, ତା'ର ପ୍ରତିଶୋଧଟେ ଦରକାର ।

ସେ ବାରନ୍ଦା ଉପରକୁ ଉଠି ଆସିଲା । ଗାଁ ମେମ୍ବର ସଂକ୍ରାନ୍ତରେ ପଡ଼ିଥିବା ଦରଖାସ୍ତ କଥା କହିଲା ଉଚ୍ଚ ଉତ୍ତେଜିତ ସ୍ୱରରେ । ଘୋଷଣା କଲା—"ସେ ଦରଖାସ୍ତ କିଏ ଦେଇଚି କେଜାଣି ? କିନ୍ତୁ ଏଥିପାଇଁ ମୋକଦ୍ଦମା ଆରମ୍ଭ ହେବ । ସଦାଶିବ ଓ ଶତ୍ରୁଘ୍ନଙ୍କୁ ଧମକ ଦିଆ ଯାଇଥିଲା ଇସ୍ତଫା ପାଇଁ । ସେମାନଙ୍କଠାରୁ ହିଁ ମୋକଦ୍ଦମା ଆରମ୍ଭ ହେବ ।"

ନିମାଇଁ ଚାହୁଁଥିଲା, ତା'ର ଏଇ ଘୋଷଣା ଗାଁସାରା ପ୍ରଚାର ହେଉ । ଗୋଟାଏ ମୁକାବିଲାର ବାତାବରଣ ସୃଷ୍ଟି ହେଉ ଏଠାରେ । ସେ ଜିଦ୍‌ଖୋର ହୋଇ ପଡ଼ିଲା । ସେ ଚାହେଁ, ସମସ୍ତଙ୍କ ପ୍ରକୃତି ଖୋଲା-ଖୋଲି ଭାବରେ ପ୍ରକାଶ କରିଦେବା ପାଇଁ ।

ଗାଁରେ ଆଉ ଅଛି କ'ଣ ? ସମସ୍ତ ପାରମ୍ପରିକ ଅନୁଷ୍ଠାନ ଖତମ ହୋଇ ସାରିଲାଣି କେବେଠାରୁ । ଗାଁ ବ୍ୟାପାର କ'ଣ ଅଛି ଗାଁ ଲୋକଙ୍କ ଅକ୍ତିଆରରେ ଜମିଖଣ୍ଡକୁ କେନ୍ଦ୍ର କରି କିଛି ମାସ ପୂର୍ବେ ସୁଦର୍ଶନ ଓ ଯୁଧିଷ୍ଠିର ମଧ୍ୟରେ ରକ୍ତାକ୍ତ ଗଣ୍ଡଗୋଳ ହୋଇଥିଲା । ସୁଦର୍ଶନ ସାନ ଭାଇକୁ ବାଡ଼େଇଲା ରାଗରେ ଅନ୍ଧ ହୋଇ । ତା' ବାପା-ମା' ହସ୍ତକ୍ଷେପ କରିବାରୁ ଦୁହେଁଯାକ ଆହତ ହେଲେ । କଥାଟାର ମୀମାଂସା ହୋଇ ପାରିଥାନ୍ତା ଗାଁରେ । ଯୁଧିଷ୍ଠିରକୁ କିନ୍ତୁ କଏ ଶିଖେଇ ଦେଲା । ସେ ଧାଇଁଲା ଥାନାକୁ ଏତଲା ଦେବା ପାଇଁ । ଆସିଲା ପୋଲିସ । ବାନ୍ଧିନେଲା ସୁଦର୍ଶନକୁ । ମାମଲାଟା ଏ ପର୍ଯ୍ୟନ୍ତ କଚେରୀରେ ବିଚାରାଧୀନ ଅଛି । ଦି'ଭାଇ ଧାଉଁଚନ୍ତି ତାରିଖ ପରେ ତାରିଖ ଡାକରାରେ । ଦୁହିଁଙ୍କ ଘର ଉଚ୍ଛନ୍ନ ହେବାକୁ ବସିଲାଣି ।

ଅଇଁଠୂର ଘର ଉହ ଭିତରକୁ ପଶି ଆସିଲା ହଳଧରର ବାଡ଼ । ଅଇଁଠୂ ଅମିନ ଆଣିଲା । ମପାମପି କରି ଅମିନ କହିଲା ଯେ, ହଳଧରର ବାଡ଼ ଅଇଁଠୂ ଉହ ଭିତରକୁ ଦୁଇଫୁଟ ମାଡ଼ି ଆସିଛି । ହଳଧର ଆଣିଲା ଆଉ ଜଣେ ଅମିନ । ତାକୁ ଲାଞ୍ଚ ଦେବାରୁ ସେ ରାୟ ଦେଲା ଯେ, ହଳଧରର ବାଡ଼ ତା' ନିଜ ଜମି ସୀମାରେ ରହିଛି । ଅଇଁଠୂ ଫୋପାଡ଼ି ଦେଲା ହଳଧରର ବାଡ଼ । କେଶ୍ ଆରମ୍ଭ ହୋଇଗଲା । କେବେ ତା'ର ଫଇସଲା ହେବ କେଜାଣି ?

ତେଣୁ ଗାଁ ମେମ୍ବର ବ୍ୟାପାରରେ ଆଉ ନିରାଶ୍ରୟ ହୋଇ ବସି ରହିବ କାହିଁକି ନିମାଇଁ ? ଗାଁ ଲୋକେ ବାଛିଥିବା ଲୋକ ଦୁଇଜଣଙ୍କୁ ଯଦି ଏଭଳି ଅନ୍ୟାୟରେ ପଞ୍ଚାୟତରୁ ବହିଷ୍କାର କରି ଦିଆଯାଏ, ତେବେ ନ୍ୟାୟ ଛଡ଼େଇ ଆଣିବାକୁ ପଡ଼ିବ । ନିମାଇଁ ପ୍ରତିଜ୍ଞାବଦ୍ଧ ହୋଇ ଯାଉଥିଲା ଏବଂ ତା ମୁହଁର ମାଂସପେଶୀ କଠିନ ହୋଇ ଯାଉଥିଲା ।

ଏତିକିବେଳେ ସେଇଠି ପହଞ୍ଚିଗଲେ ଦେବ ଆଗ୍ରୁର୍ଯ୍ୟ । ବିନା ଉପକ୍ରମଣିକାରେ କହିଲେ—"ଆରେ, ନିମାଇଁ, ତୋ ପାଖରେ ଗୋଟେ ଜରୁରୀ କାମ ଥିଲା ।"

ତାଙ୍କୁ ଦେଖିବାକ୍ଷଣି ଗୋଟାଏ ଅପ୍ରକାଶିତ ସମବେଦନାରେ ନରମ ହୋଇଯାଏ ନିମାଇଁ । ଦେଖେ, ଗୋଟାଏ ଗୌରବମୟ ସତ୍ତ୍ୱର ଅବକ୍ଷୟକୁ । ତାଙ୍କୁ ଦେଖିବା ମାତ୍ରେ ହିଁ ସବୁ ଜିନିଷ ପ୍ରତି ନିମାଇଁର ଆଗ୍ରହ ମଉଳିଯାଏ । ଦେବ ଆଗ୍ରୁର୍ଯ୍ୟ ଗୋଟାଏ ବାର୍ତ୍ତା ହୋଇପଡ଼ନ୍ତି ଜୀବନ ଓ ସଂସାର ସନ୍ଧାନ୍ତରେ ।

—"କ'ଣ କୁହ ।" ନିମାଇଁ ଶାନ୍ତ ସ୍ୱରରେ ଜବାବ ଦେଲା । ବୋଧହୁଏ ଦେବ ଆଗ୍ରୁର୍ଯ୍ୟ ଟିକିଏ ଇତସ୍ତତଃ ହେଲେ । ତାହା ଲକ୍ଷ୍ୟକରି ନିମାଇଁ ପଚାରିଲା—"ଏଇଠି କହିବ, ନା ଘର ଭିତରକୁ ଯିବା ?"

ଦେବ ଆଗ୍ରୁର୍ଯ୍ୟ ସତେ ଯେପରି ପୃଥିବୀ ପ୍ରଦକ୍ଷିଣ କରି ଫେରିଚନ୍ତି । ଏତେ ଅବସନ୍ନ ଦେଖା ଯାଉଥିଲେ ସେ । ଧିରେଁ ସହିଁ ହୋଇ କହିଲେ—"ସେମିତି କିଛି ବଡ଼ କଥା ନୁହେଁ । ତେବେ, ଚାଲ୍ ଘର ଭିତରକୁ ।"

ଚେୟାରରେ ବସି ଗୁରିଆଡ଼େ ଦୃଷ୍ଟି ବୁଲାଇ ଆଣିଲେ । ସମନାରେ ଠିଆ ହୋଇଥିବା ନିମାଇଁକୁ ଗୁହିଁ କହିଲେ—"ଆମ ବାବୁଲି ଲଗେଇଚି, ଗୋଟେ ଦୋକାନ ଦେବାପାଇଁ ।"

—"ଭଲ କଥା ।" ନିମାଇଁ ମନ୍ତବ୍ୟ ବାଢ଼ିଲା ଦେବ ଆଗ୍ରୁର୍ଯ୍ୟ ନୀରବ ହେବା ପରେ । ସେ ବୁଝିପାରୁ ନ ଥିଲା ଏ ବ୍ୟାପାରରେ ତା'ର ଭୂମିକା କ'ଣ ।

ସେ କହିଲେ—"ସେଇଟା ପିଲାଟାଏ । ବେପାର କ'ଣ କରି-ପାରିବ ? ଘରେ ବସିଚି ଖାଲିଟାରେ । ଅଥୟ ହେଉଚି । ଏ ଘରେ ଆମର ଆଉ କ'ଣଟେ ଅଛି ଯେ, ଭଲ ଲାଗନ୍ତା ତାକୁ ?" ପରାଜିତ ହୋଇଥିବା ଓ ପରେ ମରି ଯାଇଥିବା ଜଣେ ସମ୍ରାଟଙ୍କର ଅତୃପ୍ତ ଆତ୍ମା ସତେ ଯେପରି ବାହୁନି ଉଠିଲା ଭିତର ନିସ୍ତବ୍ଧ ପ୍ରହରରେ ।

—"ନାଇଁ, ସେ ଦୋକାନଟେ ଦେଉ । ପିଲା ବୋଲି ତା ଉପରେ ତୁମର ଆସ୍ଥା ରହୁନ କାହିଁକି ? କି ଦୋକାନ ଦେବ ?" ନମାଇଁ ପଚାରିଲା ତାଙ୍କୁ ଉତ୍ସାହିତ କରିବା ପାଇଁ ।

—"ଆଉ ସେ ପାନ ଦୋକାନଟେ ଦେଉ । ବିସ୍କୁଟ୍, ଲଜେଞ୍ଜ ଇତ୍ୟାଦି ରଖୁ । ଦେଖିବା କେମିତି ଚାଲୁଚି ।" ସେ ନିଜର ଯୋଜନା ପ୍ରକାଶ କଲେ ।

ଲକ୍ଷ୍ମୀ ମାର୍କେଟରେ ସେତେବେଳକୁ ଏଭଳି ଦୋକାନ ହୋଇ ସାରିଥିଲା । ଗୋଟେ ମଫସଲ ଗାଁରେ ପୁଣି ଗୋଟେ ଦୋକାନ ଖୋଲିବାର ବିଜ୍ଞତା ବୁଝିପାରିଲା ନାଇଁ ନମାଇଁ । ତେବେ, ବାବୁଲା ଆଉ ଅଧିକ କ'ଣଟେ ବା କରିପାରନ୍ତା ? ନମାଇଁ ନୀରବ ରହିଲା ।

—"ତୁ ଟିକିଏ ସାହାଯ୍ୟ କର ତାଙ୍କୁ ।" ଦେବ ଆଚାର୍ଯ୍ୟଙ୍କ ସ୍ୱର ଶୁଭିଲା ଗୋଟାଏ କରୁଣ ପ୍ରାର୍ଥନା ଭଳି । "ମୋ ହାତରେ ଟଙ୍କା ନାଇଁ ଯେ ଗୋଟେ କାଠ କେବିନ୍ କରିଦେଇ ପାରିବି ତା ପାଇଁ । ସେ ଦୋକାନ ଖୋଲିବ ତୋ ଦୋକାନ ବାରନ୍ଦାର ଗୋଟିଏ କୋଣକୁ ।"

ନମାଇଁ ଓଦା ହୋଇଗଲା ସହାନୁଭୂତିରେ । କହିଲା— "ଏଇଥିପାଇଁ ତୁମେ ଏତେ ବ୍ୟସ୍ତ ହେବା ଦରକାର ନାଇଁ । ମୋ ନୂଆ ଘରେ କବାଟ ତିଆରିବା ପାଇଁ ବଢ଼େଇମାନେ ଅଛନ୍ତି । ସେମାନଙ୍କୁ କହିଦେଲେ ପାନ ଦୋକାନ ପାଇଁ ଭଲ କାଠ ବାକ୍ସଟେ ତିଆରି କରିଦେବେ । ଗୋଟିଏ ପଇସା ତୁମେ ଖର୍ଚ୍ଚ କରିବା ଦରକାର ନାଇଁ । ତା ପାଇଁ ଯାବତୀୟ ସଉଦା ମୋ ନାଁରେ ମୁଁ ନେଇ ଆସିବି ।"

ତଥାପି ଏତେ ବିଶାଳ ଓ ପରିପୂର୍ଣ୍ଣ ହେବ ବୋଲି ଦେବ ଆଚାର୍ଯ୍ୟଙ୍କର କାଙ୍କ୍ଷିତ ମନ ଆଶାକରି ନ ଥିଲା । ଠିଆହୋଇ କମ୍ପିତ ହାତ ପକାଇଲେ ନମାଇଁ କାନ୍ଧରେ କୃତଜ୍ଞତାର ସଙ୍କେତ ରୂପେ । ତାଙ୍କ କମ୍ପିତ ଓଠରୁ କୌଣସି କଥା ବାହାରି ପାରିଲା ନାଇଁ । ତାଙ୍କର ପୁଣି ଥରେ ହୃଦ୍‌ବୋଧ ହେଉଥିଲା ଯେ, ସ୍ୱତନ୍ତ୍ର ଅନ୍ଧକାର ସତ୍ତ୍ୱେ ପୂର୍ବଦିଗ ସବୁବେଳେ ପ୍ରତିଶ୍ରୁତିପୂର୍ଣ୍ଣ । କେବଳ ଅପେକ୍ଷା କରିବା କଥା ।

ଜୀବନରେ ପୂର୍ବବତ ବୋଲି ଗୋଟାଏ ବିଗ ଥାଏ ? ପ୍ରତିଶ୍ରୁତି-ପୂର୍ଣ୍ଣ ମୂହୂର୍ତ୍ତଟି ଅପେକ୍ଷା କରିଥାଏ ଯନ୍ତ୍ର ଅନ୍ଧକାରକୁ ତରଳାଇ ଦେବା ପାଇଁ ? କିଏ ଏଠାରେ ନିଶ୍ଚିତ ଥାଏ ଯେ, ଜଣେ ବାବୁଲି ଉତ୍ତର ଆସିବ ଆଲୁଅ ଧରି ଦେବ ଆଗୃର୍ଯ୍ୟ ଭଳି ଗୋଟାଏ କ୍ଷୟିଷ୍ଣୁ ସୂର୍ଯ୍ୟ ଲିଭିଯିବା ଆଗରୁ ? ଏମିତି ଯଦି ହେଉଥାନ୍ତା, ତେବେ ଦେବ ଆଗୃର୍ଯ୍ୟ ସେଇ ଦିନ ରାତିରେ ଆଦୌ ଭାବି ନ ଥାନ୍ତେ ଯେ ସୂର୍ଯ୍ୟୋଦୟ ଦେଖିବାରେ ଆଉ କୌଣସି ଉତ୍ତେଜନା ନାହିଁ । ବରଂ ଭଲ ରାତାରାତି କେଉଁଆଡ଼େ ହଜିଯିବା ଓ ଅସ୍ତିତ୍ୱ ହରାଇବା ।

ରାତି ଆଠଟା ବେଳେ ଖିଆପିଆ ସରିଯାଏ । ଲଣ୍ଠନ ଜଳୁଥିଲା ଅଭାବଗ୍ରସ୍ତ ଆଲୁଅ ନେଇ । ଥାଳରେ ବଢ଼ାଯାଇଥିବା ଅଭାବଗ୍ରସ୍ତ ଖାଦ୍ୟ ଧରି ବସିଥିଲେ ଦେବ ଆଗୃର୍ଯ୍ୟ ଏବଂ ଏବେ ଅତ୍ୟନ୍ତ ଅବାଧ ହୋଇ ପଡ଼ିଥିବା ହାତ ଯିବା ଆସିବା କରୁଥିଲା ଥାଳରୁ ଭୋକିଲା ପାଟି ପର୍ଯ୍ୟନ୍ତ । ତାଙ୍କ ପାଟିକୁ ଦେଖିଲେ ଯେ କୌଣସି ଲୋକ ଭାବି ନେବ ଯେ, ଏଇଭଳି ଗୋଟିଏ ଥାଳି କାହିଁକି, ଅସଂଖ୍ୟ ଥାଳରେ ବଢ଼ାଯାଇ-ଥିବା ଅପରିମିତ ଖାଦ୍ୟ ତାଙ୍କୁ ସନ୍ତୁଷ୍ଟ କରିପାରିବ ନାହିଁ ଜମା; ଯେମିତିକି ଜଳୁଥିବା ଲଣ୍ଠନ ଆଲୁଅର ହାତ ଆଉ କେବେ ପହଞ୍ଚି ପାରିବ ନାହିଁ ସେ ଘରେ ସ୍ତୂପୀକୃତ ହୋଇଥିବା ଅନ୍ଧାରର ଶେଷ କୋଣ ଯାଏଁ ।

ଛୁଆ ତିନଟା ଖାଇସାରି ଉଠି ଯାଇଥିଲେ ଆର କୋଠରିକୁ । ଝିଅ ସବୁବେଳେ ମା'କୁ ଘର କାମରେ ସାହାଯ୍ୟ କରେ, କିନ୍ତୁ ଦେବ ଆଗୃର୍ଯ୍ୟ ଖାଇବା ପୂର୍ବରୁ ସେ ନିଶ୍ଚୟ ଅନ୍ୟମାନଙ୍କ ସହିତ ଖାଇନେବ—ତାହା ହିଁ ଥିଲା ସେ ଘରେ ଦେବ ଆଗୃର୍ଯ୍ୟଙ୍କ ନିର୍ଦ୍ଦେଶ । ତାଙ୍କୁ ଖାଇବାକୁ ଡକାହେଲେ ସେ ପଚ୍ଚାରନ୍ତି—ଛୁଆମାନେ ଖାଇସାରି-ଲେଣି ? ଆର କୋଠରିରେ ସେମାନେ ହୁଏତ କେଉଁ ବିଷୟରେ କଥାବାର୍ତ୍ତା ହେଉଥନ୍ତି । ନିର୍ଦ୍ଦିଷ୍ଟ ଭାବରେ ଶୁଭୁନାହିଁ କିଛି ।

ସେଇ ରୁଗ୍ଣ ଆଲୋକ ମଧ୍ୟ ଚରମ ଭୟଙ୍କର ଅନ୍ଧକାରକୁ ଆବିଷ୍କାର କରିବାରେ ସାହାଯ୍ୟ କରିପାରେ ବୋଲି ଦେବ ଆଗୃର୍ଯ୍ୟ ଜାଣି ନ ଥିଲେ ଆଗରୁ । ହଠାତ୍ ପାଟି ପାଖକୁ ଉଠୁଥିବା ହାତ

ରହିଗଲା ଥାଳ ଉପରେ । ସନ୍ଦିଗ୍ଧ ଥିବା ପାଟି ସ୍ତବ୍ଧ ହୋଇଗଲା । ପ୍ରଥମେ ଅବିଶ୍ୱାସ ଓ ତା'ପରେ ଭୟ । ପୁଣି ଅସହାୟତା ଓ କ୍ରୋଧ । ଗୋଟାକ ପରେ ଗୋଟାଏ ଏଇ ଆବେଗଗୁଡ଼ିକର ପାଣ୍ଡୁଲିପି ହୋଇ ପଡ଼ିଲା ଦେବ ଆଗ୍ରୱାଲଙ୍କ ମୁହଁ । କିଏ କହିଲା ତାଙ୍କର ମୁହଁର ଫର୍ଦ୍ଦ ଏବେ ମଳିନ ହୋଇ ଯାଉଚି, ବାହାରି ଆସୁଚି ହନୁ ହାଡ଼, ପଶିଯାଉଚି ଗାଲ ଓ ଆଖି ହୋଇ ପଡ଼ୁଚି କୋଟରଗତ ଏବଂ ପାଣ୍ଡୁର ? ପାଞ୍ଚ-ଛ' ଦିନର ଖିଅର ହୋଇ ନ ଥିବା କଳା-ଧଳା ଦାଢ଼ିପୂର୍ଣ୍ଣ ସେଇ ମୁହଁ ଉପରେ ଏତେଗୁଡ଼ାଏ ଆବେଗ ପ୍ରାଞ୍ଜଳ ହୋଇ ପାରିବ ବୋଲି କାହାର ସନ୍ଦେହ ହୁଏ ?

ସେ'ଘରୁ ବାହାରି ଯାଉଥିବା ଇନ୍ଦୁ ଦେଖିନେଲା ଦେବ ଆଗ୍ରୱାଲଙ୍କ ମୁହଁକୁ । ନିର୍ଭୁଲ ଭାବରେ ପଢ଼ିପାରିଲା ସେ ମୁହଁର ଭାଷାକୁ ଏବଂ ଅଟକିଗଲା । ଗତିଶୀଳତା ତା'ର ଜଖମ ହୋଇଗଲା ଏକ ଦୁର୍ନିବାର ପଙ୍ଗୁତାରେ । ଦେବ ଆଗ୍ରୱାଲ ସେଇଭଳି ଚାହିଁ ରହିଥିଲେ ତା' ମୁହଁକୁ ଏବଂ ସେ ପଛଘୁଞ୍ଚା ଦେବା ଆରମ୍ଭ କରିଥିଲା ସମସ୍ତ ଭାଷାଥିବା ସେହି ନୀରବ ଦୃଷ୍ଟି ସାମନାରେ । ପ୍ରଥମ ଥର ପାଇଁ ଅମାନ୍ୟ କଲାଭଳି ଭଙ୍ଗୀ ନେଇ ଇନ୍ଦୁ ଏଡ଼ାଇ ପାରିଲା ନାହିଁ ଦେବ ଆଗ୍ରୱାଲଙ୍କ ଦୃଷ୍ଟିର କୈଫିୟତକୁ ।

ଦେବ ଆଗ୍ରୱାଲ କିଛି କହିବାକୁ ଚେଷ୍ଟା କଲେ । ନା, ଜମା ହେଲା ନାହିଁ । ଅନେକଗୁଡ଼ାଏ ପ୍ରଶ୍ନ ପ୍ରତିଯୋଗିତା ଆରମ୍ଭ କରିଥିଲେ ସର୍ବପ୍ରଥମେ ଉଚ୍ଚାରିତ ହେବା ପାଇଁ । ଗୋଟାଏ ମାରାତ୍ମକ ଉଦ୍‌ବେଗ ଓ ଉତ୍କଣ୍ଠା ତାଙ୍କୁ ସଙ୍କୁଚିତ ଓ ତାଙ୍କ ଓଠକୁ ଶୁଖିଲା କରି ପକାଇଥିଲା । ସେ ଚାହୁଁଥିଲେ ଯେ, ଏଇ ଉଦ୍‌ବେଗ ଓ ଉତ୍କଣ୍ଠା ମିଛ ହେବା ଦରକାର ତାଙ୍କର ବଞ୍ଚିରହିବା ପାଇଁ । ମିଛ ହେବା ଆବଶ୍ୟକ ତାଙ୍କ ମନରେ ସୃଷ୍ଟି ହୋଇଥିବା ଅନିଶ୍ଚିତ ସନ୍ଦେହ ।

ଅନେକ ସମୟର ନୀରବତା ଓ ସଂଘର୍ଷ ପରେ ସେ ପଚାରିଦେଲେ —"ତୋ'ର କ'ଣ ହୋଇଚି ?"

ପ୍ରଶ୍ନଟା ଦୁର୍ବୋଧ ହୋଇ ଯାଉଚି, ଦେବ ଆଗ୍ରୀର୍ଯ୍ୟ ନିଜ ପ୍ରଶ୍ନକୁ ଆହୁରି ନିର୍ଦ୍ଦିଷ୍ଟ କରିବା ଉଚିତ ବୋଲି ଇନ୍ଦୁ ମୁହଁର ଛଳନା କୃତକାର୍ଯ୍ୟ ହୋଇ ପାରିଲା ନାହିଁ ଆଦୌ । ତା' ମୁହଁର କୃତ୍ରିମ ଜିଜ୍ଞାସା ଧରାକି ପଡ଼ିଲା ସବୁ କଥା ସ୍ୱୀକାର କରି ନେଉଥିବାର ଅପରାଧବୋଧ ଉପରେ ।

—"କିଛି କହୁନୁ ଯେ ?" ଦେବ ଆଗ୍ରୀର୍ଯ୍ୟଙ୍କ ଆତଙ୍କିତ ସ୍ୱର ଗ୍ୟାଲେଞ୍ଜ କରୁ ନ ଥିଲା ଇନ୍ଦୁକୁ; ବରଂ ଏହା ବ୍ୟାକୁଳ ଥିଲା ଯେ ସବୁ ସନ୍ଦେହ ଓ ଆଶଙ୍କା ମିଛ ବୋଲି ଇନ୍ଦୁ କହିଦେଉ ଦୃଢ଼ତାର ସହିତ ।

—"ଚୂପ୍ ହେଲୁ କାହିଁକି ?" ଅଧୈର୍ଯ୍ୟ ହୋଇ ପଡ଼ିଲେ ସେ । ପୁଣି ପୁନରାବୃତ୍ତି କଲେ ନିଜ ପ୍ରଶ୍ନର—"କହ ।" ଦେବ ଆଗ୍ରୀର୍ଯ୍ୟ ଏଭଳି ଦାବି କରି ନ ଥିଲେ ଆଗରୁ କେବେ । ନିଜ ଭାଗ୍ୟକୁ ମଧ୍ୟ ସେ କେବେ ଏତେ ଅଧୈର୍ଯ୍ୟ ହୋଇ ପଚାରି ନ ଥିଲେ ଜୀବନର ଦୀର୍ଘଶ୍ୱାସ ପାଇଁ ।

ଇନ୍ଦୁର କୌଣସି ଉତ୍ତର ନ ଥିଲା । ସେ ଆଉ ଗ୍ୟହିଁ ପାରିଲା ନାହିଁ ଦେବ ଆଗ୍ରୀର୍ଯ୍ୟଙ୍କୁ । ତାଙ୍କ ସନ୍ଦେହ ଓ ଆଶଙ୍କାକୁ ଦୃଢ଼ୀଭୂତ କରି ସେ ପଛକୁ ବୁଲି ପଡ଼ିଲା ଓ ଲୁଗା ପଣତ ମୁହଁରେ ତାଙ୍କି କୋହ ଆୟତ୍ତ କରିବାକୁ ଚେଷ୍ଟା କଲା ।

ଦେବ ଆଗ୍ରୀର୍ଯ୍ୟ ଅନୁଭବ କଲେ ତାଙ୍କ ଭିତରର ଅବଶିଷ୍ଟ ସତ୍ତା ସତେ ଯେପରି ଗୋଟାଏ ଦୃଢ଼ ଶକ୍ତିକୁ ସହି ନ ପାରି ଦୁଇଖଣ୍ଡ ହୋଇ ଯାଇଚି । ମରିଯାଇଥିବା ଲୋକ ପାଖରେ ଅସହାୟ ଆତ୍ମୀୟ ଜଣେ ବସି 'କଥା କହ', 'ଏଣେ ଗ୍ୟହାଁ' ବୋଲି ଅନାବଶ୍ୟକ ଅଳି କଲା ଭଳି ଦେବ ଆଗ୍ରୀର୍ଯ୍ୟ ଉଠିଗଲେ ଇନ୍ଦୁ ପାଖକୁ । ଏକ ପରାମର୍ଶ ଦେଲେ—"କହିଦେ, ସବୁ ମିଛ ବୋଲି । କହ, ତୋ ପେଟ ଏବେ ବି ନିର୍ମଳ ଅଛି । ମୁଁ ତୋତେ ଅଯଥା ସନ୍ଦେହ କରୁଚି ବୋଲି ତୁ କ୍ରୋଧାନ୍ୱିତ ହୋଇ ଯା ।"

ନା, ଇନ୍ଦୁ କହିପାରିଲା ନାହିଁ କିଛି । ସମସ୍ତ ସନ୍ଦେହ ଓ ଆଶଙ୍କା ରୂପାନ୍ତରିତ ହୋଇଗଲା ବାସ୍ତବତାରେ, ଗ୍ୟଇ-ଆଲୁଅ ଘରେ । ଦେବ ଆଗ୍ରୀର୍ଯ୍ୟଙ୍କ ଦେହ ଚିପୁଡ଼ି ହୋଇଗଲା । ଏହା ପରେ କ'ଣ ସେ କରିବା ଉଚିତ, ତାହା ଆଦୌ ନିର୍ଦ୍ଦିଷ୍ଟ ହୋଇ ପାରିଲା ନାହିଁ ତାଙ୍କ ଆଗରେ ।

ଚୋଟାଏ ଭୟଙ୍କର ଶୂନ୍ୟ ଅନ୍ଧକାର ଭିତରେ ସେ ଯେପରି ତଳକୁ ଖସି ଯାଉଚନ୍ତି ।

ଦେବ ଆଗୃର୍ଯ୍ୟ ଗୃଲି ଆସିଲେ ଇନ୍ଦ୍ର ସାମନାକୁ ଏବଂ ଚନ୍ଦ୍ରିଲେ —"କିଏ ସେ ଲୋକ ? କିଏ ? ତା' ନାଁ ମୋତେ କହିଦେବା ମାତ୍ରେ ମୁଁ ତାକୁ ମେଖାଏ ଆକାରହୀନ ଆବର୍ଜନା କରିଦେବି । କେଉଁ ଆଡ଼େ ଖସିଯାଇ ପାରିବ ନାହିଁ ସେ ମୋ'ଠାରୁ । କିଏ ?"

ଦେବ ଆଗୃର୍ଯ୍ୟଙ୍କର କେବଳ ଦୁଇ ହାତ ନୁହେଁ; ସମଗ୍ର ଦେହ କମ୍ପିବାକୁ ଲାଗିଲା, ନାହିଁ ନ ଥିବା କ୍ରୋଧ ଓ ଭୟରେ । ସେ ଦୁଇ ହାତ ପାପୁଲିରେ ଭିଡ଼ ଧରିବାକୁ ଚେଷ୍ଟା କଲେ ଇନ୍ଦ୍ରର ବେକ । ଚନ୍ଦ୍ରିଲେ— "ସେ ମଣିଷଟା କିଏ ଆଗ କହ । ନ'ହେଲେ ତୋ ତଣ୍ଟି ଚିପି ସାଫ୍ କରିଦେବି ।"

ସୁା' ପରେ ପରେ ଯେଉଁ ଦୃଶ୍ୟ ସଂଘଟିତ ହେଲା ତାହା ଆପାତତଃ ଅପେକ୍ଷା ପର୍ଯ୍ୟାୟର ଥିଲା । ଗୋଟିଏ ଧକ୍କାରେ ଇନ୍ଦ୍ର ଚଟାଣ ଉପରେ ପଡ଼ିଗଲା ଏବଂ ଦେବ ଆଗୃର୍ଯ୍ୟ ଆଉ କିଛି କରିବା ପୂର୍ବରୁ ଇନ୍ଦୁ ତଳୁ ଉଠି ନିଜକୁ ସଜାଡ଼ି ନେଲା । ସେ ଏମିତି କିଛି ଘଟିବ ବୋଲି ନିଜକୁ ପ୍ରସ୍ତୁତ କରିସାରିଥିଲା । କହିଲା—"ମୋତେ କିଛି ପଗ୍ରୁରନା । ମୁଁ ଏ' ଘରୁ ଗୃଲିଯିବି । ମୋ କଳଙ୍କ ଏ ଘରେ ଜମା ବୋଝ ହେବନି ।"

ଇନ୍ଦୁର ଦୁଇ ହାତ ଧରି ତାକୁ ହଲାଇ ଦେଲେ ଦେବ ଆଗୃର୍ଯ୍ୟ । ଆହା, ଏଇଭଳି କରିବା ଫଳରେ ଇନ୍ଦୁ ଭିତରେ ରହିଥିବା କଳଙ୍କିତ ପାପ ଯଦି ଖସି ପଡ଼ନ୍ତା ତଳକୁ ଗୋଟାଏ ପଚ୍ଚୁ ଫଳ ଗଛରୁ ଖସି ପଡ଼ିବା ଭଳି ! ଦେବ ଆଗୃର୍ଯ୍ୟଙ୍କର ସ୍ୱର ଅଶ୍ରୁଳ ହୋଇ ପଡ଼ିଲା—"ଏମିତି ତୁ କାହିଁକି କଲୁ ? କାହିଁକି ମୋ ସର୍ବନାଶ ଡାକିଦେଲୁ ? ତୋ' ଭିତରେ ଏମିତି ବ୍ୟଭିଗୃରଣୀଟିଏ ଥିଲା କେଉଁଠି ? ସବୁ କଥା ଜାଣିବା ପରେ ବି କେଉଁ ମୁହଁ ନେଇ ତୁ ମୋ' ଘରେ ପଡ଼ି ରହିବୁ, କହ ?"

ଦେବ ଆଗ୍ରୱାଲ୍ ଆଉ କିଛି କହିବାକୁ ଉଦ୍ୟତ ହେଲାବେଳେ ଇନ୍ଦ୍ର ଖୁବ୍ ଧୀର ପଦକ୍ଷେପ ନେଇ ବାହାରିଗଲା ସେ କୋଠରିରୁ । ଦେବ ଆଗ୍ରୱାଲ୍ ରହିପାରିଲେ ନାହିଁ ସେ ଘରେ । ଗୋଟାଏ ମାରାତ୍ମକ ଯନ୍ତ୍ରଣା-ଦଗ୍ଧ ଶୋକ ତାଙ୍କର ହାଡ଼-ମାଂସକୁ ଫୋପିଡି ଦେଉଥିଲା । ସେ ବାହାର ଆସିଲେ ପଦାକୁ । ଖାଲି ଅସ୍ଥିର, କିଛିପାଇଁ ହୋଇ ଗାଁ ରାସ୍ତାରେ ବୁଲିଲେ ଏବଂ ପରିଣତ ହୋଇଗଲେ ଗୋଟାଏ ଦଗ୍ଧମୟ ଆର୍ତ୍ତନାଦରେ । ଯନ୍ତ୍ରଣା-ଜର୍ଜରିତ ସ୍ୱରଟି ବାହାରିଗଲା ତାଙ୍କ ପାଟିରୁ । ଗାଁର ସମସ୍ତ ପରିବେଶ, ଆକାଶ ଓ ପାହାଡ଼ ଉପରେ ଥିବା ମନ୍ଦିର ଉପରେ ସତେ-ଯେପରି ଲିପିହୋଇ ଯାଉଥିଲା ଗୋଟାଏ କଳା ରଙ୍ଗ । ଏ କଳା ରଙ୍ଗ କୌଣସି ଯୁଗରେ ସୂର୍ଯ୍ୟୋଦୟକୁ ଖାତିର କରି ନାହିଁ; ଉଭେଇଯାଏ ନାହିଁ ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ ଦ୍ୱାରା । ଏ କଳା ରଙ୍ଗ ବୃଦ୍ଧିପାଏ ଇନ୍ଦ୍ରର ପେଟରେ ଏବଂ ଭୂମିଷ୍ଠ ହୁଏ ସମସ୍ତ ପାପ ଓ ବଦନାମର ବଦ୍ଧ୍ୱମୂଳ ସଙ୍କେତ ହୋଇ ।

ଦେବ ଆଗ୍ରୱାଲ୍ ଭାବି ପାରିଲେ ନାହିଁ ଆଉ କିଛି । କରୁଣା କାମଟି ମନେ ପଡ଼ିଗଲା ଭଳି ସେ ଫେରି ଆସିଲେ ଘରକୁ । ସେତେବେଳ ଘରେ ଇନ୍ଦ୍ର ବାସନ ସଜାଡ଼ିବା ବେଳେ ସେ ଠିଆହେଲେ ପ୍ରତିଶୋଧ ପରାୟଣ ହିଂସ୍ରତା ନେଇ । କହିଲେ—"ମୁଁ ଅବିକା ତୋତେ ମାରିଦେବି । ଏଇଠି । ବର୍ତ୍ତମାନ ।"

ବିପର୍ଯ୍ୟସ୍ତ ଓ ଭୟାନକ ଦେଖା ଯାଉଥିଲେ ଦେବ ଆଗ୍ରୱାଲ୍ । ଇନ୍ଦ୍ର ତାଙ୍କୁ ଚୁହିଁ ରହିଲା । ଆଖି ଫେରାଇଲା ନାହିଁ । ଦେବ ଆଗ୍ରୱାଲ୍‌ଙ୍କ ଘୋଷଣାକୁ ମିଛ ବୋଲି ଭାବିଲା ନାହିଁ । ଗୋଟିଏ ମୁହୂର୍ତ୍ତର ଭ୍ରୂକୁଞ୍ଚନ ପରେ ସେ ଠିଆ ହେଲା ଆତ୍ମସମର୍ପଣ ଭଙ୍ଗୀରେ । ତା' ମୁହଁ ଦେଖା-ଯାଉଥିଲା ରକ୍ତହୀନ ଓ ଫାଙ୍କା । କହିଲା—"ମାରିଦିଅ ।"

ଏ ସ୍ୱରଟା ଦେବ ଆଗ୍ରୱାଲ୍‌ଙ୍କୁ ଝଟ୍‌କରି ଦେବାର ସ୍ୱର ନ ଥିଲା । ଏହା ଥିଲା ଅନୁରୋଧର ସ୍ୱର । ସେ ସମ୍ଭବତଃ ମରିବାକୁ ଚାହୁଁଥିଲା ସେଇକ୍ଷଣି, ସେଇ ସ୍ଥାନରେ । ଏଥିପାଇଁ ତା'ଠାରେ ପ୍ରତିବାଦ ନ ଥିଲା,

ଥିଲା ଗୋଟାଏ କାମନା, ଇଚ୍ଛା । ଦେବ ଆଗ୍ରୁର୍ଯ୍ୟ କହିଲେ—"ଘାବୁରା, ଏ ହାତରେ ଆଉ ଜମା ଶକ୍ତି ନାହିଁ ବୋଲି, ନୁହେଁ ? ଏଇ ଦେଖ୍ ।" ତାଙ୍କର ଦୁଇ କମ୍ପିତ ହାତ ଉଠି ଆସିଲା ଉପରକୁ, କିନ୍ତୁ ଇନ୍ଦ୍ରର ସମର୍ପିତ ବେକ ଗୁରପାଖରେ ଗୁଡ଼େଇ ହୋଇ ରହିପାରିଲା ନାହିଁ । ସେ ବାରମ୍ବାର ଏଇ ଚେଷ୍ଟା କରୁଥିଲେ ଏବଂ ଇନ୍ଦ୍ରର ଦୁଇ ଆଖିରୁ ଲୁହ ଝରି ଆସିଲା ।

ସେ ଭାବୁଥିଲା, ସେଇ ଦୁଇ ହାତକୁ ନିଜ ମୁଣ୍ଡରେ ଜାଡ଼ି ଧରିବ କି ? କାଳେ, ତା' ଦେହର ଶକ୍ତି ସଞ୍ଚରିତ ହୋଇଯିବ ତାହା ମଧ୍ୟରେ ! କେଡ଼େ ଭଲ ହୁଅନ୍ତା ସେ ହାତ ଯଦି ପୁଣି ସକ୍ଷମ ହୋଇ ପାରନ୍ତା ।

ଦେବ ଆଗ୍ରୁର୍ଯ୍ୟ ଠିଆ ହେଲେ । ପରାମର୍ଶ ଦେଲେ—"ତୁ ବେକରେ ଦଉଡ଼ି ଦେ । ଶୁଣ୍, ଜମା ଚୂହିଁ ହେଉ ନାହିଁ ତୋର ଏଇ ମୁହଁକୁ । କାଲି ସକାଳ ସୁଦ୍ଧା ମୁଁ ଯେମିତି ତୋତେ ନ ଦେଖେ ।"

ଦେବ ଆଗ୍ରୁର୍ଯ୍ୟ ଅନ୍ୟ କୋଠରିକୁ ଆସି ଦେଖିଲେ, ଛୁଆମାନେ ଶୋଇ ପଡ଼ିଚନ୍ତି ନିଶ୍ଚିନ୍ତ ହୋଇ । କ୍ଷଣକ ପାଇଁ ତାଙ୍କର ବିଧ୍ୱସ୍ତ ଭାବନା ନିଜକୁ ସଜାଡ଼ି ନେଉଥିଲା । ମାତ୍ର ପରେ ସେ ପୁଣି ଅସ୍ଥିର ଅସହାୟ ହୋଇ ପଡ଼ିଲେ । ସେ ସେଇ କୋଠରିରେ ଶୋଇବା ପାଇଁ ଚେଷ୍ଟା କଲେ । ଅନ୍ୟ କୋଠରିଟି ରହିଲା କେବଳ ଇନ୍ଦ୍ର ପାଇଁ । ସେ ଆଜି ବେକରେ ଦଉଡ଼ି ଦେଇ ମରିବ ।

ଛଟପଟ, ଯନ୍ତ୍ରଣା, ଆତୁରତା, ଉପାୟହୀନତା, ଅପମାନ, ଘୃଣା । ଦେବ ଆଗ୍ରୁର୍ଯ୍ୟ ଆଦୌ ଶୋଇପାରୁ ନ ଥିଲେ । କେଉଁଠି କିଛି ଶବ୍ଦ ହେଲେ ଗୋଟାଏ ଗରମ ଶିହାର ପ୍ରବାହିତ ହୋଇ ଯାଉଥିଲା ତାଙ୍କ ଦେହରେ । କ'ଣ ଏଇ ଶବ୍ଦଟା ? ଦଉଡ଼ି ଦେଉଥିବାର ? ଆଉ କୋଠରି ଭିତରକୁ ଆସୁଥିବା ମୃତ୍ୟୁର ?

ସକାଳ ହେବା ମାତ୍ରେ ନିଦ ଭାଙ୍ଗିଗଲା ତାଙ୍କର । ସେ ଧଡ଼ପଡ଼ ହୋଇ ବ୍ୟାପାରଟା କ'ଣ ଦେଖିବା ପାଇଁ ଉଠି ଆସିଲେ ବାହାରକୁ । ଠିଆହୋଇ ରହିଲେ ପିଣ୍ଡା ଉପରେ ନୈରାଶ୍ୟର ଦୀର୍ଘଶ୍ୱାସ

ତ୍ୟାଗ କର । ଇନ୍ଦୁ ବାହାର ଓଳଉଚ, ସବୁଦିନ ଭଳି । ସେ ଗୁଲି ଆସିଲେ ପାଖକୁ । ପଚାରିଲେ—କ'ଣ ହେଲା ? ଆଜିର ପରୀକ୍ଷା କରିବୁ ବୋଲି ବସି ରହିଚୁ ?"

ଇନ୍ଦୁ କହିଲା ନାହିଁ କିଛି । ତାଙ୍କଆଡ଼େ ଅନେଇଲା ନାହିଁ । ପୁଣି ବାହାର ଖରିକବାରେ ବ୍ୟସ୍ତ ରହିଲା ।

ଘଡ଼ି ଦଶଟା-ଏଗାରଟା ବେଳକୁ ଉତ୍ତେଜନା ପହଞ୍ଚ ଯାଇଥାଏ ଚରମ ପର୍ଯ୍ୟାୟରେ । ସନ୍ଧ୍ୟାବେଳୁ ଲକ୍ଷ୍ମୀ ମାର୍କେଟ ସାମନାରେ ଘମା-ଘୋଟ ଆଲୋଚନା ଆରମ୍ଭ ହୋଇ ଯାଇଥିଲା ପଞ୍ଚାୟତ ମେମ୍ବର ସମ୍ପର୍କୀୟ ଟଣାଓଟରା ଘଟଣାକୁ କେନ୍ଦ୍ର କରି । ଗାଁର ବୟସ୍କ ଲୋକମାନେ ଜାଲ ଦରଖାସ୍ତ ଓ ଜାଲ ଦସ୍ତଖତ ଇତ୍ୟାଦି କଥା ଜାଣି ସାରିଥିଲେ କିଛିଦିନ ପୂର୍ବରୁ । ସେମାନେ ବାଛିଥିବା ଦୁଇଜଣ ମେମ୍ବର ବହିଷ୍କୃତ ହୋଇ ଯାଇଚନ୍ତି ବୋଲି ଜାଣି ସାରିବା ପରେ ମଧ୍ୟ କେହି କିଛି ପ୍ରତିକ୍ରିୟା ସୃଷ୍ଟି କରି ନ ଥିଲେ । ତା' ପୂର୍ବରୁ ସଦାଶିବ ଓ ଅନ୍ୟଜଣକୁ ଯେଉଁ ଧମକ ଦିଆ ଯାଇଥିଲା, ତାହା ସ୍ତମ୍ଭୀଭୂତ କରି ଦେଇଥିଲା ସେମାନଙ୍କୁ । ଏଇ ବୟସ୍କ ଲୋକମାନେ ଜାଣି ସାରିଥିଲେ ଯେ, ସଂସାରର ପରିପାଟି ଯେମିତି ବଦଳି ଯାଉଚି, ତାହାକୁ ବୁଝିବା କିମ୍ବା ନିୟନ୍ତ୍ରଣ କରିବା ପାଇଁ ସେମାନଙ୍କ ପାଖରେ କୌଣସି କ୍ଷମତା ନ ଥିଲା ।

ଘନଶ୍ୟାମ ଦାଦା ସବୁକଥା ଶୁଣିସାରି ବିମର୍ଷ ଦେଖାଗଲେ । ନିତାନ୍ତ ନିଃସହାୟ ଦୀର୍ଘଶ୍ୱାସ ତ୍ୟାଗ କରିବା ପରେ ସେ ଗୃହଆଡ଼କୁ ଦୃଷ୍ଟି ବୁଲାଇ କହିଲେ ଆପାତତଃ ମନକୁ ମନ—"ଯାହା ହେଉଚି ହେଉ । ଏଭଳି ଘଟଣାର ମୁକାବିଲା କରିବା ପାଇଁ ମୋର ଶକ୍ତି ନାହିଁ ।" ସେ ଆଉ ବିଶେଷ ଘରୁ ବାହାରୁ ନାହାନ୍ତି । ତାଙ୍କର କାର୍ଯ୍ୟକ୍ରମ ସୀମିତ ରହିଚି ନିଜ ବ୍ୟାପାର ମଧ୍ୟରେ । ହାତରେ ପ୍ରଚୁର ସମୟ ଥିବାରୁ ସେ ଦୈନିକ ଖବରକାଗଜକୁ ପଢ଼ନ୍ତି ଦୁଇ-ତିନି ଥର ଲେଖାଏଁ । କେଉଁଠି କିଛି କୋଳାହଳ ଶୁଣିବା ମାତ୍ରେ ସେ ଗୋଟାଏ ଶୃଙ୍ଖଳା ଅନୁଭବ କରନ୍ତି ନିଜ ଭିତରେ । ବିଚଳିତ ହୋଇ ପଡ଼ନ୍ତି । ମାତ୍ର କେତୋଟି ମୁହୂର୍ତ୍ତ ପରେ ସେ ପୁଣି ଫେରି ଆସନ୍ତି ନିଜ ଖବର କାଗଜକୁ କିମ୍ବା ଘରର

ଅନ୍ୟମାନଙ୍କ ସଙ୍ଗେ ଗ୍ଭଲଥିବା ଆଲୋଚନା ଭିତରକୁ । ଗାଁରୁ ସେ ନିଜକୁ ବିଚ୍ଛିନ୍ନ କରିବା ପାଇଁ ଚେଷ୍ଟା କରୁଥିଲେ । ବିଚ୍ଛିନ୍ନ ହୋଇ ଯାଉଥିଲେ ଆପଣାଗ୍ଭଏଁ ।

କୀର୍ତ୍ତନ ମଉସାଙ୍କ ଭାଗବତ ପଢ଼ା ଅବ୍ୟାହତ ରହିଥିଲା । ଏବେ ସନ୍ଧ୍ୟାବେଳେ ବେଶ୍ କିଛି ସଂଖ୍ୟକ ବୟସ୍କ ଲୋକ ଯାଉଥିଲେ ସେଠାକୁ । ସଂସାରରେ ସେମାନଙ୍କର ସକ୍ରିୟ କର୍ତ୍ତବ୍ୟ ସରି ଆସୁଥିଲା ବୋଲି ସେମାନେ ଅନୁଭବ କରୁଥିଲେ । ସେମାନେ ନିଜକୁ ପ୍ରସ୍ତୁତ କରୁଥିଲେ ଏତେ ବର୍ଷ ଧରି ବଞ୍ଚି ଆସିଥିବା ଗାଁ ମାଟି ଓ ଆକାଶ, ଚନ୍ଦ୍ର-ସୂର୍ଯ୍ୟ, ପବନ-ବର୍ଷା ଗ୍ଭଡ଼ିବା ପାଇଁ । ସୁଦର୍ଶନ-ଯୁଧିଷ୍ଠିର ଏବଂ ଅଇଁଠୁ-ହଳଧର ସମସ୍ୟା ସେମାନଙ୍କ ଚେତନାକୁ ସ୍ପର୍ଶ କରିପାରୁ ନ ଥିଲା । ଗାଁରେ ସେମାନଙ୍କ ପାଇଁ ଆଉ କିଛି ଘଟୁ ନ ଥିଲା । ତିନି-ଗ୍ଭରି ବର୍ଷ ହେବ ଅଷ୍ଟପ୍ରହରୀ ବନ୍ଦ ହୋଇଯିବା ସତ୍ତ୍ୱେ ସେମାନେ ପ୍ରାୟ ନିର୍ବିକାର ରହିଥିଲେ । ଦୋଳ ବେଳକୁ ଖୁବ୍ ଜାକଜମକରେ ଠାକୁରଙ୍କ କୋଠା ସାମନାରେ ଅଷ୍ଟପ୍ରହରୀ କାହିଁ କେତେ ବର୍ଷରୁ ହୋଇ ଆସୁଥିଲା । ପାଞ୍ଚ-ଛ'ଟି ଗାଁର ସଂକୀର୍ତ୍ତନ ଦଳ ପହଞ୍ଚୁଥିଲେ । ଗୋଟାଏ ଚରମ ଉଦାସୀନତା ଗ୍ରାସ କରିଥିଲା ସମସ୍ତଙ୍କୁ । କେହି ଏ ଦିଗରେ ପଦକ୍ଷେପ ନେଲେ ନାହିଁ । ଖାଲି ହାଇଁ ପାଇଁ ହେଲେ କିଛିଦିନ ପାଇଁ । ବନ୍ଦ ହୋଇଗଲା ଅଷ୍ଟପ୍ରହରୀ । ବର୍ତ୍ତମାନ ଗାଁରେ ମୃଦଙ୍ଗଟିଏ କି ଝାଞ୍ଜଗୁଡ଼ିଏ ଅଛି କି ନାହିଁ କେଜାଣି ?

ଅଳ୍ପଦିନ ତଳେ ତ୍ରିନାଥ ମେଳା କରିବ ବୋଲି ଲୋକନାଥ ବଡ଼ଧରଣର ଆୟୋଜନ କରିଥିଲା । ନୂଆ ହୋଇ ଯେଉଁ ବିଜୁଳି ତାର ଗାଁ'କୁ ଆସିଥିଲା, ସେଇଠୁ ଗୋରରେ ତାର ପକାଇ ଗ୍ଭରି-ପାଞ୍ଚଟା ବଡ଼ ବଲ୍ବ ଜାଳିଥିଲା । ସଂକୀର୍ତ୍ତନ ପାଇଁ ଖୁବ୍ ବ୍ୟସ୍ତ ହେବାରୁ ଗୋଟେ ଲୁଙ୍ଗିପିନ୍ଧା ଟୋକା ପରାମର୍ଶ ଦେଲା—"ସଂକୀର୍ତ୍ତନ ? ସଂକୀର୍ତ୍ତନ ଗୋଟେ କ'ଣ ? ବଜେଇ ଦେ ମାଇକ୍ । କମ୍ପିଯିବ ଏ ଖଣ୍ଡମଣ୍ଡଳ । ମଜା ଅଛି ସେଇଥିରେ । ବିଷ୍ଣୁ ସହସ୍ର ନାମର କାସେଟ୍ ବଜେଇ ଦେ । ଜଗନ୍ନାଥ ଭଜନର କାସେଟ୍ ମଧ୍ୟ ବଜା । ଜମିଯିବ । ସଂକୀର୍ତ୍ତନ ଯୁଗ ଆଉ ଅଛି ?"

ମୋଟାମୋଟି ଏଇ ଥିଲା ଗାଁର ପରିସ୍ଥିତି; କିନ୍ତୁ ଗାଁ ଭିତରେ ଚକ୍‌ମକ୍ ହୋଇ ବାଟଭ୍ରଷ୍ଟ ଶକ୍ତିଟିଏ ଥିଲା । ଏ ଶକ୍ତିକୁ ଏକଜୁଟ କରି କେବଳ ବାଟ ବତେଇ ଦେଲେ ଅସମ୍ଭବ ଓ ପଟାନ୍ତରହୀନ କାମ ସଂଘଟିତ ହୋଇ ପାରନ୍ତା । ଏଇ ଶକ୍ତିଟି ପଞ୍ଚାୟତ ମେମ୍ବର ଘଟଣାକୁ ଗୋଟାଏ ଚ୍ୟାଲେଞ୍ଜ ବୋଲି ଗ୍ରହଣ କରି ସାରିଥିଲା । ପ୍ରଥମେ ଚୁପ୍‌ଚୁପ୍ ଓ ସଂକ୍ଷିପ୍ତ ଭାବରେ ଆଲୋଚିତ ହେଲା ଏଇ ବ୍ୟାପାରଟା । ତା'ପରେ ସବିଶେଷ ଭାବରେ ଓ ଖୋଲାଖୋଲି ଭାବରେ ମୁଖ୍ୟତଃ ଲକ୍ଷ୍ମୀ ମାର୍କେଟ୍ ପାଖରେ ଭବିଷ୍ୟତର ପଦକ୍ଷେପ ସମ୍ପର୍କରେ ଆଲୋଚିତ ହେଲା ।

ନିମାଇଁ କହିଲା—"ତୁମେ ସବୁ ଏମିତି ଅଥୟ, ଉତ୍ତେଜିତ ହେଲେ କିଛି ହେବ ନାହିଁ । ସବୁ ଭୁଲ୍‌ଭାଲ୍ ହୋଇଯିବ । କଥାଟା ଅବାଟରେ ଗତି କରିବ । ଆମେ ପୁଣି ଥରେ ସୁରେନ୍ଦ୍ର ଆଉ ପାର୍ଥିକୁ ପଚାରିବା । ସେମାନେ ପଞ୍ଚାୟତ ମେମ୍ବର ପଦରୁ ଓହରି ଆସନ୍ତୁ । ଯଦି ସେମାନେ ନ ମାନନ୍ତି, ତେବେ ସ୍ୱା' ବିରୁଦ୍ଧରେ ମୋକଦ୍ଦମା ହେବ ବୋଲି କୁହାଯିବ ।"

—"ମୋକଦ୍ଦମା ?" ନିରୁତ୍ସାହିତ ହୋଇ ପଚାରିଲା ରାଧାକାନ୍ତ । "ମୋକଦ୍ଦମା, ଫୋକଦ୍ଦମା କଥା ଛାଡ଼ । ଆମେ ସବୁ ବିଚାର କରିଦେବା ମାମଲାଟା । ଆଉ, ସେଦି'ଟାଙ୍କୁ ଡାକି ପୁଣି ବୁଝେଇବ ଗୋଟେ କ'ଣ ? ସେମାନେ ତ ଜମା ମାନୁ ନାହାନ୍ତି ଆମ କଥା ?"

ରାଧାକାନ୍ତର ଏଇ କଥା ପ୍ରତି ଏଭଳି ସମର୍ଥନ ମିଳିଲା ଯେ, ନିମାଇଁ ଘାବରେଇ ଗଲା । ସେ ବିଚଳିତ ହୋଇ ପଡ଼ିଲା ଯେ, ଗୋଟାଏ କିଛି ଅଘଟଣ ଘଟି ଯାଇପାରେ । ଏତିକିବେଳେ କେହି ଜଣେ ଖବର ଦେଲା—"ସୁରେନ୍ଦ୍ର କି ପାର୍ଥି ନାହାନ୍ତି ସେମାନଙ୍କ ଘରେ । ସେମାନଙ୍କ ମାଇପମାନେ କହି ପାରିଲେ ନାହିଁ କୁଆଡ଼େ ଯାଇଛନ୍ତି ସେମାନେ, କେତେବେଳୁ ଯାଇଛନ୍ତି ଆଉ ଫେରିବେ କେତେବେଳେ ।"

"—ତୁମେ କୁମର ଘରେ ସେମାନଙ୍କୁ ଖୋଜିଛ ?" ଆଉ ଜଣେ ପଚାରିଲା ।

—"ନାହିଁ ।" ଦ୍ୱିଧାଗ୍ରସ୍ତ ଉତ୍ତର ମିଳିଲା ।

"—ତା'ହେଲେ ସେମାନଙ୍କୁ ଖୋଜୁଥିଲ କେଉଁଠି ? ସେ ଶଳା ଘରେ ଏ ଦୁ'ଜଣ ଗୃହସ୍ଥ ଯଦି ନ ଥିବେ, ମୋ ନାଁ ଧରିବ ନାହିଁ । ଗୁହାଁଚ କ'ଣ ? ସେଇଠିକି ଯା' । ଆଠ-ଦଶ ଜଣ ଯାଅ ।" ଏଇଟା ଥିଲା ରାଧାକାନ୍ତର ଆଦେଶ ।

ଅନ୍ଧାର ରାତିରେ ବେଶ୍ କିଛି ସଂଖ୍ୟକ ଲୋକ ଗାଁ ଭିତରକୁ ଗଲାବେଳେ ପରିସ୍ଥିତିଟା ଭୟଙ୍କର ହୋଇ ଯାଉଚି ବୋଲି ନିମାଇଁର ହୃଦ୍‌ବୋଧ ହେଲା । ସେମାନଙ୍କୁ ଫେରି ଆସିବାକୁ ସେ ଆଦେଶ ଦେବା ପାଇଁ ଇଚ୍ଛା କରୁଥିଲେ ମଧ୍ୟ ନୀରବ ରହିଲା । ଗୋଟାଏ ପ୍ରଚଣ୍ଡ ଉଦ୍‌ବେଗ ଗ୍ରାସ କରୁଥିଲା ତାକୁ । ଅନ୍ୟମାନେ ଉତ୍କଣ୍ଠାର ସହିତ ସେମାନଙ୍କର ଫେରିବା ଅପେକ୍ଷା କରୁଥିଲେ ।

ମାତ୍ର ପାଞ୍ଚମିନିଟ୍ ପରେ ଗାଁ ଭିତରୁ ଗୋଟାଏ ଅସ୍ପଷ୍ଟ କୋଳାହଳ ଓ ବଚସା ଶୁଭିଲା । ତା'ପରେ ପରେ ଏହା ସୋଚ୍ଚ ହୋଇଗଲା ଆର୍ତ୍ତନାଦ ଓ ଉଚ୍ଚସ୍ୱରରେ ଯନ୍ତ୍ରଣା-ଜର୍ଜରିତ କାନ୍ଦଣା ଦ୍ୱାରା । ଲକ୍ଷ୍ମୀମାର୍କେଟ୍‌ରେ ଅପେକ୍ଷା କରିଥିବା ସମସ୍ତେ ଧାଇଁଲେ ସେଇ ଆଡ଼କୁ । ଏତେ ରାତ୍ରିରେ ଗାଁ'ର ଅନ୍ଧକାର, ନୀରବ ପରିବେଶ ଜଡ଼ସଡ଼ ହୋଇଗଲା ଉତ୍ତେଜନା ଓ କ୍ରୋଧର ନାହିଁ ନ ଥିବା ପ୍ରଦର୍ଶନରେ ।

କିଛି ଶୁଭୁ ନ ଥାଏ ସ୍ପଷ୍ଟ ଭାବରେ । ଧର ଧର, ମାର ମାର, ଇତ୍ୟାଦିର ଆଦେଶ, ଅଶ୍ଳୀଳ ଭାଷାର ଗାଳିଗୁଲଜ ସହିତ ଫେଣ୍ଟି ହୋଇଗଲା ଛୁଆ ଓ ସ୍ତ୍ରୀଲୋକଙ୍କ ସମେତ ଅନେକ ପୁରୁଷ ଲୋକମାନଙ୍କର ଚିତ୍କାର, କାନ୍ଦଣା, ମରିଗଲି, ତାକୁ ମାର, ଯୁଆ'କୁ ଛାଡ଼ିଦେ ଇତ୍ୟାଦିର ଗଣ୍ଡଗୋଳିଆ ରକ୍ତାକ୍ତ ଭାଷା ।

ନୀରବତା ଏଇଭଳି ଛିନ୍ନଛିନ୍ନ ହେବାବେଳେ ଗାଁର ଅନ୍ଧକାରକୁ ଗ୍ରାସ କରିବା ପାଇଁ ଗୋଟେ ପଟେ ହରିଜନ ସାହି ଏବଂ ଅନ୍ୟ ପାଖରେ ଖମଣ ସାହିରୁ ନିଆଁର ଭୟାବହ ଜିଭ ଉଠୁଥିଲା ଆକାଶକୁ ଛୁଇଁବା ପାଇଁ ଓ ଧରଣୀ ଉପରେ ପରିବ୍ୟାପ୍ତ ହେବା ପାଇଁ ।

ଗାଁର ଶାନ୍ତିଶୃଙ୍ଖଳା ପୁଣି ବିପନ୍ନ ହୋଇପାରେ । ପରିସ୍ଥିତିକୁ ନିୟନ୍ତ୍ରଣାଧୀନ କରିବା ପାଇଁ ପୋଲିସ୍ ଗ୍ଣ୍ଡଣି ରହିବ କିଛିଦିନ ପାଇଁ ଆମ ଗାଁରେ । ଗୃହଶୂନ୍ୟ ହୋଇଥିବା ପରିବାରର ଲୋକଙ୍କୁ ରିଲିଫ୍ ଦିଆଯିବ । ଏହା ସହିତ ଚାଲିଥିଲା ଅନୁସନ୍ଧାନ ଏବଂ ଦିନ ବାରଟା ସୁଦ୍ଧା ପଚିଶ୍ ପାଖାପାଖି ଲୋକଙ୍କ ନାମରେ ମୋକଦ୍ଦମା ରୁଜୁ ହୋଇ ସାରିଥିଲା । କେବଳ ଖୋଜା ଚାଲିଥିଲା ରାଧାକାନ୍ତ ଓ ଆଉ ଚାରି-ପାଞ୍ଚ ଜଣଙ୍କୁ । ଗାଁରୁ ସହସା ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ସେମାନେ ।

ଗାଁ ପରିଣତ ହୋଇ ଯାଇଥିଲା ଗୋଟାଏ ସବଦାହଗୃ ଛେଉଣ୍ଡି ମୂର୍ଦ୍ଧାରରେ । ଘଟଣାଟା ଏଭଳି ପୈଶାଚିକ ଓ ଦୁର୍ଦ୍ଧର୍ଷ ଥିଲା ଯେ, ଗାଁର ଅନ୍ୟ ଲୋକମାନେ ସ୍ତମ୍ଭୀଭୂତ ଓ ଭୟଭୀତ ହୋଇ ପଡ଼ିଥିଲେ । ପୋଲିସ୍ ଅନୁସନ୍ଧାନ ଚାଲିଥିଲାବେଳେ ସେମାନେ କବାଟ କିଳି ପଶିଥିଲେ ନିଜ ନିଜ ଘରେ । ଗାଁର କୁକୁଆମାନେ ମଧ୍ୟ ବାହାରି ନ ଥିଲେ ପଦାକୁ, ଅଜଣା ଆତଙ୍କରେ ଜଡ଼ସଡ଼ ହୋଇଯାଇ ଥିବାରୁ । ଏସବୁ ସତ୍ତ୍ୱେ, ରହି ରହି ସବଦାହଗୃ କାନ୍ଦଣା ଶୁଭୁଥିଲା ଦୁଇ ସାହିରୁ । ସେ ସ୍ୱର ଥିଲା ଦରମଲା, ମୁମୂର୍ଷୁ । ଏଇ କାନ୍ଦଣା ଗାଁ ବାତାବରଣକୁ କଲବଲ କରୁଥିଲା, ସ୍ପଷ୍ଟ କରି ଦେଉଥିଲା ଯେ ବାସ୍ତବିକ ମୂର୍ଦ୍ଧାରଟେ ପଡ଼ି ରହିଛି । ଏହାର ସତ୍କାର ପାଇଁ ଆବଶ୍ୟକୀୟ ସରଞ୍ଜାମ ନ ଥିଲା । ଆହା ବୋଲି ନ ଥିଲା ପଦେ କଥା । ନ ଥିଲା କୌଣସି ଆବେଗ । ସବୁଆଡ଼େ ଘେରି ରହିଥିଲା ଗୋଟାଏ ଭୟ । ବିଗ୍ଭରବୋଧକୁ ଗ୍ରାସ କରି ଦେବା ଭଳି ପୈଶାଚିକତା ଗ୍ଣ୍ଡି ଦେଇଥିଲା ଅତୁଳନୀୟ ଧ୍ୱଂସସ୍ତୂପ ।

ଏହା ସତ୍ତ୍ୱେ, ପାହାଡ଼ ଉପରେ ଥିବା ମନ୍ଦିରରେ ଆଳତି ଘଣ୍ଟି ବାଜିଲା ଏବଂ ସେତିକିବେଳେ ଘନଶ୍ୟାମ ଦାଦାଙ୍କର ଅଗଣା ଲୋକାରଣ୍ୟ ହୋଇ ପଡ଼ିଲା । ଗୃହଶୂନ୍ୟ ହୋଇଥିବା ପଚିଶ ଜଣଙ୍କ ପାଇଁ ସେ ଖାଇବା ବ୍ୟବସ୍ଥା କରିଥିଲେ । ହରିଜନ ସାହିର ଲୋକମାନେ ବସିଥିଲେ ବାହାର

ପାଖ ବାରନ୍ଦାରେ । ହେଉଥିଲା କେତେ ଦିନ ଘନଶ୍ୟାମ ଦାଦା ଦେଖି ନ ଥିଲେ ଲୋକର ଏଭଳି ସ୍ପଷ୍ଟ ଖୋପା । ଛୋଟ ଛୁଆମାନଙ୍କର ହସ ଉଡ଼ି ଯାଉଥିଲା ସେତେବେଳେ । ସମସ୍ତେ ଦେଖା ଯାଉଥିଲେ କ୍ଷୁଧିତ ଓ ଆତୁର । ଘନଶ୍ୟାମ ଦାଦା ଜାଣିପାରିଲେ ନାହିଁ କେତେବେଳେ ତାଙ୍କ ଆଖିରୁ ଦୁଇଟୋପା ଲୁହ ଝରି ଆସିଲା ।

କେହି କିନ୍ତୁ ଭାବି ନ ଥିଲେ ଯେ ଗୃହ ପାଞ୍ଚ ଦିନ ପରେ ସତକୁ-ସତ ଶବସତ୍କାର କରାଯିବ । ବଡ଼ ଭୋରରୁ ପ୍ରଚାରିତ ହେଲା, କୁମର ମା' ମରିଯାଇଛି, କ୍ୟାନ୍‌ସର । ଗର୍ଭାଶୟରେ । ଦିଶୁଥିଲା ଗୋଟାଏ ପ୍ରେତାତ୍ମା ଭଳି । ଗୋଟିଏ ହାଡ଼ ଉପରେ ଯାହା ଘୋଡ଼େଇ ହୋଇ ଥିଲା ଦଦରା, ଲୋମକୋମ ଚମଡ଼ା । କିଛିଦିନ ହେବ ସେ ଭଲ ଭାବରେ ଉଠି ବସି ପାରୁ ନ ଥିଲା ।

ଅନ୍ୟ କେହି ଜାଣି ନ ପାରନ୍ତୁ ପଛେ, ସେ କିନ୍ତୁ ହାଇଁପାଇଁ ହେଉଥିଲା । ନସ୍ୟାନ୍ତ ହୋଇ ଯାଉଥିଲା ଏବଂ ପାକୁଆ ପାଟି ଅସ୍ତବ୍ୟସ୍ତ ହେଉଥିଲା । କୁମର ପାଖରୁ ସବୁବେଳେ ଗୋଟାଏ କୈଫିୟତ ଦାବି କରୁଥିଲା ସେ—"ତୁ ଆଜିକାଲି କାହିଁକି ଏମିତି ହେଉଚୁ ? ପିଲାଦିନେ କେଡ଼େ ଭଲ ଥିଲୁ । ତୁ କ'ଣ ସବୁ କରୁଚୁ, ମୋତେ ଥରେ ବୁଝେଇ ଦେ । ମୋ' ମନ ଜମା ଥୟ ଧରୁନାହିଁ । ତୋ' ମୁହଁକୁ ଚାହିଁଦେଲେ ଜଣା ପଡ଼ିଯାଉଚି ଯେ କ'ଣ ଗୋଟେ ତୁ କରୁଚୁ । ସେଥିପାଇଁ ତୋ' ମୁହଁରେ ହସ ନାହିଁ କି ଶାନ୍ତି ନାହିଁ । ମୋତେ କହିଦେ । ତୁ ଅଡ଼ୁଆ ଭିତରେ ପଶିନାହୁଁ ବୋଲି ମୋ' ଦେହ ଛୁଇଁ ଥରେ କହିଦେ ।"

ଏ ଦାବି ଅନେକ ଦିନର । କୁମର କେବେ ନିଜର ଜମାନବନ୍ଦୀ ଦେଇ ନାହିଁ ମା' ଆଗରେ । ତାକୁ କହି ଲାଭ କ'ଣ ? କ'ଣଟେ ସେ ବୁଝିବ ? ଅଥଚ ଯେତେଥର ସେ ଏଇ କଥା ମା' ପାଖରୁ ଶୁଣିଚି, ସେତେଥର ସେ ସଙ୍କୁଚିତ ହୋଇ ପଡ଼ିଚି ନିଜ ଭିତରେ । ତା'ର ସେତେବେଳେ ଧାରଣା ହୁଏ ଯେ, ଜଣେ ଅଭିଯୁକ୍ତ ଆସାମୀ ଭଳି ସେ ଠିଆ ହୋଇଚି କାଠଗଡ଼ାରେ । ମା' ଜଣେ ବିଚାରପତିର ଆସନ ନେଇ ତାକୁ ପ୍ରଶ୍ନ ପଚାରୁଚି ତା' ଜୀବନ ସମ୍ପର୍କରେ । ତା'ଠୁ ଜବାବ ପାଇବା ମାତ୍ରେ ସେ ନିଜର ରାୟ ଶୁଣେଇବ ।

ଲଭ ଯାଉଥିବା ଏଇ ହାଡ଼ସର୍ବସ୍ୱ, ରୁଗ୍‌ଣ ସ୍ତ୍ରୀ-ଲୋକଟା ପାଖରେ କେଉଁଠି ଥାଏ ଏତେ ଶକ୍ତି ? ତା'ର କୋଟରଗତ ପାଣିଚିଆ ଆଖି ଦୁଇଟାରେ କେଉଁଠି ଥାଏ ଏତେ ତୀବ୍ର ଉଜ୍ଜ୍ୱଳତା ? କୁମରର ବୁଝିପାରେ ନାହିଁ ଜମା । ତା'ର ସାମନା ସାମନି ହେବାକ୍ଷଣି ସେ ସବୁବେଳେ ପଛଘୁଞ୍ଚା ଦେଇ ଆସିଚି ଏବଂ ବେଳେ ବେଳେ ଅସହାୟ ମୁହୂର୍ତ୍ତରେ ତା'ର ପ୍ରଶାନ୍ତ ଗ୍ଣତର ଆକାଶ ଭିତରେ ନିଜକୁ ହଜେଇ ଦେବାପାଇଁ ପ୍ରଗଲ୍‌ଭ ହୋଇ ପଡ଼ିଚି ।

ଅଥଚ ଘରୁ ଗୋଡ଼ କାଢ଼ିବାମାତ୍ରେ ତା'ର ହୃଦ୍‌ବୋଧ ହୋଇଚି ଯେ, ଜଣେ ଲୋକର ଯେଉଁସବୁ ପାର୍ଥିବ ସମସ୍ୟା ରହିଚି, ସେ ସବୁର ସମାଧାନ ତା' ମା' ଭଳି ଲୋକମାନେ କେବେହେଲେ କରି ପାରିବେ ନାହିଁ ।

ସେଇ ମା' ମରିଗଲା । ମରିଗଲା ବିଚିତ୍ର ଢଙ୍ଗରେ । ସକାଳୁ ଉଠି ଦେଖିଲା ବେଳକୁ ସେ ବିଛଣାରେ ନାହିଁ । ଝୁଲୁଚି ଆକାଶ ଓ ପୃଥିବୀ ମଧ୍ୟରେ । ଗୋଟିଏ ଲୁଗା ତା'ର ବେକକୁ ସଂଯୋଗ କରିଥିଲା ଘରର ନିଦାଘ୍ ବମ୍ ସହିତ । ସେ ଝୁଲୁଥିଲା ଗୋଟାଏ ପ୍ରଶ୍ନବାଚକ ଚିହ୍ନ ଭଳି । ପାଲଟି ଯାଇଥିଲା କୈଫିୟତ ଦାବି କରୁଥିବା ଗୋଟାଏ ବ୍ୟାକୁଳ ଜିଜ୍ଞାସାରେ ।

କୁମରକୁ ତା' ସ୍ତ୍ରୀ ନିଦରୁ ଉଠେଇ ଦେଇଥିଲା । ଆତଙ୍କିତ "ଚୁପ୍‌ଚାପ୍ ସ୍ୱରରେ ତାକୁ ଡାକି ଆଣିଥିଲା ନିର୍ଦ୍ଦିଷ୍ଟ କୋଠରୀକୁ । ବାହାର ପରିଷ୍କାର ହୋଇ ଯାଇଥିଲେ ମଧ୍ୟ ଆଂଶିକ ଅନ୍ଧାର କୋଠରୀ ଭିତରେ ମା' ଝୁଲୁଥିଲା । ତାକୁ ତଳକୁ ଆଣିବା ବେଳେ କୁମର ଜାଣି ପାରିଥିଲା ଯେ କୈଫିୟତ ଖୋଜୁଁଥିବା ସ୍ୱରଟା ନୀରବ ହୋଇଯାଇଚି; କିନ୍ତୁ ଅନୁଚ୍ଚାରିତ ହୋଇ ଏ ଦାବି ରହିବ ଏ ଘରେ, ତା' ଭାବନାରେ । ମୋଟେ ତାକୁ ଛାଡ଼ିବ ନାହିଁ, ଯେଉଁ ପର୍ଯ୍ୟନ୍ତ ସେ ନିଜର ଜମାନବନ୍ଦୀ ନ ଦେଇଚି ।

ଗାଁ ଲୋକେ କେବଳ ଜାଣିଲେ, ଏତେ ଦିନ ଧରି ଉଠି-ବସି ପାରୁ ନ ଥିବା କ୍ୟାନ୍‌ସର ରୋଗୀଟେ ମରିଗଲା । ମୁକ୍ତ ହୋଇଗଲା

ଗୋଟାଏ କଲବଲ, ଚକଟି ମଚ୍ଛି ହୋଇ ଯାଉଥିବା ଜୀବନରୁ । ପ୍ରଲମ୍ବିତ ଯନ୍ତ୍ରଣାଠେ ଯରିଗଲା ।

ସମସ୍ତ ଆତ୍ମହତ୍ୟା ମୂଳରେ ଥାଏ ପ୍ରତିବାଦ । ଜୀବନ ପଡ଼ିଯାଏ କଠିନ, ନିଷ୍କରୁଣ କାନ୍ଥ ପାଖରେ । ନା ଯାଇହୁଏ ଆଗକୁ, ନା ଫେରିହୁଏ ପଛକୁ । ଆଉ କୌଣସି ପ୍ରତିଶ୍ରୁତି ନ ଥାଏ । ସରିଯାଏ ସବୁ ସମ୍ଭାବନା । ଜୀବନ ଆଉ ଭାଗ୍ୟ ବିରୁଦ୍ଧରେ ସଙ୍କ୍ଷିପ୍ତ ହୋଇ ପଡ଼େ ଏଇ ପ୍ରତିବାଦ । ଆଉ କିଛି କରିବାର କ୍ଷମତା ନ ଥାଏ ବୋଲି ନିଜ ପ୍ରତି ମଣିଷ ପ୍ରତିଶୋଧ-ପରାୟଣ ହୋଇଯାଏ । ଆତ୍ମହତ୍ୟା କରେ । ଏଇ ଲୋକର ଜୀବନ ପ୍ରତି ଶ୍ରଦ୍ଧା କିଛି କମ୍ ନୁହେଁ ।

କୁମର ମା' ଆତ୍ମହତ୍ୟା କଲା କାହିଁକି ? କେଉଁଥିପାଇଁ ତା'ର ଏଇ ପ୍ରତିବାଦ ? ଆମ ଗାଁର କେହି ଏତେ ଗଭୀର କଥା ବୁଝିବାକୁ, ବିଶ୍ଳେଷଣ କରିବାକୁ ସକ୍ଷମ ନ ଥିଲେ । ସେମାନେ ଖାଲି ଭାବୁଥିଲେ ଯେ ମରିଗଲା, ତରିଗଲା । କେତେଦିନଯାଏଁ ଗୋଟାଏ ଆଶାହୀନ ଦେହ ଧରି ସେ ପଡ଼ିରହିଥାନ୍ତା ଖଟରେ ? ଏତେ ଯନ୍ତ୍ରଣା ସହିବାର ଗୋଟାଏ ସୀମା ବି ଥାଏ ।

ତେବେ, କୁମର ବେଳେ ବେଳେ ଭାବୁଥିଲା, ତା' କଥା ଭାବି ମା' ମରିଗଲା କି ? ତା'ର ଆତ୍ମହତ୍ୟା ତା' ବିରୁଦ୍ଧରେ ଗୋଟାଏ ପ୍ରତିବାଦ ଥିଲା କି ? କେଜାଣି ? ତେବେ ସେ କିଛି ଗୋଟାଏ ଅପକର୍ମ କରୁଚି ବୋଲି ଖଟ ଉପରେ ପଡ଼ି ରହି ନିସ୍ତେଜ ହୋଇ ଆସୁଥିବା ମଣିଷଟା ଜାଣିପାରୁଥିଲା । ତା'ର ଗତିବିଧି ଅନୁଶୀଳନ କରୁଥିଲା ଆଖି ବୁଜି ପଡ଼ି ରହିଥିବା ସତ୍ତ୍ୱେ ।

ଆମ ଗାଁ ଲୋକେ ଘଟଣାଗୁଡ଼ିକର ତାତ୍ପର୍ଯ୍ୟ ବୁଝିପାରୁ ନ ଥିଲେ ମଧ୍ୟ, ଗାଁ ବଞ୍ଚି ରହିଥିଲା । ବଞ୍ଚି ରହିବା ମାନେ ହିଁ ଘଟଣା ସୃଷ୍ଟି ହେବା । ଘର କୋରିକ ପରେ ବି ଗାଁ-ଲୋକେ ଲୋନ୍ କରୁଥିଲେ । କୃଷି ବିଭାଗର ଲୋକେ ଗୋବିନ୍ଦକୁ ସେ ଅଞ୍ଚଳର ଜଣେ ଆଦର୍ଶ କୃଷକ ବୋଲି ଉଲ୍ଲେଖ କରୁଥିଲେ । ଆସୁଥିଲେ ପରିବାର କଲ୍ୟାଣ ବିଭାଗର ଲୋକମାନେ ।

ଲୋକମାନଙ୍କ ଜୀବନକୁ ସୁଖମୟ କରିବା ପାଇଁ ଯେଉଁ ସବୁ ଯୋଜନା ପ୍ରସ୍ତୁତ ହେଉଛି, ସେ ସବୁର ପ୍ରତିଧ୍ୱନି ପହଞ୍ଚୁଥିଲା ଆମ ଗାଁରେ ।

ପିଲା ଜନ୍ମ ହେଉଥିଲେ । ବାହାଘର ହେଉଥିଲା । ଔଷଧ ପାଇଁ ଲୋକେ ଧାଉଁଥିଲେ ଡାକ୍ତରଖାନାକୁ । କାହାର ଶୁଦ୍ଧିକ୍ରିୟାରେ ଲୋକେ ଯୋଗ ଦେଉଥିଲେ । ମୁର୍ଦ୍ଦାର ଉଠାଇ ନେଉଥିଲେ କାନ୍ଧ ଉପରକୁ । ମକରଯାତ୍ରା ବିଜୁଳି ଆଲୁଅରେ ଆହୁରି ଉଜ୍ଜ୍ୱଳ ହେଉଥିଲା । ସବୁ ଚାଲିଥିଲା ବଞ୍ଚି ରହିବାର ସଙ୍କେତ ଦେଇ । ଅଥଚ ଜଣା ପଡ଼ୁଥିଲା ସତେ ଯେପରି ପୁରୁଣା ଗାଁର ଗର୍ଭାଶୟ କ୍ୟାନ୍‌ସର ଦ୍ୱାରା ପୀଡ଼ିତ । ସମସ୍ତ ସମ୍ଭାବନାରହିତ ସେ ଗର୍ଭାଶୟରୁ ପୂର୍ବର ମୂଲ୍ୟବୋଧ ଜନ୍ମ ଭୂମିଷ୍ଠ ହେବନାହିଁ ।

ଗାଁ ଯଦି ପ୍ରସୂତି ଯନ୍ତ୍ରଣାରେ ଛଟପଟ ହୁଏ, ତେବେ ତାହାର ପ୍ରାଞ୍ଜଳ ପ୍ରତୀକ ହେବ ଇନ୍ଦୁର ପ୍ରସୂତି-ଯନ୍ତ୍ରଣା । ସେ ପ୍ରକୃତରେ ଏହି ଯନ୍ତ୍ରଣାରେ ଛଟପଟ ହିଁ ହେଉଥିଲା ।

ଆମ ଗାଁରେ ଯେଉଁ ଅଦୃଶ୍ୟ ବିବର୍ତ୍ତନର ପ୍ରକ୍ରିୟା ଚାଲିଥିଲା, ଏଇ ଯନ୍ତ୍ରଣା ଥିଲା ତାହାର ଗୋଟିଏ ଅଧ୍ୟାୟର ସମାପ୍ତି ଏବଂ ଆଉ ଗୋଟିଏ ଅଧ୍ୟାୟର ଆରମ୍ଭ ।

ନୀରବ, ସୁପ୍ତ ଗାଁ ଭିତରେ ସତେ ଯେପରି ଦେବ ଆଚାର୍ଯ୍ୟଙ୍କର ଘରଟା ଥିଲା ଗୋଟାଏ ଅସ୍ଥିର ପେଟ ଭଳି । ଖଲାସ୍ ହେବାକୁ ଚାହୁଁଥିଲା । ଭିତରେ ଗୋଟାଏ ଜଳୁଥିଲା ଧୂଆଁଳିଆ ଶିଖା ନେଇ । ସାଇର ଜଣେ ବୁଢ଼ୀ ଇନ୍ଦୁକୁ ସାହାଯ୍ୟ କରୁଥିଲା ସେ ପୁଣି ମା' ହେବାରେ । ଏପଟେ ଦେବ ଆଚାର୍ଯ୍ୟ ନିଜକୁ ଦୃଢ଼ ଓ ହିଂସ୍ର କରିବା ପାଇଁ ସଂଗ୍ରହ କରୁଥିଲେ ଆବଶ୍ୟକୀୟ ସାହସ ଓ ମାନସିକତା ।

ଆମ ଗାଁ ମାଟି ସ୍ପର୍ଶ କରିବା କ୍ଷଣି ଆଗନ୍ତୁକ ଅଥୟ ଉନ୍ମାଦନାରେ କାନ୍ଦିଲା । ଦେବ ଆଚାର୍ଯ୍ୟ ଅନୁଭବ କଲେ, ତାଙ୍କ ଭିତରେ ଗାଁ ମାଟି ତଳେ ବଡ଼ଧରଣର ବ୍ୟୁତ୍ପତ୍ତିଟିଏ ସଂଘଟିତ ହୋଇଗଲା ନୀରବରେ, ଅଦୃଶ୍ୟରେ ।

ରାତି ଗମ୍ଭୀର ହୋଇଯାଇ ଥିଲା ସେତେବେଳେ । ସବୁ ନୀରବ ଓ ସୁପ୍ତ । କିଛି ଯେପରି ହୋଇନାହିଁ । ଏ ଗାଁର ପରିସର ପ୍ରସ୍ତୁତ ଥିଲା ଏଇଭଳି କୁଆଁ କୁଆଁ କାନ୍ଦଣାକୁ ଗ୍ରହଣ କରିନେବା ପାଇଁ । ଆକାଶ ଖସି ପଡ଼ିବା ମିଛ କଥା । ମାଟି ଧସକି ଯାଇ ସଂହାର ସୃଷ୍ଟି ହେବା ଗୋଟାଏ ଗାଲୁ ଗପ । କୁଆଡ଼େ କିଛି ହେଲା ନାହିଁ । ଏପରିକି ଏ ଘରର ଛାତ ଖସି ପଡ଼ିଲା ନାହିଁ ଲଜ୍ଜା ଓ ଅପମାନରେ । ଏଇ ଦେଖ, ଉପରି ଜଳୁଚି ଆଗଭଳି ସମସ୍ତ ବିଶ୍ୱସ୍ତତା ନେଇ । ତିରସ୍କାର ଏବଂ ପ୍ରତିବାଦରେ ତାହା ଲିଭି ଗଲା ନାହିଁ ।

ଇନ୍ଦୁ ବିଛଣାରୁ ଉଠି ପଡ଼ିଲା ଦେବ ଆଚାର୍ଯ୍ୟଙ୍କୁ ସେ କୋଠରିରେ ପ୍ରବେଶ କରିବା ଦେଖି । ଦେବ ଆଚାର୍ଯ୍ୟ କବାଟ ବନ୍ଦ କରିବାକୁ ଚେଷ୍ଟା କଲେ । ସବୁ କାମ ଗୁପ୍ତରେ, ଚୁପ୍‌ଚାପ୍ ହୋଇଯିବା ଉଚିତ । ସେ ଚାହିଁଲେ ଇନ୍ଦୁ ମୁହଁକୁ ଏବଂ ଅନିଚ୍ଛାର ସହିତ ବିଶ୍ୱାସ କରୁଥିଲେ ଯେ ସେ ତାଙ୍କର ପତ୍ନୀ । ତା' ଗୋଡ଼ ପାଖରେ ବର୍ତ୍ତମାନ ନୀରବ ହୋଇଯାଇଥିବା ସନ୍ତାନଟିର ସେ ମା' ବୋଲି ଅବିଶ୍ୱାସ କରିବାରେ ମଧ୍ୟ କିଛି ନ ଥିଲା ।

—"ବଞ୍ଚିଚି ?" ଦେବ ଆଚାର୍ଯ୍ୟଙ୍କ ସ୍ୱର ଇନ୍ଦୁକୁ ରକ୍ତଶୂନ୍ୟ କରିଦେଲା ।

—"ବଞ୍ଚିଚି ?" ସେ ପୁନରାବୃତ୍ତି କଲେ ।

କୌଣସି ଉତ୍ତର ଆସିଲା ନାହିଁ ଇନ୍ଦୁ ପାଖରୁ । ସେ ଠିକ୍ଏ ରହି ମନେ ପକାଇ ଦେଲେ—"ମନେ ପକା, କ'ଣ ତୁ କହିଥିଲୁ । ଏ ଛୁଆ ଏ ଘରେ ବଞ୍ଚିବ ନାହିଁ ଜମା । ତୋ କାମ କର । ଚଞ୍ଚଳ ।"

ଦେବ ଆଚାର୍ଯ୍ୟ ସତେ ଯେପରି ଅନେକ ଯୋଜନ ଦୂରରେ ଥାଇ ଆଦେଶ ଦେଉଥିଲେ, ପ୍ରବର୍ତ୍ତାଉ ଥିଲେ ।

ଇନ୍ଦୁ ଠିଆ ହୋଇ ରହିଲା ସେମିତି । କୌଣସି ପ୍ରତିକ୍ରିୟା ନ ଥିଲା ତା ମୁହଁରେ । ସମୟ ଗଡ଼ି ଯାଉଥିଲା ଏବଂ ଦେବ ଆଚାର୍ଯ୍ୟ ଅଧୈର୍ଯ୍ୟ ହୋଇ ପଡ଼ୁଥିଲେ । ସେ ଇନ୍ଦୁର ହାତ ଧରି ନାହିଁ ନ ଥିବା କାମଟି କରିବା ପାଇଁ ଆଦେଶ ଦେଉଥିଲେ—

"ଯା, ଡେରି କରନା ! ତୁ ରହିଥିଲୁ ଏଇ ସର୍ତ୍ତରେ ।"

ଇନ୍ଦ୍ର ନିଜକୁ ମୁକ୍ତ କରି ଠିଆ ହୋଇ ରହିଲା । ଦେବ ଆଗ୍ରହର୍ଯ୍ୟ ମଧ୍ୟ ସ୍ତବ୍ଧ ହୋଇ ଠିଆ ହେଲେ । ପରି ମୁହୂର୍ତ୍ତରେ ତାଙ୍କର କମ୍ପିତ ଡାହାଣ ହାତ ଲମ୍ବି ଆସିଲା ତାଙ୍କର ସମ୍ପୂର୍ଣ୍ଣ ଅପରିଚିତ ଆଗନ୍ତୁକ ଆଡକୁ । ଡିବିରିର ଅସ୍ପଷ୍ଟ ଆଲୁଅରେ ତାଙ୍କ ହାତର ଛାଇ ସତେଯେପରି ଅଧିକାର କରୁଥିଲା ସେ କୋଠରିର କାନ୍ଥ ଓ ଚଟାଣକୁ । ସେ ହାତ ଲମ୍ବିଗଲା ଆହୁରି ଆଗକୁ । କମ୍ପିବାକୁ ଲାଗିଲା ଅସମ୍ଭବ ଅନିଚ୍ଛାରେ ଏବଂ ଅନେକ ସମୟ ପାଇଁ ସେଇଭଳି ଝୁଲି ରହିଲା ଆଗନ୍ତୁକ ଉପରେ ।

ଏହାର ପରବର୍ତ୍ତୀ ପର୍ଯ୍ୟାୟର ପଦକ୍ଷେପ ପାଇଁ ଦେବ ଆଗ୍ରହର୍ଯ୍ୟଙ୍କ ପାଖରେ କିଛି ଅବଶିଷ୍ଟ ନ ଥିଲା । ସେ ନିଜକୁ ଉତ୍ସାହିତ କରୁଥିଲେ ଯେ ସେଇ ହାତରେ ସେ ଧରୁଥିଲେ ତରବାରି ଏବଂ ଦୁର୍ଦ୍ଧର୍ଷ ପ୍ରତିଦ୍ୱନ୍ଦ୍ୱୀକୁ ନିକ୍ଷେପ କରୁଥିଲେ ରକ୍ତାକ୍ତ ପରାଜୟ ଭିତରକୁ । ଏଇ ସେଇ ହାତ । ତ୍ରିଭୁବନ ବ୍ରହ୍ମାଣ୍ଡର ସମ୍ରାଟ ହେବା ପାଇଁ ଏହା ଯଥେଷ୍ଟ ଥିଲା ।

ସେ ହାତ ଆହୁରି କମ୍ପିଲା ସେଇଭଳି ଝୁଲି ରହି । ପହଞ୍ଚି ପାରିଲା ନାହିଁ ଶପଥ ପାଖରେ । ପରେ ପରେ ଷଡ଼ଯନ୍ତ୍ର ଭରପୂର ତାଙ୍କ ଦେହ ଭିତରେ ସଞ୍ଚରିଗଲା ଗୋଟାଏ ବିମର୍ଷ, ପରାଜୟ ଭାବ । କେହି ଜଣେ କହୁଥିଲା, ଏ ଘରର ଚଟାଣ ରଙ୍ଗମଞ୍ଚ ନୁହେଁରେ ବାବୁ । ସେ ହାତ ତରବାରି କାହିଁକି, ତରାଜୁ ବି ଧରିପାରେ ନାହିଁ । ଅଭିନୟ ଯଦି ତୋ ସଙ୍କଟର ସମାଧାନ କରିପାରୁଥାନ୍ତା, ତେବେ ତୁ ବିଚରାଟି ହୋଇଥାନ୍ତୁ କିପରି ? କହ, ଏମିତି କ୍ଷତ୍ରିସ୍ତୁ ହୋଇଥାନ୍ତୁ କିପରି ?

---